# ଉତ୍କଳ ପ୍ରସଙ୍ଗ

**The Utkal Prasanga**

**June 2013**


୬୯ ଭାଗ ୧୧ଶ ସଂଖ୍ୟା ଜ୍ୟେଷ୍ଠ–ଆଷାଢ଼ ଜୁନ୍– ୨୦୧୩





**ପ୍ରତିଖଣ୍ଡ : ଟ. ୫.୦୦**





ଓଡ଼ିଶା ସରକାରଙ୍କ ସୂଚନା ଓ ଲୋକ ସମ୍ପର୍କ ବିଭାଗଦ୍ୱାରା ପ୍ରକାଶିତ ଏବଂ
ଓଡ଼ିଶା ସରକାରୀ ମୁଦ୍ରଣାଳୟ, କଟକ–୧୦ରେ ମୁଦ୍ରିତ ।

ଠିକଣା : 'ଉତ୍କଳ ପ୍ରସଙ୍ଗ', ରାଜ୍ୟ ସୂଚନା ଓ ଲୋକ ସମ୍ପର୍କ ବିଭାଗ, ଲୋକ ସମ୍ପର୍କ ଭବନ, ଭୁବନେଶ୍ୱର–୭୫୧୦୦୧

ଇ–ମେଲ୍ : iprsec@rediffmail.com, iprsec.or@nic.in, ୱେବ୍‌ସାଇଟ୍ : www.orissagov.nic.in
ଫୋନ୍ : ୦୬୭୪–୨୫୩୦୨୧୧

ଜୁନ୍ ୨୦୧୩

# ସୂଚୀ



❖ ❖ ❖

## ସମ୍ପାଦକୀୟ

# ରଜ : ଓଡ଼ିଆ ସଂସ୍କୃତିର ଅନନ୍ୟ ଗଣପର୍ବ

ଟାଣ ଖରା, ବିଲବାଡି ଶୁଖିଲା । ଗ୍ରୀଷ୍ମର ପ୍ରଚଣ୍ଡ ପ୍ରହାର ମଣିଷକୁ ଆଘାତ ଉପରେ ଆଘାତ ଦେଇ ଚାଲିଛି । ରୌଦ୍ର ତାପରେ ଧରଣୀର ସକଳ ପ୍ରାଣୀ ଅତିଷ୍ଠ, ଆକୁଳ, ଚତୁର୍ଦ୍ଦିଗରେ ତ୍ରାହି ମାଂ ର ରବ । ଏଇ ପରିସ୍ଥିତିରେ ହଠାତ୍ ମୌସୁମୀର ବୁନ୍ଦାଏ ଜଳ ଝରି ପଡିଲା ମାଟି ମା'ର ତୃଷାର୍ତ୍ତ ବୁକୁରେ । ଚତୁର୍ଦ୍ଦିଗରେ ଶୀତଳ ସମୀରଣର ପ୍ରବାହ । ମୌସୁମୀର ପ୍ରଥମ ପ୍ରବେଶ । ସ୍ୱାଗତ ଜଣାଉଛି ଧରିତ୍ରୀ । ଏଇ ସ୍ୱାଗତର ମହୋତ୍ସବ ହେଉଛି ରଜ । ବସୁମାତା ରଜସ୍ୱଳା । ତାର ସନ୍ତାନମାନେ ଆନନ୍ଦରେ ପୁଲକିତ । ତିନିଦିନ ବ୍ୟାପୀ ସମସ୍ତ କାର୍ଯ୍ୟରୁ ବିରତ ରହି ଆନନ୍ଦ, ଉଦ୍ଦୀପନା ଭିତରେ ସମୟ କାଟିବାକୁ ବ୍ୟାକୁଳ । କେଉଁଠି ବାଗୁଡି ବା କବାଡି ଖେଳ ତ କେଉଁଠି ତାସ୍‌ର ଆସର । ବୟସ୍କମାନେ ଗ୍ରାମାଞ୍ଚଳରେ ଏବେ ବି ପଶାପାଲି ଖେଳରେ ନିମଜ୍ଜିତ ।

ଝିଅମାନେ ଗୋଡରେ କଦଳୀ ପାଟୁଆର ଚପଲ ମାଡି ଯାତାୟାତ କରୁଛନ୍ତି । ରଜସ୍ୱଳା ମାଟି ମା'କୁ ସ୍ପର୍ଶ କରିବା ନିଷେଧ । ରୋଷେଇବାସ ମଧ୍ୟ ବାଦ୍ ଦିଆଯାଇଛି ଦୈନନ୍ଦିନ କାର୍ଯ୍ୟରୁ । ପୂର୍ବରୁ ପିଠା, ପଣା ପ୍ରସ୍ତୁତ ହୋଇ ରହିଛି । ବେଶ୍ ଜମି ଉଠୁଛି ରଜ ଦୋଳିର ଆସର । କେତେ ପ୍ରକାର ଲୋକଗୀତ ଗାଇ କୁମାର/କୁମାରୀମାନେ ଗାଉଛନ୍ତି ରଜ ଦୋଳିଗୀତ । ଏଇ ଗୀତ ହିଁ ତ ଆମ ଲୋକଗୀତ ପରମ୍ପରାର ଆଦ୍ୟ ଓଁକାର ।

'ବନସ୍ତେ ଡାକିଲା ଗଜ
ବରଷକେ ଥରେ ଆସିଛି ରଜ ଲୋ
ଘେନି ନୂଆ ସଜବାଜ ।'

ଏହି ଉତ୍ସବ ହିଁ ରଜପର୍ବ, ଆମ ସଂସ୍କୃତିର ସବୁଠାରୁ ଲୋକପ୍ରିୟ 'ଗଣପର୍ବ' । ଅନ୍ୟାନ୍ୟ ପର୍ବପର୍ବାଣି ଯଥା ଦଶହରା, ଦୀପାବଳୀ, କାଳୀପୂଜା, ସରସ୍ୱତୀ ପୂଜା, ଗଣେଶ ପୂଜା ଓ ସର୍ବୋପରି ରଥଯାତ୍ରା ଏକ ଏକ ଶାସ୍ତ୍ରୀୟ ମାନ୍ୟତା ଥିବା ପର୍ବ । ମାତ୍ର ରଜ ତଥା କୁମାର ପୂର୍ଣ୍ଣମୀ ଓଡ଼ିଆମାନଙ୍କର ନିଜସ୍ୱ ପର୍ବ, ଯାହା କୌଣସି ଶାସ୍ତ୍ରୀୟ ବିଧାନକୁ ଅପେକ୍ଷା କରି ନାହିଁ କି କରେ ନାହିଁ । ତେଣୁ ଯଥାର୍ଥରେ ଏହା ସର୍ବଶ୍ରେଷ୍ଠ ଗଣପର୍ବ ।

ରଜପର୍ବ ଉତ୍ତାରୁ ମୌସୁମୀର ଆଗମନ ଫଳରେ ଧରଣୀର ବୁକୁ ଆର୍ଦ୍ର ହୋଇଯାଏ ଏବଂ ଚାଷୀ ଭାଇଟି ତତ୍ପର ହୋଇଥାଏ ନିଜ ଚାଷ କାର୍ଯ୍ୟରେ । କଠିନ ପରିଶ୍ରମ ପୂର୍ବକ ଚାଷକାମ କରିବା ପୂର୍ବରୁ ମାନସିକ ସ୍ତରରେ ସେ ନିଜକୁ ପ୍ରସ୍ତୁତ କରେ ଏକ ସୁନ୍ଦର ପର୍ବ ପାଳନ ମାଧ୍ୟମରେ । ତାହା ହିଁ ରଜ ଉତ୍ସବର ତାତ୍ପର୍ଯ୍ୟ । କୃଷି ପ୍ରଧାନ ଦେଶ ଓଡ଼ିଶାର ଏହା କେବଳ ନିଜସ୍ୱ ପର୍ବ ନୁହେଁ, ଏହା ଓଡ଼ିଆ ସଂସ୍କୃତିର ସର୍ବଶ୍ରେଷ୍ଠ ଗଣପର୍ବ, ଯହିଁ ଧାର୍ମିକ କର୍ମକାଣ୍ଡ ବା ପୂଜାପାଠର ବିଶେଷ ଆଟପ ନାହିଁ । ସଂକ୍ଷେପରେ ଏହାକୁ ଆମେ ଏକ ଧର୍ମନିରପେକ୍ଷ ପାର୍ବଣ ଭାବେ ମଧ୍ୟ ନାମିତ କଲେ, ସତ୍ୟର ଅପଳାପ ହେବନାହିଁ ।

ରଜପର୍ବର ଏହି ଆନନ୍ଦ ଉଲ୍ଲାସମୟ ପରିବେଶରେ ଓଡ଼ିଶାର ସମସ୍ତ ଜନସାଧାରଣଙ୍କୁ 'ଉତ୍କଳ ପ୍ରସଙ୍ଗ' ତରଫରୁ ଅଭିନନ୍ଦନ ଜ୍ଞାପନ କରୁଅଛି । ରଜ ସମସ୍ତଙ୍କ ପାଇଁ ସୁଖ ସମୃଦ୍ଧିର ବାର୍ତ୍ତା ବହନ କରି ଆଣୁ, ଏହାହିଁ ଆମର କାମନା ।

ବନ୍ଦେ ଉତ୍କଳ ଜନନୀ



## 'ନନ୍ଦିନୀ ଶତପଥୀ ସ୍ମରଣେ'

ଜୁନ୍ ୯ ତାରିଖରେ ଓଡ଼ିଶାର ଅଗ୍ନିପୁତ୍ରୀ ପ୍ରଖ୍ୟାତ ସାହିତ୍ୟିକା ତଥା ଓଡ଼ିଶାର ପ୍ରଥମ ମହିଳା ମୁଖ୍ୟମନ୍ତ୍ରୀ ସ୍ୱର୍ଗତା ଶ୍ରୀମତୀ ନନ୍ଦିନୀ ଶତପଥୀଙ୍କ ଜନ୍ମଦିନ । ସେ କେବଳ ଜଣେ ରାଜନେତା ବା ସାହିତ୍ୟିକା ନଥିଲେ, ସେ ଥିଲେ ସ୍ୱାଧୀନୋତ୍ତର ଓଡ଼ିଶାର ଏପରି ଜଣେ ଶାସକ ଯିଏ ନିଜର ସ୍ୱଳ୍ପ ଶାସନ କାଳ ମଧ୍ୟରେ ଦରିଦ୍ର ମଣିଷଟିର ମୁହଁରେ ହସ ଫୁଟାଇବା ପାଇଁ ଆନ୍ତରିକ ତଥା ଅଙ୍ଗୀକାରବଦ୍ଧ ଉଦ୍ୟମ କରିଥିଲେ । ସେ ଚିରଦିନ ଆମ ମାନସ ରାଜ୍ୟରେ ଏକ ସ୍ୱତନ୍ତ୍ର ସ୍ଥାନର ଅଧିକାରୀ ହୋଇ ରହିଥିବେ, ଏଥିରେ ସନ୍ଦେହ ନାହିଁ ।

ସମ୍ପାଦକ,
ଉତ୍କଳ ପ୍ରସଙ୍ଗ

❖ ❖ ❖

# ନନ୍ଦିନୀ ଶତପଥୀ : ସାରସ୍ୱତ ସାଧିକା ଓ ଜନନେତା

ଡକ୍ଟର ସୁବାସ ନାୟକ



ଓଡ଼ିଶାର ପ୍ରଥମ ମୁଖ୍ୟମନ୍ତ୍ରୀ ତଥା ଓଡ଼ିଶାରୁ କେନ୍ଦ୍ର ସରକାରରେ ମନ୍ତ୍ରୀ ଭାବେ ଅତି ବିଚକ୍ଷଣ ଭାବେ ଓ ସଫଳତାର ସହିତ ଦାୟିତ୍ୱ ନିର୍ବାହ କରିଥିବା ସ୍ୱର୍ଗତା ନନ୍ଦିନୀ ଶତପଥୀ ଭାରତବର୍ଷରେ ପ୍ରାୟ ଜଣେ ରାଜନେତ୍ରୀ ଭାବରେ ସୁବିଦିତା । ମାତ୍ର ଓଡ଼ିଆ ସାହିତ୍ୟକୁ ତାଙ୍କର ବିଶେଷ ଅବଦାନ ରହିଛି ଏବଂ ଏହି ସାରସ୍ୱତ ବ୍ୟକ୍ତିତ୍ୱ ସମ୍ପର୍କରେ ଅନେକ ଲୋକେ ପରିଚିତ ନୁହନ୍ତି ।

ପ୍ରଖ୍ୟାତ ସାହିତ୍ୟିକ, ସବୁଜକବି ପଦ୍ମଭୂଷଣ କାଳିନ୍ଦୀ ଚରଣ ପାଣିଗ୍ରାହୀଙ୍କର କାଳଜୟୀ ଉପନ୍ୟାସ 'ମାଟିର ମଣିଷ' ଯେଉଁଦିନ ଶେଷ ସ୍ପର୍ଶ ପାଇଥିଲା, ସେହିଦିନ ହିଁ ଭୂମିଷ୍ଠ ହୋଇଥିଲେ ନନ୍ଦିନୀ । ଉକ୍ତ ଦିନଟି ଥିଲା ୧୯୩୧ ମସିହା ଜୁନ୍ ୯ ତାରିଖ । କଟକର ବକ୍ସିବଜାର ଯାଚକ ଲେନ୍‌ରେ ପ୍ରସିଦ୍ଧ କବି କାଳିନ୍ଦୀ ଚରଣ ପାଣିଗ୍ରାହୀ ଓ ରତ୍ନମଣି ଦେବୀଙ୍କ ଗର୍ଭରୁ ଜନ୍ମ ଗ୍ରହଣ କରିଥିଲେ ଏହି ନନ୍ଦିନୀ, ଯାହାଙ୍କ ପାଇଁ କେବଳ ପିତାମାତା ନୁହନ୍ତି, ସାରା ଓଡ଼ିଶା ଗର୍ବବୋଧ କରିଥିଲା । ଜାତି ଓ ଦେଶର ଗୌରବ ନନ୍ଦିନୀ ରାଜନୀତି କ୍ଷେତ୍ରରେ ଯେପରି ପ୍ରବୀଣା, ସାହିତ୍ୟ କ୍ଷେତ୍ରରେ ମଧ୍ୟ ସେହିପରି ଧୂରୀଣା । ସମାଜରେ ନିଷ୍ପେଷିତ ମଣିଷର ବ୍ୟଥା ଓ ବେଦନାକୁ ଦୂର କରିବାର ଦୃଢ ସଂକଳ୍ପ ନେଇ ସେ ରାଜନୀତିର କଣ୍ଟକିତ କ୍ଷେତ୍ରରେ ପାଦ ଥାପିଥିଲେ । ଗଭୀର ମାନବବାଦୀ ଚେତନା ଓ ସମ୍ବେଦନାର ଭରପୂର ହୃଦୟଟିଏ ନେଇ ସେ ସାହିତ୍ୟ ରଚନାରେ ନିଜକୁ ସାମିଲ କରିଥିଲେ ।

ନନ୍ଦିନୀ ଶତପଥୀ ଥିଲେ ଯଥେଷ୍ଟ ସାହିତ୍ୟିକ ପରିବେଶ ଥିବା ପରିବାରର କନ୍ୟାରତ୍ନ । ନନ୍ଦିନୀଙ୍କର ଘର ଥିଲା– ସାମ୍ୟବାଦୀ ଚିନ୍ତାଧାରାର ଏକ ପ୍ରୟୋଗଶାଳା । ତାଙ୍କ ପିତା କାଳିନ୍ଦୀ ଚରଣଙ୍କ ବ୍ୟତୀତ ତାଙ୍କର ପିତୃବ୍ୟ ଭଗବତୀ ଚରଣ ପାଣିଗ୍ରାହୀ ଥିଲେ ମହାନ୍ ସାମ୍ୟବାଦୀ ଚିନ୍ତାନାୟକ ଓ ଓଡ଼ିଶା କମ୍ୟୁନିଷ୍ଟ ବିଚାରଧାରାର ଜନକ । ଭଗବତୀବାବୁ କେବଳ କମ୍ୟୁନିଷ୍ଟ ପାର୍ଟିର ସମ୍ପାଦକ ନଥିଲେ, ଓଡ଼ିଆ ଭାଷା ସାହିତ୍ୟରେ ମଧ୍ୟ ସେ ଥିଲେ ପ୍ରଗତିଶୀଳ ସାହିତ୍ୟ ଚେତନାର ଭଗିରଥ । ତାଙ୍କର କାଳଜୟୀ ଗଳ୍ପ 'ଶିକାର' ଆମ ଭାଷା ସାହିତ୍ୟର ଅମୂଲ୍ୟ ସମ୍ପଦ । 'ଶିକାର' ଗଳ୍ପଟି ଗତ ଶତାବ୍ଦୀର ୭୦ ଦଶକରେ ଆନ୍ତର୍ଜାତିକ ଖ୍ୟାତିସମ୍ପନ୍ନ ଚଳଚ୍ଚିତ୍ର ନିର୍ମାତା ଓ ନିର୍ଦ୍ଦେଶକ ମୃଣାଳ ସେନ୍‌ଙ୍କ ଦ୍ୱାରା ହିନ୍ଦୀ ଚଳଚ୍ଚିତ୍ର ରୂପେ ନିର୍ମିତ ହୋଇ ବହୁ ଜାତୀୟ ଓ ଆନ୍ତର୍ଜାତୀୟ ପୁରସ୍କାର ଲାଭ କରିଥିଲା । ନନ୍ଦିନୀ ଦେବୀଙ୍କ

ଅନ୍ୟତମ ପିତୃବ୍ୟ ଦିବ୍ୟ ସିଂହ ମିଶ୍ର ମଧ ଥିଲେ ଉଚ୍ଚକୋଟୀର ସାହିତ୍ୟିକ ।

ମଣିଷକୁ ଭଲ ପାଇ ସେ ହୋଇଥିଲେ କବି, ତା'ର ଦୁଃଖ ଦୁର୍ଦ୍ଦଶାକୁ ଲେଖନୀ ମୁନରେ ରୂପାୟିତ କରି ସେ ପାଲଟି ଥିଲେ ଗାଳ୍ପିକା ଏବଂ ଅନୁବାଦିକା । ମଣିଷକୁ ତା'ର ନ୍ୟାଯ୍ୟ ଦାବି ଦେବା ପାଇଁ ସେ ସାଜିଥିଲେ ରାଜନୀତିଜ୍ଞ । ନନ୍ଦିନୀଙ୍କୁ ସମସ୍ତେ ମୁଖ୍ୟତଃ ଜାଣନ୍ତି ରାଜନୀତିଜ୍ଞ ଭାବେ କିନ୍ତୁ ସେହି ରୁକ୍ଷ ବନ୍ଧୁର ରାଜନୈତିକ ଜୀବନର ଧୂସରତା ତଳେ ଲୁକ୍କାୟିତ ହୋଇ ରହିଥିଲା ଅନ୍ତସଲୀଳା ଫଲ୍‌ଗୁ ପରି କଳକଳ ନାଦରେ ବହି ଯାଉଥିବା ସାହିତ୍ୟର ଛଳ ଛଳ ଧାରାଟିଏ ।

ନନ୍ଦିନୀ ତାଙ୍କର ପ୍ରାଥମିକ ଶିକ୍ଷା ଆରମ୍ଭ କରିଥିଲେ କଟକର ରେଭେନ୍ସା ବାଳିକା ବିଦ୍ୟାଳୟରେ । ବାପା କାଳିନ୍ଦୀ ଚରଣଙ୍କର ଭାଷା ଓ ଦାଦା ଭଗବତୀ ଚରଣଙ୍କର ଭାବ ତାଙ୍କୁ ପିଲାଟି ଦିନରୁ ପ୍ରଭାବିତ କରିଥିଲା । ସେ ସପ୍ତମ ଶ୍ରେଣୀରେ ପାଠ ପଢୁଥିବା ସମୟରେ 'ଅନାଥ' ନାମକ ଏକ ଗଳ୍ପ ରଚନା କରିଥିଲେ । ସେହିଦିନରୁ ସେ ସାହିତ୍ୟରେ ମନୋନିବେଶ କରିଥିଲେ । ସେଠାରେ ପାଠ ପଢି ସାରିବା ପରେ ସେ ଆସିଥିଲେ ରେଭେନ୍ସା କଲେଜକୁ । କଲେଜକୁ ଆସିବା ବେଳକୁ ନନ୍ଦିନୀ ଛାଇ ହୋଇ ଯାଇଥିଲେ ସମଗ୍ର ଓଡ଼ିଶାରେ । ୧୯୫୧ର ଛାତ୍ର ଆନ୍ଦୋଳନରେ ସେ ହୋଇଥିଲେ ପ୍ରଚଣ୍ଡ ପ୍ରତିଭାଧାରୀ ଛାତ୍ରନେତା ଏବଂ ଏହି ଆନ୍ଦୋଳନର ସହକର୍ମୀ ଢେଙ୍କାନାଳ ଧଳପୁର ଗ୍ରାମର ଦେବେନ୍ଦ୍ର ଶତପଥୀଙ୍କୁ ଭଲପାଇ ବିବାହ କରିଥିଲେ ।

ଗରିବ ମଣିଷର ଅକୁହା କଥା ବେଶ୍ ଆନ୍ଦୋଳିତ କରୁଥିଲା ନନ୍ଦିନୀଙ୍କର ପ୍ରାଣକୁ । ସେ ସବୁବେଳେ ଲଢୁଥିଲେ ହକ୍ ପାଇଁ । ସାମ୍ୟବାଦୀ ରାଜନୀତିରୁ ନନ୍ଦିନୀ ଆସିଥିଲେ ୧୯୬୦ ମସିହାରେ କଂଗ୍ରେସକୁ । ତତ୍କାଳୀନ ରାଜ୍ୟ କଂଗ୍ରେସ ସଭାପତି ବିଜୁ ପଟ୍ଟନାୟକ ୧୯୬୦ରେ ନନ୍ଦିନୀଙ୍କୁ ଓଡ଼ିଶା ପ୍ରଦେଶ ମହିଳା କଂଗ୍ରେସର ସଭାପତି ଦାୟିତ୍ୱ ଗ୍ରହଣ କରିବାରେ ପ୍ରଚୋଦିତ କରିଥିଲେ। ୧୯୬୨ ମସିହାରେ ନନ୍ଦିନୀ ରାଜ୍ୟସଭାର ସଦସ୍ୟ ଭାବେ ଭାରତୀୟ ପାର୍ଲାମେଣ୍ଟକୁ ନିର୍ବାଚିତ ହୋଇଥିଲେ । ନନ୍ଦିନୀଦେବୀ ରାଜ୍ୟସଭାରେ ଏକ ଭାଷଣ ଦେଉଥିବା ସମୟରେ ସେଠାରେ ଉପସ୍ଥିତ ଥିଲେ ପ୍ରଧାନମନ୍ତ୍ରୀ ଜବାହରଲାଲ ନେହେରୁ । ନନ୍ଦିନୀଙ୍କର କଥା କହିବାର ଢଙ୍ଗ, ଶୈଳୀ ଓ ସ୍ୱଚ୍ଛ ଚିନ୍ତାଧାରା ଆଶ୍ଚର୍ଯ୍ୟ କରିଥିଲା ନେହେରୁଙ୍କୁ । ସେ ବିସ୍ମୟରେ ପଚାରିଥିଲେ– 'ହୁ ଇଜ୍ ଦିସ୍ ୟଙ୍ଗ୍ ଲେଡି ?' (ଏହି ତରୁଣୀ ଟି କିଏ ?)

ପ୍ରଧାନମନ୍ତ୍ରୀ ଇନ୍ଦିରା ଗାନ୍ଧୀଙ୍କ ସମୟରେ ନନ୍ଦିନୀ ଥିଲେ ସବୁଠାରୁ ଚର୍ଚ୍ଚିତା । ସେସମୟରେ ସେ ଓଡ଼ିଶା ପ୍ରଦେଶ କଂଗ୍ରେସ କମିଟିର ସଭାପତି, ଅଖିଳ ଭାରତୀୟ ମହିଳା କଂଗ୍ରେସର ସଭାପତି, କଂଗ୍ରେସ କାର୍ଯ୍ୟକାରୀ କମିଟିର ସଭ୍ୟା ଥିଲେ । ୧୯୬୬ ମସିହାରେ ନନ୍ଦିନୀଙ୍କୁ ଇନ୍ଦିରା ନିଜ ମନ୍ତ୍ରିମଣ୍ଡଳରେ କରିଥିଲେ ସୂଚନା ଓ ପ୍ରସାରଣ ବିଭାଗ ମନ୍ତ୍ରୀ । ୧୯୬୮ରେ ନନ୍ଦିନୀ ଯାଇଥିଲେ ଦ୍ୱିତୀୟବାର ରାଜ୍ୟସଭାକୁ ଓ ପୁନଶ୍ଚ ହୋଇଥିଲେ କେନ୍ଦ୍ରମନ୍ତ୍ରୀ । ଇନ୍ଦିରାଙ୍କର ବିଦେଶ ଗସ୍ତ ଓ ସରକାରୀ କାର୍ଯ୍ୟକ୍ରମ ସମୟରେ ଛାୟା ହୋଇଯାଇଥିଲେ ନନ୍ଦିନୀଦେବୀ ।

ନନ୍ଦିନୀଙ୍କର ରାଜନୈତିକ ଜୀବନର ଏକ ପ୍ରମୁଖ ଘଟଣା ହେଉଛି ୧୯୭୨ ମସିହାରେ କଟକ ବିଧାନସଭା ଉପନିର୍ବାଚନ । ଗୋଟେ ପଟେ ନନ୍ଦିନୀ, ଅପର ପଟେ ତାଙ୍କ ବିପକ୍ଷରେ ପ୍ରାର୍ଥୀ ଥିଲେ ପୂର୍ବତନ ମୁଖ୍ୟମନ୍ତ୍ରୀ ବିରେନ୍ ମିତ୍ର ଓ ତାଙ୍କ ସମର୍ଥିତ ତିନିଜଣ ପୂର୍ବତନ ମୁଖ୍ୟମନ୍ତ୍ରୀ ହରେକୃଷ୍ଣ ମହତାବ, ରାଜେନ୍ଦ୍ର ନାରାୟଣ ସିଂହଦେଓ ଓ ବିଜୁ ପଟ୍ଟନାୟକ । ଶେଷରେ ନନ୍ଦିନୀଙ୍କର ହିଁ ବିଜୟ ଘଟିଲା ।ଏହି ଉପନିର୍ବାଚନରେ ବିଜୟୀ ହୋଇ ସେ ଓଡ଼ିଶାର ଅନନ୍ୟ ନେତାର ମାନ୍ୟତା ପାଇ ପାରିଥିଲେ । ୧୯୭୨ରୁ ୧୯୭୪ ଏବଂ ୧୯୭୪ରୁ ୧୯୭୬ ଏହି ଦୁଇଥର ସେ ଓଡ଼ିଶାର ମୁଖ୍ୟମନ୍ତ୍ରୀଭାବେ କାର୍ଯ୍ୟ ସମ୍ପାଦନ କରିଥିଲେ । ତାଙ୍କ ମୁଖ୍ୟମନ୍ତ୍ରୀତ୍ୱ ସମୟରେ ଓଡ଼ିଶାରେ ଅନେକ ଜନକଲ୍ୟାଣକାରୀ କାର୍ଯ୍ୟ ହୋଇଥିଲା । ଓଡ଼ିଶା ରାଜ୍ୟ ଯୋଜନା ବୋର୍ଡ ଅଧକ୍ଷା, ବହୁବାର ବିଧାୟିକା ଭାବରେ ସେ ନିଜର ରାଜନୈତିକ ଜୀବନ ଅତିବାହିତ କରିଥିଲେ । ତାଙ୍କର ମୁଖ୍ୟମନ୍ତ୍ରୀତ୍ୱ ସମୟରେ ଯୁଗାନ୍ତକାରୀ ଓଡ଼ିଶା ଭୂସଂସ୍କାର ଆଇନ ପାରିତ ହୋଇଥିଲା ।

ରାଜନୀତି ଭିତରେ ସବୁ ଭୁଲି ହୋଇଯାଏ, କିନ୍ତୁ ନନ୍ଦିନୀ ଭୁଲି ନଥିଲେ ସାରସ୍ୱତ ସାଧନାକୁ । ରେଭେନ୍ସା କଲେଜରୁ ଓଡ଼ିଆ ଭାଷା ଓ ସାହିତ୍ୟ ବିଭାଗରେ ଏମ୍.ଏ.ପାଶ୍ କଲା ପରେ ସାରସ୍ୱତ ସୃଷ୍ଟିରେ ସାଧାରଣ ମଣିଷର ଭାଷା ତାଙ୍କ ଭିତରେ ଫୁଟି ଉଠିଥିଲା । ନନ୍ଦିନୀ ଦେବୀ ଯେପରି ଜଣେ ସୃଷ୍ଟିଶୀଳ ଲେଖିକା, ସେହିପରି ଜଣେ ସଫଳ ଅନୁବାଦିକା ମଧ ଥିଲେ । ତାଙ୍କର ସୃଷ୍ଟି ହୋଇଛି ଲେଖନୀରେ ଦୁଇଗୋଟି ଗଳ୍ପ ସଂକଳନ, 'କେତୋଟି କଥା' ଓ 'ସପ୍ତଦଶୀ' ଓ ଗୋଟିଏ କବିତା ସଂକଳନ– 'ଉତ୍ତରପୁରୁଷ' । ଅନୁବାଦ ମଧରେ କେନ୍ଦ୍ର ସାହିତ୍ୟ ଏକାଡେମୀ ସଚିବ କୃଷ୍ଣା କ୍ରିପାଳିନୀଙ୍କ ଦ୍ୱାରା ଲିଖିତ ମହାତ୍ମା ଗାନ୍ଧୀଙ୍କର ଆତ୍ମ

ଜୀବନୀର ଓଡ଼ିଆ ଅନୁବାଦ– 'ଗାନ୍ଧୀ କଥାମୃତ' । ଯାହାକୁ ଓଡ଼ିଶା ସାହିତ୍ୟ ଏକାଡେମୀ ୧୯୬୦ ମସିହାରେ ପ୍ରକାଶନ କରିଥିଲେ । ବିଶିଷ୍ଟ ବଙ୍ଗଳା ଲେଖିକା ମହାଶ୍ୱେତା ଦେବୀଙ୍କର 'ନିର୍ବାଚିତ ଗଳ୍ପ', ପଦ୍ମଭୂଷଣ ଡକ୍ଟର ଅମୃତାପ୍ରୀତମ୍‌ଙ୍କ ଆତ୍ମଜୀବନୀର ଅନୁବାଦ କରିଥିଲେ ନନ୍ଦିନୀ ଦେବୀ । ଏହି ଅନୁବାଦ ପାଇଁ ସେ ମଧ୍ୟ କେନ୍ଦ୍ର ସାହିତ୍ୟ ଏକାଡେମୀ ପୁରସ୍କାର ପାଇଥିଲେ । ବିଶେଷତଃ ବଙ୍ଗଳା ଦେଶର ବିବାଦୀୟା ଲେଖିକା ତସଲିମା ନାସରିନ୍‌ଙ୍କ ବହୁ ଚର୍ଚ୍ଚିତ ଉପନ୍ୟାସ 'ଲଜ୍ଜା'କୁ ଓଡ଼ିଆରେ ଅନୁବାଦ କରି ନନ୍ଦିନୀ ଦେବୀ ଅଜସ୍ର ଯଶର ଅଧିକାରିଣୀ ହୋଇପାରିଛନ୍ତି ।

ନନ୍ଦିନୀ ଦେବୀ ପିଲାଟି ଦିନରୁ ଗରିବଙ୍କର ଦୁଃଖ ଓ ଦୁର୍ଦ୍ଦଶା ଲାଘବ କରିବାରେ ମନୋନିବେଶ କରୁଥିଲେ, ଯାହା ତାଙ୍କର ଅଧିକାଂଶ ଗଳ୍ପ ଓ କବିତାର ପୃଷ୍ଠଭୂମି । ତାଙ୍କର କବିତା/ଗଳ୍ପ 'ସୀତାନାନୀର ପୁଅ', 'ଆଶ୍ରୟ ପ୍ରାର୍ଥୀ', 'ବିଷର ବଳୟ', 'ବୀରସା ଭୋଇ' ପ୍ରଭୃତି ଗଳ୍ପ ଓ 'ବନ୍ଧ ଭାଙ୍ଗିଗଲା', 'ମୋ ମା', 'ରକ୍ତର ଜୀବନ', 'ସ୍ୱପ୍ନର ବି ସ୍ୱପ୍ନ ଥାଏ', 'ଚନ୍ଦ୍ର ତୁମେ ଆଉ ଆସ ନାହିଁ', 'ବିଶ୍ୱାସ ବିଶ୍ୱାସ ବିଶ୍ୱାସ' ପ୍ରଭୃତି କବିତାରେ ଶୋଷିତ ଜନତାର ହାହାକାର ଅତି ହୃଦୟସ୍ପର୍ଶୀ ଭାବରେ ରୂପାୟିତ । 'ଠିକଣା ହଜିଗଲା' ତାଙ୍କର ଏକ ଚମତ୍କାର କବିତା । ଯେଉଁଥିରେ କବିଙ୍କର ହତାଶ ଜର୍ଜରିତ ପ୍ରାଣର ବେଦନା ଝରି ପଡିଛି ଟୋପା ଟୋପା ହୋଇ । ରାଜନୀତିରେ ଯୋଗ ଦେବାପରେ ତାଙ୍କର ସେ ସ୍ୱପ୍ନର ସେତୁ ଭାଙ୍ଗି ପଡିଛି ଖଣ୍ଡ ଖଣ୍ଡ ହୋଇ । ତେଣୁ 'ସ୍ୱପ୍ନର ସେତୁ' କବିତାରେ ତାଙ୍କର ବିଦ୍ରୋହୀ ଆତ୍ମା ଗାଇ ଉଠିଛି ବାସ୍ତବତାର କରୁଣ କଥା । ଓଡ଼ିଶାର ମୁଖ୍ୟମନ୍ତ୍ରୀ ଭାବରେ ସାରା ଓଡ଼ିଶା ବୁଲିଲା ବେଳେ ସେ ନାରୀମାନଙ୍କର ଅସୁରକ୍ଷିତ ଜୀବନକୁ ଅତି ନିକଟରୁ ପ୍ରତ୍ୟକ୍ଷ କରିଛନ୍ତି । ତଥାପି ସେ ସେମାନଙ୍କର ନିର୍ଯ୍ୟାତିତା ଜୀବନର ଗତାନୁଗତିକ ବର୍ଣ୍ଣନା ନଦେଇ ସେମାନଙ୍କୁ ଉତ୍ତରଣର ପଥ ଦେଖାଇଛନ୍ତି । 'ନାରୀ ତୁମେ ନୁହେଁ ଖାଲି ନାରୀ' କବିତାରେ ଏହା ହିଁ ବର୍ଣ୍ଣିତ । 'ବହୁରୂପୀ' କବିତାରେ ଆମର ପୁରୁଷ ପ୍ରଧାନ ସମାଜକୁ ସେ ଚେତାବନୀ ଶୁଣାଇଛନ୍ତି । 'ଅପରାହ୍ନର ସଙ୍ଗୀତ' ଗଳ୍ପରେ ନିଜକୁ ମହାମହିମ ସମ୍ରାଟ ଭାବୁଥିବା ପୁରୁଷର ଅହଂ କିପରି 'ଅପରାହ୍ନରେ ଭୁଷୁଡି ପଡିଛି, ତାହା ସେ ସୂଚାଇ ଅଛନ୍ତି । 'ସୀତାନାନୀର ପୁଅ' ଗଳ୍ପରେ ନିମ୍ନବର୍ଗର ଦୁଃଖ, କଷ୍ଟ ଓ ସଂଘାତର କାହାଣୀ ରୂପାୟିତ । 'ଗାୟତ୍ରୀ' ଗଳ୍ପରେ ଦାରିଦ୍ର୍ୟର ହରଡଘଣାରେ ପେଷିହୋଇ ଗୋଟିଏ ଫୁଟି ଆସୁଥିବା ପ୍ରତିଭାର ଅପମୃତ୍ୟୁ ଘଟିଛି ଓ ସେ ମାନସିକ ଭାରସାମ୍ୟ ହରାଇ ପାଗଳୀ ହୋଇଯାଇଛି । 'ଭସାମେଘ' ଗଳ୍ପରେ ଗୋଟିଏ ଅସହାୟ ନାରୀର ଅସହାୟତାକୁ ଜୀବନ୍ତ ଭାବରେ ବର୍ଣ୍ଣନା କରାଯାଇଛି । 'ଅଭିମାନ' ଗଳ୍ପରେ ଗୋଟିଏ ବୟସ୍କା ରମଣୀର ଅଭିମାନ ପ୍ରକଟିତ ହୋଇଅଛି । 'ତାସ୍‌ଘର' ଗଳ୍ପରେ ନିଜର ବଡଲୋକ ଓ ଅହଂକୁ ନେଇ ବଞ୍ଚିଥିବା ନାରୀଟିଏ ନିଜ ଝିଅର ସମାଜ ସେବା ପାଖରେ ହାର ମାନିଛି । 'ଡଷ୍ଟବିନ୍' ଗଳ୍ପରେ ଜଣେ ପରଶ୍ରୀକାତର ନାରୀର ସମାଜ ସଂସ୍କାର ଓ ଆଧୁନିକତା ବିଶୋଦ୍‌ଗାରର ଚିତ୍ର ସେ ଅତି ମର୍ମସ୍ପର୍ଶୀ ଭାବେ ଚିତ୍ରଣ କରିଛନ୍ତି । ଜିତାପଟ ଗଳ୍ପରେ ଦୁଇଟି ବିପରୀତମୁଖୀ ନାରୀ ଚରିତ୍ରର ବର୍ଣ୍ଣନା । 'ସମୁଦ୍ର' ଏକ ନିଆରା ସ୍ୱାଦର ଗଳ୍ପ । ସେଥିରେ ସମୁଦ୍ରମନସ୍କା ରୁମା ଚରିତ୍ର ଭିତରେ ଲେଖିକା ନିଜେ ଆତ୍ମ ପ୍ରକାଶ କରିଛନ୍ତି ।

ଗାଳ୍ପିକା ନନ୍ଦିନୀ ଦେବୀ ତାଙ୍କର ଗଳ୍ପଗୁଡିକରେ ଦରଦୀ ପ୍ରାଣର ଖିଅ ଟାଣିଟାଣି ଆଉ ଗୋଟିଏ ଜୀବନର ବ୍ୟଥା, ବେଦନାକୁ ଛୁଇଁବାକୁ ଚେଷ୍ଟା କରିଛନ୍ତି, ସଫଳ ହୋଇଛନ୍ତି ମଧ୍ୟ । ଅଯୁତ କାମର ଜଞ୍ଜାଳ ଭିତରେ ନିଜର ସୃଜନଶୀଳ ଅସ୍ତିତ୍ୱକୁ ଜବରଦସ୍ତ ଚାପି ଦେଉ ଦେଉ କେତେବେଳେ କେଉଁ ଗୋଟିଏ ଘଟଣା ବା ଦୃଶ୍ୟର ଦର୍ଶନରେ ସେ ଛିଟିକି ପଡିଛି ଓ ହଜିଯାଇଛି ଗୋଟିଏ ଗୋଟିଏ ଗଳ୍ପ, ଯାହା ଅନନ୍ୟ ଓ ଅନୁପମ । ତାଙ୍କର ପ୍ରତ୍ୟେକ ଗଳ୍ପଗୁଡିକରେ ଲୁଚି ରହିଛି ଏକ ଶବ୍ଦୋତ୍ତର ସୃଷ୍ଟି ସମ୍ପଦ, ଏକ ଉତ୍ତରିତ ଆତ୍ମାର ବଳିଷ୍ଠ ଉଚ୍ଚାରଣ ।

ନନ୍ଦିନୀ ଦେବୀଙ୍କର ପ୍ରଥମ ଗଳ୍ପ ସଂକଳନ କେତୋଟି କଥା (୧୯୬୬)ରେ ବାଇଶି ଗୋଟି ଗଳ୍ପ ଓ ଉକ୍ତ ଗଳ୍ପ ସଂକଳନରେ ତାଙ୍କର ସାରସ୍ୱତ ଯଶ ପୂର୍ଣ୍ଣତା ପାଇଛି । ଏହାପରେ ପ୍ରକାଶିତ ଗଳ୍ପ ସଂକଳନ ସପ୍ତଦଶୀ (୧୯୮୮) । ଏଥିରେ ସତର ଗୋଟି ଗଳ୍ପ ସନ୍ନିବେଶିତ । ଏହି ସଂକଳନଟି ଗଭୀର ଜୀବନାନୁଭୂତି, ଦାର୍ଶନିକ ଦୃଷ୍ଟିଭଙ୍ଗୀ ଓ ଜୀବନର ବିଚିତ୍ର ବର୍ଣ୍ଣବିଭାରେ ଅଧିକ ଉର୍ଜ୍ଜସ୍ୱଳ ହୋଇ ପାରିଛି । ସଂଯତ ଭାଷା ବିନ୍ୟାସ ଓ ଶୈଳୀର ଚମତ୍କାରିତା ସଂକଳନଟିକୁ ରସୋତ୍ତୀର୍ଣ୍ଣ କରିଅଛି । ଏହାର ଗଳ୍ପ 'ବିଷର ବଳୟ', 'ସ୍ୱପ୍ନ ଓ ସ୍ୱପ୍ନଭଙ୍ଗ'ର ଯନ୍ତ୍ରଣାକୁ ନେଇ ବର୍ଣ୍ଣିତ । ସମାଜର ତଳସ୍ତରର ପିଲାଟିଏ ରାତାରାତି ବଡଲୋକ ହେବାର ସ୍ୱପ୍ନରେ ମସଗୁଲ ହୋଇ ଚୋରିକୁ ଆଦରି ନେଇ ବାରମ୍ବାର ଜେଲ୍ ଯାଇଛି । ପୋଲିସକୁ ଲାଞ୍ଚ ଦେଇ ପୁଣି ଖସି ଆସିଛି । ଶୋଷଣ ଓ ଅତ୍ୟାଚାରକୁ ନେଇ ନନ୍ଦିନୀ ଦେବୀ ଲେଖିଛନ୍ତି 'ବିବର୍ତ୍ତନ' ଓ 'ବୀରସା ଭୋଇ' ଭଳି ଅନେକ ଗଳ୍ପ । ବୀରସା ଭୋଇ ପରି ଗଳ୍ପ ସୃଷ୍ଟି କରି ଅପାଂକ୍ତେୟ ଦରିଦ୍ର ମଣିଷଟିର

ଜୀବନକୁ ସାମାନ୍ୟ ସୁନ୍ଦର କରିବାକୁ ସେ ଚେଷ୍ଟା କରିଛନ୍ତି । ହୁଏତ ମୁଖ୍ୟମନ୍ତ୍ରୀ ହେବାପରେ ଭୂସଂସ୍କାର ଆଇନ୍ ପ୍ରଣୟନ କରିବାକୁ ସେ ଏଇଠାରୁ ପ୍ରେରଣା ଲାଭ କରିଥାଇପାରନ୍ତି ।

'ଗରଳର ଗାରିମା'ର ଗଳ୍ପରେ ଲେଖିକାଙ୍କର ହୃଦୟସ୍ପର୍ଶୀ ବର୍ଣ୍ଣନା ବେଶ୍ ସଫଳ ହୋଇ ପାରିଛି । ନନ୍ଦିନୀ ଦେବୀ ଭୁଲିପାରି ନାହାନ୍ତି ସାମନ୍ତବାଦର କୋରଡାମାଡ । ତାଙ୍କ ଛାତିରୁ ଧାରଧାର ଲୁହ ନିଗିଡିଛି । ସେଥିପାଇଁ କେନ୍ଦ୍ରମନ୍ତ୍ରୀ ଥିବା ସମୟରେ ତାଙ୍କର ଲୋକାଭିମୁଖୀ ଯୋଜନାଗୁଡିକ ପ୍ରଧାନମନ୍ତ୍ରୀ ଇନ୍ଦିରା ଗାନ୍ଧୀଙ୍କୁ ଖୁବ୍ ପ୍ରଭାବିତ କରୁଥିଲା । ନନ୍ଦିନୀଙ୍କର ମୁଖ୍ୟମନ୍ତ୍ରୀତ୍ୱ ସମୟରେ ଐତିହାସିକ ଭୂସଂସ୍କାର ଆଇନ୍, ଯୌତୁକ ନିରୋଧ ଆଇନ୍, ମହାଜନୀ କାରବାର ବନ୍ଦ କରିବା, ଭତ୍ତା ପ୍ରଚଳନ କରିବା ତାଙ୍କର ସବୁଠାରୁ ଲୋକପ୍ରିୟ କାର୍ଯ୍ୟକ୍ରମ ଥିଲା ।

ଯଶ, କୀର୍ତ୍ତି, ଐଶ୍ୱର୍ଯ୍ୟ ଓ କ୍ଷମତା ଭିତରେ ବୁଡି ରହି ସେ ଥିଲେ ଜଣେ ବିଚ୍ଛିନ୍ନ ମଣିଷ । ଏକାକୀ ଓ ନିଃସଙ୍ଗ । ତାଙ୍କର 'ମୋ ଭିତରେ ମୁଁ' କବିତାରେ ଏହାର ପରିସ୍ଫୁଟନ ଘଟିଅଛି । କବିତାର ଏକଲାପଣ ପାଠକଙ୍କୁ ଉଦାସ କରିଦିଏ । 'ମୋ କଥା' କବିତାରେ କେବେ ଲୋକଙ୍କର ସୁଖ, ଦୁଃଖ ସେ ଜାଣିପାରନ୍ତି ଅତ୍ୟନ୍ତ ଅଜଣା ଓ ଅଶୁଣା ଭାବରେ । କିନ୍ତୁ ନନ୍ଦିନୀଙ୍କର ଦୁର୍ଭାଗ୍ୟ ଯେ, ସେ ଅଜଣା ଓ ଅଶୁଣା ହୋଇ ରହି ନାହାନ୍ତି । ଲୀନ ହୋଇଯିବାରେ ଏକ ଭିନ୍ନ ଆନନ୍ଦ ଅଛି । ମୋ ଭଳି ଅପାରଗ ଲୋକ ସାହିତ୍ୟ ଜଗତରେ ଲୀନ ହୋଇଯିବେ । ଓଡ଼ିଶା ମାଟିର ଗର୍ବ ନନ୍ଦିନୀ ଯେ ନିଜକୁ ଅପାରଗ ଭାବି ସାହିତ୍ୟ ସିନ୍ଧୁରେ ଲୀନ ହୋଇଯିବାକୁ ଚାହିଁଛନ୍ତି, ଏହା ହିଁ ତାଙ୍କର ମହାନୁଭବତା । ନିଜର ବ୍ୟକ୍ତିଗତ ଇଚ୍ଛା ଓ ଅନିଚ୍ଛାକୁ ଚାପି ଦେଇ ମଣିଷର ବେଦନା, ସ୍ୱାଧିକାରକୁ ଅଗ୍ରାଧିକାର ଦେଇ ନିଜକୁ ହଜାଇ ଦେଇଛନ୍ତି– ସେହି ମହାସମୁଦ୍ର ମଧ୍ୟରେ । ତାଙ୍କର କବିତା 'ଚାଲୁଥିବି ପଥ ଶେଷଯାଏ' ସେହି ମହାଯାତ୍ରାର ସ୍ୱାକ୍ଷର ବହନ କରେ । 'ମୁଁ ଚଢେଇ କହୁଛି' ଓ 'ଭ୍ରାନ୍ତି' ପରି କବିତା ଏକ ନୂତନ ଚିନ୍ତା ଓ ଚେତନାର ଦିଗ୍‌ବଳୟକୁ ଉନ୍ମୋଚିତ କରେ । କାଞ୍ଜିଆହୁଦା ବର୍ତ୍ତମାନର ଅବକ୍ଷୟର ମୂଲ୍ୟବୋଧକୁ ନେଇ ଏକ ଭିନ୍ନ ସ୍ୱାଦର ବ୍ୟଙ୍ଗାତ୍ମକ କବିତା ।

ଅସହାୟ ବୃଦ୍ଧାବସ୍ଥାର କାରୁଣ୍ୟ ପ୍ରତି କବି ସମ୍ବେଦନଶୀଳ । ସମାଜରେ ପ୍ରତିନିୟତ ଘଟୁଥିବା ଘଟଣା ତାଙ୍କର ଅନେକ ଗଳ୍ପର ଉଦ୍ଦେଶ୍ୟ । 'ଜଣେ ଡେଙ୍ଗାଲୋକର ଇତିବୃତ୍ତି' ନିଆରା ଶୈଳୀରେ ରଚିତ ଏକ ସାର୍ଥକ କ୍ଷୁଦ୍ରଗଳ୍ପ । ମଣିଷର ଅହଂ ଓ ତା'ର ଗର୍ବକୁ ଅତି ବଳିଷ୍ଠ ଢଙ୍ଗରେ ଉପସ୍ଥାପିତ କରାଯାଇଛି ଏଥିରେ । ତାଙ୍କର 'ସୁଡଙ୍ଗର ଶେଷରେ' ଏକ ପ୍ରତିନିଧି ସ୍ଥାନୀୟ ଗଳ୍ପ, ଯାହା ମାଧ୍ୟମରେ ନନ୍ଦିନୀ ଆତ୍ମ ପ୍ରକାଶ କରିଛନ୍ତି ଅତି ସ୍ପଷ୍ଟ ଭାବରେ ।

ନନ୍ଦିନୀଙ୍କ ସାରସ୍ୱତ ପ୍ରତିଭା ଦ୍ୱିବିଧକାରକ । ସେ ଯେପରି ଜଣେ ସୃଷ୍ଟିଶାଳୀ ଗାଳ୍ପିକା ଓ କବୟିତ୍ରୀ, ଠିକ୍ ସେହିପରି ଜଣେ ସଫଳ ଅନୁବାଦିକା ।

ଅନୁବାଦିକା ନନ୍ଦିନୀ ଶତପଥୀ ତାଙ୍କର ପ୍ରଥମ ଅନୁବାଦିତ ପୁସ୍ତକ ହେଉଛି 'ଗାନ୍ଧୀ କଥାମୃତ' । ମହାତ୍ମା ଗାନ୍ଧୀଙ୍କ ନିଜ ଭାଷାରେ ଓ ଜୀବନ ଚିନ୍ତା ଏହାର ମୁଖ୍ୟ ବିଷୟବସ୍ତୁ । ଏହାକୁ ସଂଗ୍ରହ ଓ ସଂଯୋଜନା କରିଥିଲେ ସାହିତ୍ୟ ଏକାଡେମୀର ସଚିବ କୃଷ୍ଣକ୍ରିପାଳିନୀ । ଏଥିରେ ପ୍ରମୁଖ ଭୂମିକା ନିର୍ବାହ କରିଥିଲେ ପୂର୍ବତନ ରାଷ୍ଟ୍ରପତି ସର୍ବପଲ୍ଲୀ ରାଧାକ୍ରିଷ୍ଣନ । ଏହାକୁ ନନ୍ଦିନୀ ଦେବୀ ଓଡ଼ିଆରେ ଅନୁବାଦ କରିବା ପରେ ଏହି ପୁସ୍ତକଟିକୁ କେନ୍ଦ୍ର ସାହିତ୍ୟ ଏକାଡେମୀ ୧୯୭୦ ମସିହାରେ ପ୍ରଥମେ ପ୍ରକାଶିତ କରିଥିଲା ।

ଭାରତର ଜାତୀୟ ପିତା ମହାତ୍ମା ଗାନ୍ଧୀଙ୍କର ବ୍ୟକ୍ତିତ୍ୱ ଓ ରଚନାର ସବିଶେଷ ପ୍ରସାର କରିବା ସଙ୍ଗେ ସଙ୍ଗେ ବୃହତ୍ତର ଜନସାଧାରଣଙ୍କର ଚିନ୍ତାଧାରାକୁ ତାହା ଯେପରି ସ୍ପର୍ଶ କରେ, ସେଥିପ୍ରତି ଦୃଷ୍ଟି ରଖି ଏହି ପୁସ୍ତକଟିର ସଂକଳନ ହୋଇଅଛି । ସେଥିରେ ସେ ମହାତ୍ମା ଗାନ୍ଧୀଙ୍କର ଜୀବନ ଦର୍ଶନର ମୂଳତତ୍ତ୍ୱ ଓ ବିଭିନ୍ନ ଦେଶ ଓ ଜାତିର ଲୋକମାନଙ୍କର ମଧ୍ୟରେ ପ୍ରେମ ଓ ମୈତ୍ରୀ ଭାବ ବୃଦ୍ଧିରେ ତାହାର ପ୍ରଭାବର କଥା ସେ ଉଲ୍ଲେଖ କରିଅଛନ୍ତି ।

'ଗାନ୍ଧୀ କଥାମୃତ'ରେ ମୁଖ୍ୟତଃ ଗାନ୍ଧିଜୀଙ୍କର ଆତ୍ମ ଜୀବନୀ ସମ୍ପର୍କୀୟ, ଧର୍ମ ଓ ସତ୍ୟ, ସାଧନା ଓ ସାଧ୍ୟ, ଅହିଂସା, ଆତ୍ମଶୋଧନ, ଆନ୍ତର୍ଜାତୀୟ ଶାନ୍ତି, ମଣିଷ ଓ ଯନ୍ତ୍ର, ପ୍ରାଚୁର୍ଯ୍ୟ ମଧ୍ୟରେ ଦାରିଦ୍ର୍ୟ, ଗଣତନ୍ତ୍ର ଓ ଜନତା, ଶିକ୍ଷା, ନାରୀ, ବିବିଧ ଆଦି ବିଷୟରେ ଗାନ୍ଧିଜୀଙ୍କର ନିଜସ୍ୱ ମତାମତ ପରିପ୍ରକାଶ ହୋଇଅଛି ।

ଅନୁବାଦିକା ନନ୍ଦିନୀ ଶତପଥୀଙ୍କର ଦ୍ୱିତୀୟ ଅନୁବାଦ ପୁସ୍ତକ ହେଉଛି ଅମୃତାପ୍ରୀତମ୍‌ଙ୍କର ଆତ୍ମ ଜୀବନୀର ଅନୁବାଦ । ଅମୃତାପ୍ରୀତମ୍‌ଙ୍କର ଜୀବନ ଥିଲା ସାମାଜିକ ଅବକ୍ଷୟ ଏବଂ ମୂଲ୍ୟବୋଧ ପ୍ରତିଷ୍ଠା ପାଇଁ ସ୍ୱର ଉତ୍ତୋଳନ କରିବା । ସେବେଳର ଯେପରି ରକ୍ଷଣଶୀଳ ପଞ୍ଜାବୀ ଝିଅ ସମାଜରେ ସିଗାରେଟ୍ ପିଇବା, ତାଙ୍କଠାରୁ କମ୍ ବର୍ଷର ଚିତ୍ରକର ଇମ୍‌ରୋଜଙ୍କ ସହ ନିଜ ଘରେ

ବାସ କରିବା ଓ ଆହୁରି ଅନେକ ସାମାଜିକ ପରିବେଶ ଓ ସମାଜ ବିରୁଦ୍ଧରେ ପରିବର୍ତ୍ତନଏହି ରେଭିନ୍ୟୁ ଟିକେଟ୍‌ର ମୁଖ୍ୟ ବିଷୟବସ୍ତୁ । ଅମୃତାପ୍ରୀତମ୍ ନିଜ ଭିତର ଓ ବାହାରର ସମସ୍ତ କଥାକୁ ନିର୍ବିକାର ଭାବରେ ବିଶ୍ଳେଷଣ କରିବା ଓ ପାଠକ ପାଠିକାମାନଙ୍କ ନିକଟରେ ଏହାକୁ ଏତେ ସାହସର ସହିତ ଉପସ୍ଥାପିତ କରିବା କୌଣସି ପ୍ରତିଷ୍ଠିତା ନାରୀ ପକ୍ଷରେ ସଚରାଚର ଦୃଷ୍ଟିଗୋଚର ହୁଏନାହିଁ । କିନ୍ତୁ ଏ କ୍ଷେତ୍ରରେ ଅନନ୍ୟା ଥିଲେ ଅମୃତାପ୍ରୀତମ୍ ।

ଅନୁବାଦିକା ନନ୍ଦିନୀ ଶତପଥୀଙ୍କର ତୃତୀୟ ଅନୁବାଦ ପୁସ୍ତକ ବିଶିଷ୍ଟ ବଙ୍ଗଳା ଲେଖିକା ତସଲିମା ନାସରିନ୍‌ଙ୍କ ଲଜ୍ଜାର ଓଡ଼ିଆ ଅନୁବାଦ । ଲଜ୍ଜା ଉପନ୍ୟାସର ଓଡ଼ିଆ ଅନୁବାଦ ନନ୍ଦିନୀଙ୍କୁ ସାହିତ୍ୟ ଜଗତରେ ଏକ ସ୍ୱତନ୍ତ୍ର ସ୍ଥାନର ଅଧିକାରିଣୀ କରି ପାରିଅଛି ବୋଲି କହିଲେ ଅତ୍ୟୁକ୍ତି ହେବନାହିଁ ।

ଅନୁବାଦିକା ନନ୍ଦିନୀ ଶତପଥୀଙ୍କର ଚତୁର୍ଥ ଓ ଶେଷ ଅନୁବାଦ ପୁସ୍ତକ ବଙ୍ଗଳା ଲେଖିକା ମହାଶ୍ୱେତା ଦେବୀଙ୍କ ନିର୍ବାଚିତ ଗଳ୍ପ । ମହାଶ୍ୱେତା ଦେବୀ ଭାରତୀୟ ସାହିତ୍ୟ ଜଗତର ଏକ ସୁପରିଚିତ ନାମ । ଦରିଦ୍ର, ନିପୀଡିତ ମଣିଷର ସେବା କରିବା, ବିଶେଷକରି ପାହାଡ ଜଙ୍ଗଲରେ ବସବାସ କରୁଥିବା ଅଧିବାସୀମାନଙ୍କର ସେବା କରିବା ପାଇଁ ସେ ଜୀବନର ଏକ ବ୍ରତ ଭାବରେ ଗ୍ରହଣ କରିଅଛନ୍ତି । ଜମିଦାର, ମହାଜନ ଇତ୍ୟାଦି ଧନୀ ଲୋକମାନଙ୍କର ସାଧାରଣ ଲୋକଙ୍କ ପ୍ରତି ଯେଉଁ ବ୍ୟବହାର, ସେସବୁକୁ ଅତ୍ୟନ୍ତ ସାବଲୀଳ ଓ ପ୍ରାଣସ୍ପର୍ଶୀ ଭାବରେ ମହାଶ୍ୱେତା ଦେବୀ ପ୍ରକାଶ କରିଛନ୍ତି । ତାଙ୍କର ପଚାଶଟି ଗଳ୍ପ ମଧ୍ୟରୁ ନନ୍ଦିନୀ ଦେବୀ କୋଡିଏଟି ଗଳ୍ପ ଓଡ଼ିଆରେ ଅନୁବାଦ କରିଛନ୍ତି । ଯଥା– ଜଗନ୍ନାଥଙ୍କର ରଥ, ଶିଶୁ, ଛୁରୀ, କବିପତ୍ନୀ, ଅର୍ଜ୍ଜୁନ, ଗନ୍ଧ, ଚୋଲିକେ ପିଛେ, ଭାତ, ଜଳଛତ୍ର, ଭୀଷ୍ମଙ୍କ ପିପାସା, ଉର୍ବସୀ ଓ ଜନି, ଜନ୍ମଦିନ, ସଂଜ ଓ ସକାଳର ମା', ସିନ୍ଧୁବାଳା, ଭିତ୍ତି, ଭାରତବର୍ଷ, ଶୂନ୍ୟସ୍ଥାନ ପୂରଣ କର, ଜାହ୍ନବୀ ମା, ବନ୍ୟା ଓ ନିଶାଦ୍ ମାଝିର ଭୂଟାନ୍ ଯାତ୍ରା ଖୁବ୍ ହୃଦୟସ୍ପର୍ଶୀ ।

ନନ୍ଦିନୀ ଶତପଥୀ କେନ୍ଦ୍ର ସାହିତ୍ୟ ଏକାଡେମୀ ପୁରସ୍କାର ସହିତ ବହୁ ଅନୁଷ୍ଠାନରୁ ସେ ପୁରସ୍କୃତା ଓ ସମ୍ବର୍ଦ୍ଧିତା ହୋଇଥିଲେ । ଓଡ଼ିଶା ସାହିତ୍ୟ ଏକାଡେମୀ ପୁରସ୍କାର, ସାହିତ୍ୟ ଭାରତୀ ସମ୍ମାନ, ପ୍ରଜାତନ୍ତ୍ର ପ୍ରଚାର ସମିତି ସମ୍ମାନ ବ୍ୟତୀତ ସେ ମଧ୍ୟ ସ୍ୱାଧୀନତାର ସୁବର୍ଣ୍ଣ ଜୟନ୍ତୀ ସମାରୋହରେ ସମ୍ମାନିତା । ନନ୍ଦିନୀ ଦେବୀ କିଛିଦିନ ଓଡ଼ିଶା ସାହିତ୍ୟ ଏକାଡେମୀର ସଭାପତି ଭାବରେ ଦାୟିତ୍ୱ ମଧ୍ୟ ନିର୍ବାହ କରିଥିଲେ ।

ନନ୍ଦିନୀ ଶତପଥୀ ଥିଲେ ପ୍ରଚଣ୍ଡ ସ୍ୱାଭିମାନୀ, ଜୀବନରେ କାହାପାଖରେ ସେ କେବେହେଲେ ମୁଣ୍ଡ ନୁଆଁଇ ନାହାନ୍ତି । ସାରା ଜୀବନ ଲଢି ଆସିଥିବା ନନ୍ଦିନୀ ଆପଣା ରୋଗ ସାଙ୍ଗରେ ଲଢିଥିଲେ ବେଶ୍ କେତେବର୍ଷ । ୨୦୦୬ ମସିହା ଅଗଷ୍ଟ ୪ ତାରିଖରେ ତାଙ୍କ ଜୀବନଦୀପ ଲିଭି ଯାଇଥିଲା । ତାଙ୍କ ମୃତ୍ୟୁରେ ଭାରତବର୍ଷ ହରାଇଲା ଜଣେ ଜନନାୟିକାଙ୍କୁ ଓ ସର୍ବୋପରି ଓଡ଼ିଆ ସାହିତ୍ୟ ତାଙ୍କ ପରି ଜଣେ ମହାନ ସାରସ୍ୱତ ସାଧିକାଙ୍କୁ ସବୁଦିନ ପାଇଁ ହରାଇ ଦେଲା । ନନ୍ଦିନୀଙ୍କ ସାରସ୍ୱତ ସାହିତ୍ୟରେ ଅବଦାନକୁ ଆକଳନ କରିବା ପାଇଁ ସାମ୍ପ୍ରତିକ ଗବେଷକମାନେ ଆଗେଇ ଆସିଲେ ଏକ ଗରିମାମୟ ସାରସ୍ୱତ ସମୟକୁ ଜାଣିବା ସହଜ ହୋଇ ପାରିବ । କାଲି ହୁଏତ ରାଜନୀତିର ନନ୍ଦିନୀ କାଳଗର୍ଭରେ ବିସ୍ମୃତ ହୋଇଯାଇ ପାରନ୍ତି, ମାତ୍ର ମହାନ୍ ସାରସ୍ୱତ ସାଧିକା ନନ୍ଦିନୀ ଚିରକାଳ ଅମର ହୋଇ ରହିଥିବେ ।

ଗ୍ରା– ଶ୍ରୀରାମ ନିବାସ, ବଡହାଟ
ପୋ–ଭୁବନ–୭୫୯୦୧୭
ଜିଲ୍ଲା– ଢେଙ୍କାନାଳ

❖ ❖ ❖

# ଉତ୍କଳୀୟ ପରମ୍ପରାରେ ରଜପର୍ବ

**କୁଞ୍ଜବିହାରୀ ସାହୁ**



ନିଦାଘ ଗ୍ରୀଷ୍ମରେ ଯେତେବେଳେ ମା'ମାଟିର ଛାତି ସିଝିଯାଉଥାଏ, ମନଟି ଡହଳ ବିକଳ ହେଉଥାଏ, ସେତେବେଳେ ସେ ଆଦ୍ୟ ଆଷାଢ଼ର ପ୍ରଥମ ବାରିଧାରାକୁ ସ୍ୱାଗତ କରେ । ଗ୍ରୀଷ୍ମଋତୁ ବିଦାୟ ନିଏ ଲୁହର୍ଭିଜା ଆଖିରେ । ବର୍ଷାଋତୁ ଆସିଯାଏ ମେଘପାଲିଙ୍କିରେ । ଏହି ଯିବା ଆସିବାର ମାହେନ୍ଦ୍ର ଲଗ୍ନରେ ଉତ୍କଳରେ ଏକ ପର୍ବ ପାଳିତ ହୁଏ, ଯାହାକୁ ରଜ ପର୍ବ ବୋଲି କୁହାଯାଏ ।

ଜ୍ୟେଷ୍ଠ ମାସର ଶେଷଦିନ- ପହିଲିରଜ, ଆଷାଢ଼ ମାସର ପ୍ରଥମ ଦିନ ରଜସଂକ୍ରାନ୍ତି, ଦ୍ୱିତୀୟ ଦିନ ଅର୍ଥାତ୍ ସଂକ୍ରାନ୍ତିର ପରଦିନକୁ ଭୂଇଁ ନହଣ ବା ଭୂମି ଦହନ ବୋଲି କୁହାଯାଇଥାଏ । ଏ ତିନି ଦିନର ମିଳନ ତିଥିକୁ ରଜପର୍ବର ଆଖ୍ୟା ଦିଆଯାଇଛି । ମୃତ୍ତିକାକୁ ପ୍ରାଣ ପ୍ରତିଷ୍ଠା କରିବାର ଅପୂର୍ବ ମୁହୂର୍ତ୍ତ ପହଞ୍ଚେ । ମିଥୁନ ସଂକ୍ରାନ୍ତି ଦିନ ମୌସୁମୀ ଓ ମୃତ୍ତିକାର ମହାମିଳନ ଘଟେ । ମାତା ବସୁନ୍ଧରା ରଜସ୍ୱଳା ହୋଇ ଉତ୍ପାଦିକା ଶକ୍ତି ଲାଭ କରେ ।

ରଜ ପର୍ବରେ ଗାଁ ଦାଣ୍ଡ ଦୁଲୁକି ଉଠେ । କୁଆଁରୀର ଦେହସାରା ଖୁସିର ଫୁଲ ଫୁଟେ । ମନ ହଜିଯାଏ ସ୍ୱପ୍ନ ଇଲାକାରେ । ଆନ୍ଦୋଳିତ ହୁଏ ମନ । ଚମକିଯାଏ କଅଁଳ ହୃଦୟ । ଶ୍ରଦ୍ଧା-ସଂପ୍ରୀତିର ମଧୁର ସ୍ୱର ଅନୁରଣିତ ହୁଏ । ଅପହଞ୍ଚ ହୁଏ ରାଗ-ରୋଷ-ଦ୍ୱେଷ-ଅଭିମାନ । ଖୁସି ହିଁ ଖୁସି । ଚାରିଆଡେ ଏମିତିକା ଭିନ୍ନ ଅନୁରାଗର ମାହୋଲ ।

ଗୋବରଲିପା ମାଟିକାନ୍ଥ-ନଡା ଛପର ଘେରା କୁଡିଆ ଘର ଭିତରେ ବି ଆନନ୍ଦର କଲ୍ଲୋଳ ଛାଇ ହୋଇଯାଏ । କୁଆଁରୀଠୁ ଗାଁର ବୋହୂ ବି ରଜ ପର୍ବର ସ୍ୱାଗତିକା ଗାଏ । ଶବ୍ଦମନସ୍କ ହୁଏ ପରିବେଶ ।

ବନସ୍ତେ ଡାକିଲା ଗଜ
ବରଷକ ପରେ ଆସିଛି ରଜ
ଆସିଛି ରଜ ଲୋ
ନେଇ ନୂଆ ସଜବାଜ ।

ମା' ମଙ୍ଗଳାଙ୍କ ଗୀତିକା ଗାଇଗାଇ ଗାଁର ଝିଅ-ବୋହୂମାନେ ରଜପର୍ବକୁ ଆବାହନ କରନ୍ତି । ଶାଶୂ, ନଣନ୍ଦ-ବୋହୂଙ୍କ ପୂଜାର୍ଚ୍ଚନାରେ କୁଡିଆ ଘର ବାସ୍ନାୟିତ ହୁଏ ।

ଦୋଳିଖେଳ ସହିତ ତାସ୍–ଲୁଡୁପାଲି ଖେଳ ହିଁ ରଜପର୍ବର ମୁଖ୍ୟ ବୋଲି ଜନମାନସରେ ଆଦୃତ ହୋଇଛି । ଗାଁ ହେଉ କି ସହର ସବୁଆଡେ ରଜ ପର୍ବର ନିଆରା ମାହୋଲ ବାରି ହୋଇପଡେ । କବିତାଟିଏ ସ୍ୱତଃ ବାହାରିଯାଏ–

ଗାଆଁଠୁ ସହର ପୁଣି ସହରଠୁ ଗାଆଁ
ଯୁଆଡେ ଚାହିଁବ ବନ୍ଧୁ ସେ ଆଡକୁ ଚାହାଁ ।
ଖୋ...ଖୋ..., ଡୁ...ଡୁ ଆଉ କନାଡିର ଖେଳ
ରଜଦୋଳି ଖେଳିବାକୁ ଝିଅ ବୋହୂ ମେଳ ।

ପହିଲି ରଜରେ କୁଆଁରୀ କନ୍ୟା ଏପରିକି ନୂଆ ବୋହୂ ନୂତନ ପରିଧାନରେ ସଜ୍ଜିତ ହୁଅନ୍ତି । ମଥାରେ ଚନ୍ଦନ–କୁଙ୍କୁମ ଟିପା, ପାଦରେ ଅଳତା ନାଇ ମନ ଖୁସିରେ ଘରକୁ ଘର ବୁଲନ୍ତି । ସତେ ଯେପରି ଅନୁରାଗର ଏକ ମୂଲ୍ୟବାନ ଇସ୍ତାହାର ଦେଖିବାକୁ ମିଳେ ।

ନୂଆ ଲୁଗା ପିନ୍ଧି ଭଳିଭଳିକା
କୁଆଁରୀ ଖେଳନ୍ତି ବୋହୂ ବୋହୂକା
ବରଷକ ପରେ ଆସିଛି ରଜ
ଦୋଳିଝୁଲା ତାର କେତେ ମଉଜ
ଯା ଝୁଲି ଯା..
ମେଘ ଛୁଇଁଯା ।

ଘର ଅଗଣା ହେଉ କି ଆମ୍ବତୋଟା ହେଉ, ସବୁଠି ଗହଳ ଚହଳ ଲାଗେ । ଖୁସି–ଆନନ୍ଦର ପରିସର ମଧ୍ୟରେ ବିଶେଷ କରି ଦୋଳି ଖେଳିବାର ଭିନ୍ନ ଆବେଗମୟ ଅନୁଭବରେ ସମସ୍ତେ ଆତ୍ମବିଭୋର । ହୃଦୟ ଖୋଲା ସଭିଙ୍କର । ଚିରହରିତ୍ ବୃକ୍ଷପରି ମନ । ଚଳଚଞ୍ଚଳ ହରିଣୀ ପରି ପାନଖିଆ ଓଠ ଆଉ ନୀଳସମୁଦ୍ରର ଉତ୍ତାଳ ଲହଡି ପରି ଆଖିର ଚାହାଁଣୀ । ଦୋଳିରେ ଝୁଲି ଆକାଶକୁ ଚାହିଁବାର ମୁଗ୍ଧ ଶିହରଣ ମନ ଭିତରେ ବସା ବାନ୍ଧେ । ଥଙ୍ଗା ତାମସା ଭିତରେ ଗୀତର ଲହରୀ ଶୁଭିଯାଏ ଅଦୂର ପୋଖରୀହୁଡା ଅବା ତାଳବଣ ଆଡେ ।

ନଈକି ମାରିଲି ଗିଲ
ନଈ ଆରପଟେ ଦୁଇଟି ଚିଲ
ଦୁଇଟି ଚିଲ ଲୋ, ହେଉଥା'ନ୍ତି ଖୁସି ଗେଲ ।
ନଈକି ମାରିଲି ଗିଲ ସଙ୍ଗାତୁଣୀ
ନଈକି ମାରିଲି ଗିଲ
କି' ରଙ୍ଗ ଦେଖାଉ ଦିଅର ଟୋକାରେ
ଭାଙ୍ଗିନାହିଁ ଦୁଧ ଗାଲ ।

ଗୀତର ପ୍ରତିଯୋଗିତା ଚାଲେ । ହାର୍–ଜିତ୍‌ର ପ୍ରଶ୍ନ ନାହିଁ କାହା ମନରେ । ପୁଣି ଦି' ଘଡି ଚାଲେ ଦୋଳିଖେଳ । କେତେ ପ୍ରକାର ଦୋଳି–ପଟାଦୋଳି, ବାଉଁଶ ଦୋଳି, ରାମଦୋଳି ବି ପସରା ମେଲେ ।ଗୀତର ସ୍ୱର ଝରିଯାଏ ବିବିଡ ଆତ୍ମୀୟତାରେ ।

ଦିନସରି ହେଲେ ସଞ୍ଜ
ଭାଉଜ ଖୋଜିବେ ଗୋଟିଏ ଖଞ୍ଜ,
ଗୋଟିଏ ଖଞ୍ଜ ଲୋ
କରିବା ପାଇଁ ମଉଜ ।'

ରଜ ପର୍ବରେ କେବଳ ଝିଅ–ବୋହୂଙ୍କ ସାଜସଜ୍ଜା, ନୂଆ ଚେହେରାର ମାଦକତାର ଛିଟା ପଡେନି, ଟୋକାଠାରୁ ବୁଢା ପର୍ଯ୍ୟନ୍ତ ସମସ୍ତେ ଆନନ୍ଦ ମୁଖରିତ ହୋଇ ପ୍ରତ୍ୟେକ ମୁହୂର୍ତ୍ତର ସଦୁପଯୋଗ କରନ୍ତି । ଘରପିଣ୍ଡା ହେଉ ଗାଁ ମଣ୍ଡପ ଅବା ବରଗଛ ଛାଇ ସବୁଠି ତାସ–ଲୁଡୁର ଖେଳ ଜମିଯାଏ । ଗାଁରେ ରହୁଥିବା ଲୋକଠାରୁ ଆରମ୍ଭ କରି ସହରରୁ ଆସିଥିବା ଲୋକମାନେ ବି ଏହି ଖେଳରେ ଭାଗନେଇ ଅଭୁଲା ଆନନ୍ଦ ପାଆନ୍ତି । ନଈବାଲିରେ ଡୁ..ଡୁ.., କବାଡି ଖେଳ ଚାଲେ । ଗୀତର ତାଳେ ତାଳେ ରାହା ଧରି ଖେଳିବାର ମଜା ସମ୍ପୂର୍ଣ୍ଣ ନିଆରା ନିଆରା ପରି ମନେ ହୁଏ । ସଞ୍ଜ ହେଲେ ନାଟମଣ୍ଡପର ଫାଟକ ଖୋଲିଯାଏ । ନିଜ ନିଜର କଳା ନୈପୁଣ୍ୟ ଦେଖାଇ ନାଟକ କରନ୍ତି । ରାଗ–ରୋଷ–ଅଭିମାନ, ହିଂସା–ଈର୍ଷାକୁ ପାସୋରି ଅଭିନୟରେ ଏକାକାର ହୋଇଯାଆନ୍ତି ।

ଆବାଳ–ବୃଦ୍ଧ–ବନିତା ସମସ୍ତେ ଉପଭୋଗ କରନ୍ତି ନାଟକ/ଅଭିନୟକୁ । ଭରପୂର ଦର୍ଶକମାନଙ୍କର ପ୍ରଶଂସା ଓ ତାଳିମାଡରେ ନାଟମଣ୍ଡପ ରଙ୍ଗୀନ ହୋଇଯାଏ ।

ରଜ ପର୍ବରେ ରୋମାଣ୍ଟିସିଜିମ୍ ବି ପଦଚାରଣ କରେ । ଝିଅମାନଙ୍କର ଦୋଳି ଖେଳ, ଦୋଳି ଗୀତର ଅଫୁରନ୍ତ ଆନନ୍ଦ ନେଉଥିଲା ବେଳେ ନବ ବଧୂର ଆଖିରେ ଭସାଣିଆ ମେଘର ଚାହାଁଣି, ଛାତିରେ ସ୍ୱାମୀର ଅହେତୁକ ପ୍ରେମର ନିବେଦନ, ଅପାସୋର। ରାତିର କାହାଣୀ ଚମକ ତୋଳେ । ବେଳେବେଳେ ପ୍ରେମ କରୁଥିବା ବାନ୍ଧବୀମାନଙ୍କୁ ଥଙ୍ଗା ବଚନିକା ବାଢିଦିଏ ନବବଧୂ–

କଷିଡାଳ ପଡେ ଖସି
ପୀରତି ଆଶାରେ ରହିଲି ବସି/ରହିଲି ବସି ଲୋ
କଥା ନ କହିଲୁ ହସି ।

ତାଟିଆରେ ଭଜା ବଡି
ଯାଚିଲା ପୀରତି ଯାଉଛୁ ଛାଡି/ଯାଉଛୁ ଛାଡି ଲୋ
ପଉରେ(ପରେ) ନହେବୁ ଝୁରି ।

ପବିତ୍ର ରଜ ପର୍ବରେ କୁଆଁରୀମାନେ ଭୂଇଁରେ ଚାଲିବା ନିଷେଧ ବୋଲି ଏବେ ବି ଲୋକ ପରମ୍ପରାରେ ରହି ଆସିଛି । ଯଦିଓ ବର୍ତ୍ତମାନ ସମୟରେ ଜଳବାୟୁର ଭିନ୍ନତା ଭିତରେ ଏସବୁ ଲୁଚି ଗଲାଣି । ସେହି ପୁରୁଣା ସଂସ୍କୃତି-ପରମ୍ପରାକୁ ମନେ ପକାଇ କୁଆଁରୀ କନ୍ୟାମାନେ ଗୀତଟିଏ ଅଭୁଲା ଠାଣିରେ ଗାଆନ୍ତି-

ରାଶିରୁ ଛାଡିଲା ଚୋପା
ପାଦରେ ନାଇଛୁ ଗୁଆ ଖୋଳପା
ଗୁଆ ଖୋଳପା ଲୋ
ମୁଣ୍ଡରେ ସିନ୍ଦୂର ଟୋପା ।

ଉପରୋକ୍ତ ଉକ୍ତିକୁ ଲକ୍ଷ୍ୟ କଲେ ଜଣାପଡେ ଯେ ପହିଲି ବର୍ଷା କାଳରେ ମାଟି ଆର୍ଦ୍ରଥାଏ । ବାୟୁର ଶୀତୁଆ ଶୀତୁଆ ଠାଣି ଥଣ୍ଡା ଜନିତ ରୋଗକୁ ନିମନ୍ତ୍ରଣ କରିଥାଏ । ବୋଧହୁଏ କଦଳୀ ପଟୁକା ଓ ଗୁଆ ଖୋଳପାର ଚାହିଦା ତଥା ବ୍ୟବହାର ଅଧିକା ଥିଲା ।

ଓଡ଼ିଆମାନଙ୍କ ପାଇଁ ଦୋଳି ଖେଳର ପରମ୍ପରା ଯେ ବନ୍ଧା ପଡିଛି ତା ନୁହେଁ, ଆଦିବାସୀମାନେ ମଧ୍ୟ ଏହି ଦୋଳି ଖେଳକୁ ରଜ ପର୍ବର ମୁଖ୍ୟ ଆନନ୍ଦଦାୟକ ଖୋରାକ ରୂପେ ବାଛି ନିଅନ୍ତି । କେଉଁଝର ଜିଲ୍ଲାର ଭୂୟାଁ, ଜୁଆଙ୍ଗ, ଭାତୁଡି ସମ୍ପ୍ରଦାୟର ଲୋକମାନେ ଚାରିଦିନ ଧରି ରଜମଉଜ କରିଥାନ୍ତି । ପ୍ରଥମ ଦିନ ରଜବତୀ ଠାକୁରାଣୀଙ୍କୁ ପୂଜା କରି ଦୋଳି ପୂଜା କରିଥାନ୍ତି । ଏହା ପୂର୍ବରୁ ପ୍ରାୟ ଏକ ସପ୍ତାହରୁ ଅଧିକ ଦିନ ଧରି ଜଙ୍ଗଲକୁ ଯାଇ ଦୋଳି ପାଇଁ କାଠ ଆଣନ୍ତି । ପଟାଦୋଳି, ରାମଦୋଳି, ବାଉଁଶ ଦୋଳି ଏହିପରି ୧୪ ପ୍ରକାର ଦୋଳି ତିଆରି କରନ୍ତି । ଥଟ୍ଟା- ତାମସାରେ ଦୋଳି ଖେଳି ଖେଳି ଗୀତ ଗାଆନ୍ତି । ଘରେ ପିଠାପଣା ଖାଇ ସାଇ ପଡିଶାକୁ ବାଣ୍ଟିବାଣ୍ଟି ଖୁସି ମନାନ୍ତି । ପଞ୍ଚମ ବା ଶେଷଦିନ ରଜ ବାଟୋଇବା ପର୍ବକୁ ପାଳନ କରନ୍ତି ।

କୋରାପୁଟ ଜିଲ୍ଲାରେ ବସବାସ କରୁଥିବା ଆଦିବାସୀମାନେ ଦୋଳିକୁ 'ଡଲି' ବୋଲି କହିଥାନ୍ତି ।

ଖିଲିପାନ ଖାଇବା ଓ ଖୁଆଇବାର ଏକ ଅଫୁରନ୍ତ ଆନନ୍ଦର ଛିଟା ବାରିହୋଇଯାଏ ରଜପର୍ବ ପାଳନ ଅବସରରେ । ପାନର ବିଭିନ୍ନ ସାମଗ୍ରୀକୁ ସଜେଇ ବିଭିନ୍ନ ପ୍ରକାର ସୁସ୍ୱାଦୁ ପାନ ବିକ୍ରୀ ହୁଏ, ଯାହାର ମୂଲ୍ୟ ବି ସାଧାରଣ ପାନଖିଲ ଅପେକ୍ଷା ଅଧିକ । ରଞ୍ଜିତ ହୁଏ ସବୁରି ଓଠ । ଗୋରା ଗାଲରେ କଳାଜାଇ ଆକୃଷ୍ଟ କଲାପରି କୁଆଁରୀ ଓ ନୂଆବୋହୂର ପଦ୍ମଫୁଟା ଓଠରେ ଖିଲିପାନର ହାଲ୍କା ହାଲ୍କା ଲାଲ୍ ଆସ୍ତରଣ ଖୁବ୍ ଆକର୍ଷଣୀୟ ତଥା ରୋମାଣ୍ଟିକ୍ ରୋମାଣ୍ଟିକ ଲାଗେ । ଚାଲିଲା ଲୋକ ବି ଦଣ୍ଡେ ଠିଆ ହୋଇ ଘଡିଏ ଚାହିଁ ରହେ । ସେ ବି ମନେପକାଏ ସଂସ୍କୃତିର ଏହି ରଜ ପର୍ବରେ ପାନର ମହନୀୟତାକୁ ।

ନୂଆ ବୋହୂ କଳରେ ପାନଖିଲ ଜାକି କଥା କହେ । ଅଲକ୍ଷ୍ୟରେ ପାନଛେପ ତଳେ ପଡିଯାଏ । ରକ୍ଷଣଶୀଳ ଶାଶୂର ଚାହାଁଣୀ ତା ଛାତିରେ ତୀର ମାରିଦିଏ । ଚମକି ପଡେ ଆକସ୍ମିକଭାବେ ।

ଗେହ୍ଲୀ ନଣନ୍ଦ ତା ବଉଳ (ସାଙ୍ଗ)କୁ ଡାକି ଗୀତରେ କଥା କହେ-

'ଆ ଖିଲିପାନ ବଣକୁ ଯିବା
ବଣକୁ ଯିବା.. କୋଳି ଖାଇବା ।'

ଏକ ମଧୁର ଆବେଗରେ ପରିବେଶ ମନ୍ତ୍ରମୁଗ୍ଧ ହୋଇଯାଏ । ସୁବାସିତ ଖିଲିପାନର ପରମ୍ପରା ଲକ୍ଷ୍ମୀପୁରାଣରେ ବି ବର୍ଣ୍ଣିତ ହୋଇଛି ।

ଭୋଜନ ସାରିଣ ପ୍ରଭୁ ଆଗମନ କଲେ
କର୍ପୂର ତାମ୍ବୁଳ ଦୁଇ ଭାଇ ଯେ ଭୁଞ୍ଜିଲେ ।

ରଜ ପର୍ବର ଅନ୍ୟ ଏକ ଆକର୍ଷଣ ହେଲା ପୋଡପିଠା । ଉତ୍କଳୀୟ ପରମ୍ପରା ସହିତ ପୋଡପିଠାର ଏକ ନିବିଡ ସମ୍ପର୍କ ରହିଛି । ସ୍ତ୍ରୀଲୋକମାନେ ଚାଉଳ, ଗହମ, ବିରି, ରାଶି, ନଡିଆ, ଘିଅ ପ୍ରଭୃତିର ମିଶ୍ରଣରେ ସୁମିଷ୍ଟ ଓ ସୁସ୍ୱାଦୁ ପୋଡପିଠା ପ୍ରସ୍ତୁତ କରନ୍ତି । ବଳରାମ ଦାସଙ୍କ କୃତ 'ଲକ୍ଷ୍ମୀପୁରାଣ'ରେ ବି ପୋଡପିଠାର ମହନୀୟତା ପ୍ରତିପାଦିତ ହୋଇଛି ।

'ଲକ୍ଷ୍ମୀଙ୍କର ପାକପରି ଲାଗୁଛି କହ୍ନାଇ
ଶେଷେ ପୋଡପିଠା ଦେଖି ଆଚମ୍ବିତ ହୋଇ ।'

ମା/ବୋଉର ହାତ ତିଆରି ସୁମିଷ୍ଟ ପୋଡପିଠାଟି ସତେ ଯେମିତି ସ୍ନେହ ମମତାରେ ପୂରି ରହିଥାଏ । ସେ ନିଜ ହାତରେ ଖୁଆଇ ଆନନ୍ଦ ପାଏ ।

'ଖାଅରେ ଖାଅ ପୋଡପିଠାଟି, ରଜପରବ ଆଜି
ତୁମରି ସ୍ନେହ-ସରାଗ ପାଇ ପଣତ ଯାଏ ଭିଜି ।'

(ରଜପରବ- 'ସମୟ-୧୪.୬.୯୮')

ରଜ ପର୍ବର ଦୁଇଟି ଦିନ ତମାମ ଖୁସିରେ ସମୟ କଟେ । ତୃତୀୟ ଦିନ ଅର୍ଥାତ୍ ଭୂମିଦହନ ତିଥିରେ କୃଷି କାର୍ଯ୍ୟ ବନ୍ଦ ରହେ । ଏହି ତିନିଦିନ ଧରିତ୍ରୀ ରଜସ୍ୱଳା ହୋଇଥିବାରୁ ଚାଉଳ କୁଟିବା, ଶିଳରେ ବାଟିବା, ପାଣିବୋହିବା ପରି ଘରୋଇ କାର୍ଯ୍ୟରେ ସାଧାରଣତଃ ଲଗାମ ଲାଗିଥାଏ । ପାଞ୍ଚଣକୁ ଡର ନଥାଏ ବୋଲି ବଳଦର ଖୁସି କହିଲେ ନସରେ । କୃଷକର ବିଶ୍ରାମ ପର୍ବ ବୋଲି କେହି କେହି କହିଥାନ୍ତି । ରଜ ପର୍ବର ଚତୁର୍ଥ ଦିନ– ଧରାସ୍ନାନରେ ପ୍ରତ୍ୟୁଷରେ ପ୍ରତ୍ୟେକ ଘର ଅଗଣାରେ ଏକ କାଷ୍ଠ ଉପରେ ଲଙ୍ଗଳ ଲୁହା ସହିତ ଶିଳପୁଆ, ନଡିଆ ଇତ୍ୟାଦି ରଖି ହଳଦୀ ପାଣିରେ ସ୍ନାନ କରାଯାଇଥାଏ । କୃଷକ ବିଶ୍ରାମ ତେଜି ଓଠରେ ହସ ଖେଳାଏ । କୃଷି ହିଁ ଜୀବିକା– ଏହି ମୂଳ ମନ୍ତ୍ରକୁ ଆଧାର କରି କୃଷିକାର୍ଯ୍ୟ ଆରମ୍ଭ କରେ ।

ଖୋଲାଖୋଲି ଭାବରେ କହିବାକୁ ଗଲେ ରଜପର୍ବ ପାଳନର ବିଶେଷ ଲକ୍ଷ୍ୟ କେବଳ ଗାଁ ଗହଳିରେ ଅନୁଭୂତ ହୋଇଥାଏ । ନାଁକୁ ମାତ୍ର ସହରର ଗଳିକନ୍ଦିରେ ପାଳିତ ହେବାର ଜଣାପଡେ । ଯାନ୍ତ୍ରିକ ସଭ୍ୟତାର ଅଭ୍ୟୁଦୟ ଫଳରେ ଉତ୍କଳୀୟ ପରମ୍ପରା କ୍ଷୁଣ୍ଣ ହେବାରେ ଲାଗିଛି । ସତେ ଯେମିତି ଏହାର ମୌଳିକତା ହରାଇ ବସିଛି । ରାସ୍ତା କଡରେ ବିକ୍ରୀ ହେଉଥିବା ପ୍ଲାଷ୍ଟିକ ଦୌଡିର ଦୋଳିର ଚାହିଦା ବଢିବା ସଙ୍ଗେ ସଙ୍ଗେ ନୂଆ ରଙ୍ଗୀନ ପୋଷାକ ବିଭୂଷିତା ହୋଇ ଝିଅ ବୋହୂଙ୍କର ଆମୋଦପ୍ରମୋଦର ବାଟ ଫିଟିଯାଇଛି ଏହି ରଜପର୍ବରେ । ଏମିତିକି ଝିଅଟିଏ ବୋହୂ ସାଜି ରକ୍ଷଣଶୀଳ ଶାଶୂ ଘରେ ବନ୍ଦୀ ଜୀବନ କଟାଏ । ତା'ପାଇଁ ଦୋଳି ଖେଳ ହୁଏ ସାତ ସପନ ଓ ଦୋଳିଗୀତ ହୁଏ ବେସୁରା ରାଗିଣୀ । ଓଢଣା ଭିତରେ ମୁହଁକୁ ଲୁଚେଇ ସଂସ୍କୃତିକୁ ରୋମନ୍ଥନ କରେ ନିରବ ଭାଷାରେ ।

ପୋଡପିଠାର ମହକ ଅତୀତ ହୋଇଯାଏ ବିଭିନ୍ନ ରେଷ୍ଟୁରାଣ୍ଟରେ । ଗାଉଁଲି ନାଟକ– ଗୀତ ଶୂନ୍ୟସ୍ଥାନ ଭରିଦିଏ ଉଦ୍ଭବ ନାଟକର ବଳୟ ଭିତରେ । ସୁବାସିତ ପାନଖିଲର ଚାହିଦା ବଢେ ସିନା, ପ୍ରକୃତ ମହନୀୟତା ଉପଲବ୍ଧି କରି ହୁଏନା ସହଜରେ ।

ସ୍ୱାମୀକୁ ହାତମୁଠାରେ ବାନ୍ଧିରଖେ ସ୍ତ୍ରୀ । ଗେହ୍ଲାପୁଅ ଭୁଲିଯାଏ ଜନ୍ମିତ ବାପା–ବୋଉକୁ । ନିଜ ଭିଟାମାଟିକୁ ଅନାଦାର କରେ । ଗ୍ରାମୀଣ ସଂସ୍କୃତିର ଏହି ରଜ ପର୍ବକୁ ମନକୁ ପାସୋରିଦିଏ ସହଜରେ ।

ସହରର କଂକ୍ରିଟ ରାସ୍ତା, ସୁରମ୍ୟ ଅଟ୍ଟାଳିକାର ଆଗମନୀ ବିରାଟ ଗଛ କୃଛର ଶତ୍ରୁ ପାଲଟେ । ତୋଟା ନାହିଁକି, ଗହଳିଚହଳି ନାହିଁ । ଉଦାସମନ ସଂସ୍କୃତି ପାଇଁ ।

ଦୋଳିଖେଳିବାର ଚାତୁରୀ, ଗୀତ ଗାଇବାର ମୁଗ୍ଧ ମାଧୁରିମା ଏବେ ନିଆରା ନିଆରା ଭାବଧାରା ପାଲଟି ଯାଇଛି । ଜୀବନ ଦର୍ଶନର ସଂଜ୍ଞା ନିରୂପଣ କରି ଦୋଳି ଖେଳକୁ ଏକ ଭିନ୍ନ ସ୍ୱାଦ ଦେଇଛନ୍ତି ଗୀତିକାର–

ଥିରି ଥିରି ଥିରି ଖେଳୁଥା ଦୋଳିଲୋ ବଉଳମାଳି ଦୋଳି କାଳେ ଯିବ ଗଛରୁ ଛିଣ୍ଡିଲୋ ବଉଳମାଳି...

ଆଧୁନିକ ଚାକଚକ୍ୟରେ ନିଜକୁ ହଜାଇ ଗ୍ରାମ୍ୟ ସଂସ୍କୃତିକୁ ଭୁଲିଲା ବେଳକୁ କବିତାଟିଏ ମନକୁ ଆସେ–

'ଗାଁ ସିନା କାନ୍ଦୁଅଛି ଦୁଃଖରେ ଲୁହରେ
ସହରଟା ହସୁଅଛି ସୁଖରେ ମୋହରେ ।'

ତଥାପି ବଞ୍ଚି ରହିଛି ଓଡ଼ିଆର ସଂସ୍କୃତି, ପରମ୍ପରା । ଏହି ରଜପର୍ବ ମିଠା ମିଠା ସ୍ମୃତି ବାଣ୍ଟିଦେଉ ସଭିଙ୍କ ମନ–ହୃଦୟରେ ।

ଜଳବିଭାଜିକା ପ୍ରକଳ୍ପ
ନିର୍ଦ୍ଦେଶକଙ୍କ କାର୍ଯ୍ୟାଳୟ, ବରଗଡ

❖ ❖ ❖

# ଓଡ଼ିଶାରେ ସମାଜବାଦୀ ଆନ୍ଦୋଳନ ଓ ସୁରେନ୍ଦ୍ରନାଥ ଦ୍ୱିବେଦୀ

ଯୁଗଳ କିଶୋର ହୋତା

ବିଶ୍ୱରେ ସମାଜବାଦୀ ଚିନ୍ତାଧାରା ବହୁ ପୁରୁଣା । ମାନବ ସମାଜ ସୃଷ୍ଟିରୁ ଦୁର୍ବଳ ଉପରେ ସବଳର ଅତ୍ୟାଚାର ଏକ ନିତି ଦିନିଆ ଘଟଣା ଓ ଦେହସୁହା ମଧ୍ୟ । ଯୋର୍ ଯାହାର ମୂଲକ ତାର ନୀତିକୁ ଯେଉଁମାନେ ବିରୋଧ କଲେ, ସେମାନଙ୍କ ଉଦ୍ୟମରେ ପ୍ରଥମେ ସମାଜ ଓ ପରେ ରାଷ୍ଟ୍ର ଗଠନ ହେଲା । ରାଷ୍ଟ୍ର ଗଠନ ପରେ ସମାଜରେ ଦୁଇଟି ଶ୍ରେଣୀ ଦେଖାଗଲା । ଗୋଟିଏ ଧନୀ ଏବଂ ଅନ୍ୟଟି ଗରିବ କାଳକ୍ରମେ ଧନୀଲୋକମାନେ ଅଧିକ ଧନୀ ଏବଂ ଦରିଦ୍ରମାନେ ଅଧିକ ଦରିଦ୍ର ହେଲେ । ପୁଞ୍ଜିପତିମାନେ ଗରିବଲୋକଙ୍କୁ ବିଭିନ୍ନ ଉପାୟରେ ଶୋଷଣ କଲେ । ଏହି ପୁଞ୍ଜିପତିମାନଙ୍କ କବଳରୁ ନିଜକୁ ରକ୍ଷା କରିବା ପାଇଁ ସାଧାରଣ ଜନତା ତ୍ରାହି ତ୍ରାହି ଡାକିଲେ । ଠିକ୍ ଏହି ସମୟରେ ଦରିଦ୍ରମାନଙ୍କୁ ସମାଜର ମୁଖ୍ୟ ସ୍ରୋତରେ ସାମିଲ୍ କରିବା ପାଇଁ ବିଶ୍ୱରେ ବିଭିନ୍ନ ବାଦର ଉତ୍ପତ୍ତି ଯଥା ସାମ୍ୟବାଦ ଓ ସମାଜବାଦ ।

ପୃଥିବୀର ସର୍ବପ୍ରଥମେ ସାମ୍ୟବାଦୀ ଆନ୍ଦୋଳନ ସୋଭିଏତ୍ ରୁଷ୍‌ରେ ଆରମ୍ଭ ହୋଇଥିଲା । ବିଶ୍ୱର ସୁପ୍ରସିଦ୍ଧ ଦାର୍ଶନିକ କାଲମାର୍କସ୍ ପୁଞ୍ଜିପତି ଓ ଧନୀକ ଶ୍ରେଣୀ ବିରୋଧରେ ଲଢ଼ିବା ପାଇଁ, ଦରିଦ୍ର, ଖଟିଖିଆ ଓ ନିଷ୍ପେଷିତ ଜନତାଙ୍କୁ ଆହ୍ୱାନ ଦେଇଥିଲେ । ତାଙ୍କର ଡାକରାରେ ବିଶ୍ୱର ଦୁଃସ୍ଥ ଓ ନିଷ୍ପେଷିତ ଜନଗଣ ଶୋଷକ ଗୋଷ୍ଠୀଙ୍କ ବିରୁଦ୍ଧରେ ଏକଜୁଟ୍ ହୋଇଥିଲେ । ତାଙ୍କର ପଟ୍ଟଶିଷ୍ୟ ଲେନିନ୍ ଏହି ନୀତିକୁ ପ୍ରଥମେ ରୁଷ୍‌ରେ କାର୍ଯ୍ୟକାରୀ କରାଇବାରେ ସଫଳ ହୋଇଥିଲେ ୧୯୧୭ ଖ୍ରୀ:ଅରେ । ରୁଷ୍‌ରେ ଜାରମାନଙ୍କ ଅତ୍ୟାଚାର, ହିଂସା ଓ ଦମନରୁ ମୁକ୍ତି ପାଇଁ ୧୯୦୫ରେ ରୁଷ୍ ବିପ୍ଳବ ଆରମ୍ଭ ହେଲା ଏବଂ ୧୯୧୭ରେ ରୁଷ୍‌ରେ କମ୍ୟୁନିଷ୍ଟମାନେ ଶାସନ ଡୋରି ନିଜ ହାତକୁ ନେଲେ । ଏହାର ପ୍ରଭାବ ବିଶ୍ୱର ଅନେକ ଦେଶରେ ପ୍ରତିଫଳିତ ହେଲା । ଏହି ଧାରାରୁ ଭାରତ ବା ବାଦ୍ ପଡନ୍ତା କିପରି ?

ଭାରତ ସେତେବେଳେ ପରାଧୀନ ଥାଏ । ଭାରତୀୟ ଜାତୀୟ କଂଗ୍ରେସ ମହାତ୍ମା ଗାନ୍ଧୀଙ୍କ ନେତୃତ୍ୱରେ ଅହିଂସା ନୀତିରେ ଜାତୀୟ ଆନ୍ଦୋଳନ ଚଳାଇଥାଏ । ସ୍ୱାଧୀନତା ଆନ୍ଦୋଳନରେ ଝାସ ଦେଇ ଅନେକ ନେତା କାରାବରଣ କରିଥାନ୍ତି । ଏହି ନେତାମାନଙ୍କ ମଧ୍ୟରେ ଥିଲେ ଓଡ଼ିଶାର ବିଶିଷ୍ଟ ସମାଜବାଦୀ ନେତା ସୁରେନ୍ଦ୍ର ନାଥ ଦ୍ୱିବେଦୀ । ୧୯୩୦ ମସିହାରେ ସେ ବିହାରର ହଜାରୀବାଗ୍ ଜେଲ୍‌ରେ ଥାଇ ମାକ୍ ସିମ୍‌ଗର୍କିଙ୍କ ଲିଖିତ ପୁସ୍ତକ ପଢ଼ିବାର ସୁଯୋଗ ପାଇଥିଲେ ଏବଂ ସେହି ପୁସ୍ତକ ତାଙ୍କ ଜୀବନରେ ଆଣିଥିଲା ବୈପ୍ଳବିକ ପରିବର୍ତ୍ତନ । ଏହି ବହିରେ ଲେଖାଅଛି ଆମେ ସମସ୍ତେ ଏକ ଜନନୀର ସନ୍ତାନ । ସାରା ବିଶ୍ୱର ଶ୍ରମିକ ଶ୍ରେଣୀର ଭ୍ରାତୃଭାବନାରେ ଆମ ଭିତରେ ଅଟଳ ବିଶ୍ୱାସ ରହିଛି । ଏହି ଭାବନା ଆମ ହୃଦୟରେ ଆଲୋଡ଼ନ ସୃଷ୍ଟି କରୁଛି । ଶ୍ରମିକର ହୃଦୟ ହିଁ ଏକ ଆକାଶ ସଦୃଶ ଏବଂ ସେହି ବାସ୍ତବ ଗଗନରେ ସୂର୍ଯ୍ୟ ଉଭା ହେଲେଣି । ଆଲୋକ ବିକିରଣ ହେଉଛି । ସେ ଯେ ହୋଇଥାଉ ପଛକେ, ସେ ଯେଉଁ ନାମ କରଣ କରିଥାଉ, ସେଥିରେ କିଛି ଯାଏ ଆସେନା । ସବୁକାଳ ପାଇଁ ଆଜିକାଲି ଏବଂ ଚିରଦିନ ନିମନ୍ତେ ସବୁ ସୋସିଆଲିଷ୍ଟ ହେଉଛନ୍ତି ଆମର ଭାଇ ଓ ସହୋଦର । ଏହି ଲେଖା ସୁରେନ୍ଦ୍ରନାଥଙ୍କୁ ଏକ ବିପ୍ଳବୀରେ ପରିଣତ କଲା । ଭାରତର ସ୍ୱାଧୀନତା ଆନ୍ଦୋଳନ ଭିତରୁ ହିଁ ସୋସିଆଲିଷ୍ଟ ଆନ୍ଦୋଳନର ଉଦ୍ଭବ ହେଲା । ଜେଲ୍ ଭିତରେ ତାଙ୍କ ମନରେ ସୋସିଆଲିଷ୍ଟ ବୀଜ ଅଂକୁରିତ ହେଲା । ୧୯୩୩ ମସିହାରେ ନାସିକ୍ ଜେଲ୍‌ରେ ବନ୍ଦୀ ଥିବାବେଳେ ଜୟ ପ୍ରକାଶ ନାରାୟଣ ସ୍ୱାଧୀନତା ସଂଗ୍ରାମକୁ ଅଧିକ ଶକ୍ତିଶାଳୀ କରିବା ପାଇଁ ଏବଂ ବ୍ରିଟିଶ୍ ସାମ୍ରାଜ୍ୟବାଦ ବିରୁଦ୍ଧରେ ଏକ ଗଣ ବିପ୍ଳବ ସୃଷ୍ଟିପାଇଁ ସମାଜବାଦ ଭାବନା ପ୍ରଚାରର ପରିକଳ୍ପନା କରିଥିଲେ । ଏହାପରେ ଅନେକ ନେତା ଜୟପ୍ରକାଶଙ୍କୁ ସମର୍ଥନ କରିଥିଲେ । ସେମାନଙ୍କ

ମଧ୍ୟରେ ଥିଲେ ରାମ ମନୋହର ଲୋହିଆ, ଆଚାର୍ଯ୍ୟ ନରେନ୍ଦ୍ର ଦେବ, ଡକ୍ଟର କେ.ବି.ମେନନ୍, ଏନ୍.ଜି.ଗୋରେ, ସୁରେ ଦେଶାଇ, ଅଶୋକ ମେହେଟା, ଅଚ୍ୟୁତ୍ ପଟ୍ଟ ବର୍ଦ୍ଧନ, ଅରୁଣା ଆସଫ୍ ଅଲ୍ଲୀ, ଗଙ୍ଗା ଶରଣ ସିଂ, ରାମନନ୍ଦନ ମିଶ୍ର, ମଧୁ ଲିମାୟେ, ସୁରେନ୍ଦ୍ର ନାଥ ଦ୍ୱିବେଦୀ ଓ ବାଙ୍କ ବିହାରୀ ଦାସଙ୍କ ନାମ ଉଲେଖଯୋଗ୍ୟ ।

ଓଡ଼ିଶାରେ ସମାଜବାଦୀ ଆନ୍ଦୋଳନକୁ ସକ୍ରିୟ କରିବା ପାଇଁ ସୁରେନ୍ଦ୍ର ନାଥ ମୁଖ୍ୟ ଭୂମିକା ଗ୍ରହଣ କରିଥିଲେ । ଅଧାରୁ ପାଠ ଛାଡି ଗାନ୍ଧିଜୀଙ୍କ ଆଦର୍ଶରେ ଅନୁପ୍ରାଣିତ ହୋଇଥିଲେ । ନେହେରୁଙ୍କର ସମାଜବାଦୀ ଚିନ୍ତାଧାରା ମଧ୍ୟ ତାଙ୍କୁ ପ୍ରଭାବିତ କରିଥିଲା । ଓଡ଼ିଶାରେ ନବକୃଷ୍ଣ ଚୌଧୁରୀଙ୍କ ସହଯୋଗରେ ୧୯୩୩ରେ ସମାଜବାଦୀ କର୍ମୀ ସଂଘ ଗଠନ କରିଥିଲେ । ପ୍ରଥମ ସମାଜ ବାଦୀ ବୈଠକରେ ୧୯୩୩ ଫେବୃଆରୀରେ ଯେଉଁମାନେ ଯୋଗ ଦେଇଥିଲେ, ସେମାନେ ହେଲେ (୧) ନବକୃଷ୍ଣ ଚୌଧୁରୀ, (୨) ମାଳତୀ ଚୌଧୁରୀ (୩) ଗୌରଚନ୍ଦ୍ର ଦାସ (୪) ଗୌରାଙ୍ଗ ଚରଣ ଦାଶ (୫) ସୁଧିର ଚନ୍ଦ୍ର ଘୋଷ (୬) ଡକ୍ଟର ନୃପେନ୍ ସେନ୍ (୭) ମନ ମୋହନ ଚୌଧୁରୀ ଓ ସୁରେନ୍ଦ୍ର ନାଥ ଦ୍ୱିବେଦୀ । ଏହା ଏକ ଗୁପ୍ତ ବୈଠକ ଥିଲା । କାରଣ ବ୍ରିଟିଶ୍ ସରକାର କମ୍ୟୁନିଷ୍ଟ୍ ପାର୍ଟିକୁ ବ୍ୟାନ୍ କରିଥଲେ ଏବଂ କୌଣସି ସମାଜବାଦୀ କାର୍ଯ୍ୟକୁ ପ୍ରଶୟ ଦେଉ ନଥିଲେ । ବ୍ରିଟିଶ୍ ସରକାର ପୁଞ୍ଜିପତିମାନଙ୍କୁ ସମର୍ଥନ ଦେଉଥିଲେ । ସମାଜରେ ବୃଦ୍ଧି ପାଉଥିବା ଅତ୍ୟାଚାର ଶୋଷଣ ଓ ଦୁର୍ନୀତି ବିରୁଦ୍ଧରେ ସ୍ୱର ଉତ୍ତୋଳନ ପାଇଁ ଏହି ସଂଗଠନ ସମାଜବାଦୀମାନଙ୍କୁ ଏକ୍ଜୁଟ୍ କରିଥିଲା । ଦଳିତ ନିଷ୍ପେଷିତ ଜନତାଙ୍କ ମୁହଁରେ ହସ ଫୁଟାଇବା ପାଇଁ ସୁରେନ୍ଦ୍ରନାଥ ଦ୍ୱିବେଦୀ ନିଜକୁ ଉତ୍ସର୍ଗ କରିଥିଲେ । କାରଣ ଛାତ୍ର ଅବସ୍ଥାରୁ ଉତ୍କଟ ଦାରିଦ୍ର୍ୟର ସେ ଶିକାର ହୋଇଥିଲେ । ଖଣ୍ଡିଏ ଜାମା ପିନ୍ଧି ସ୍କୁଲ୍‌କୁ ଚାଲି ଚାଲି ଯାଉଥିଲେ ଏବଂ ଘରେ ଦୁଇ ଓଳି ପେଟ ପୂରାଇ ଖଇବା ତାଙ୍କ ଭାଗ୍ୟରେ ନଥିଲା ।

ସାମ୍ୟବାଦୀ କର୍ମୀ ସଂଘ ଗଠନ ପରେ ସୁରେନ୍ଦ୍ର ନାଥ ଓ ସାଥୀମାନେ ନିଜକୁ ସାମ୍ୟବାଦୀ ବୋଲି ଘୋଷଣା କଲେ । ଧର୍ମ ଓ ଭଗବାନଙ୍କ ଉପରେ ସେମାନଙ୍କର ବିଶ୍ୱାସ ରହିଲା ନାହିଁ । ସୁରେନ୍ଦ୍ର ନାଥ ନିଜ ପଇତା କାଢ଼ି ଫିଙ୍ଗି ଦେଲେ ଏବଂ କେହି ବ୍ୟକ୍ତିଗତ ସଂପତ୍ତି ରଖିବେ ନାହିଁ ବୋଲି ଘୋଷଣା କଲେ । କର୍ମୀ ସଂଘ ଏକ ପୁସ୍ତିକା ପ୍ରକାଶ କରିବାକୁ ନିଷ୍ପତ୍ତି ହେଲା । ପତ୍ରିକାର ନାମ ସାରଥି ରଖାଗଲା ଏବଂ ଏହାର ସଂପାଦକ ରହିଲେ ନବକୃଷ୍ଣ ଚୌଧୁରୀ । ମାଳତୀ ଚୌଧୁରୀ ତାଙ୍କ ଗହଣା ବିକ୍ରିକରି ପତ୍ରିକାଟିକୁ ଆରମ୍ଭ କରାଇଥିଲେ ଏବଂ ନବକୃଷ୍ଣ ଚୌଧୁରୀଙ୍କ କୃଷି ଫାର୍ମଟିକୁ ସାମ୍ୟବାଦୀ କର୍ମୀସଂଘକୁ ଦାନ କରିଥିଲେ । ସାରଥୀର ପ୍ରଥମ ପୃଷ୍ଠାରେ ସବୁବେଳେ ପ୍ରକାଶିତ ହେଲା । ଦୁନିଆର ଶ୍ରମିକ ଏକଜୁଟ ହୁଅ । ଶ୍ରମିକମାନଙ୍କୁ ଏକଜୁଟ କରିବା ପାଇଁ ସାମ୍ୟବାଦୀ କର୍ମୀସଂଘ ମଇ ଦିବସ ପାଳନ କଲା । ଏହା ଦେଖି ଧନୀକ ଶ୍ରେଣୀର ଲୋକେ ପ୍ରମାଦ ଗଣିଲେ । ସମସ୍ତେ ଆଲୋଚନା କଲେ ମଜଦୁର୍ ଏକ ହେବେ, ମଜୁରୀ ବଢିଯିବ, ଆଉ କେତେକ ଏମାନଙ୍କୁ ଅର୍ଦ୍ଧ ପାଗଳ ବୋଲି କହିଲେ । କଟକର ମାରୁଆଡ଼ିମାନେ ଭାବିଲେ ଗଣ୍ଡଗୋଳ ହେବ । ଏମାନେ ଆମ ସଂପତ୍ତି ଛଡାଇ ନେବେ । ଏହିଭଳି ମିଶ୍ରିତ ପ୍ରତିକ୍ରିୟା ମଧ୍ୟରେ ଓଡ଼ିଶାରେ ୧୯୩୩ ମସିହାରେ ସମାଜବାଦୀ ଆନ୍ଦୋଳନ ଆରମ୍ଭ ହେଲା । ସେତେବେଳେ ଏହି ନେତା ଓ କର୍ମୀମାନେ ସାମ୍ୟବାଦ ଓ ସମାଜବାଦକୁ ଏକ ଅର୍ଥରେ ଗ୍ରହଣ କରିଥିଲେ । କିନ୍ତୁ ଓଡ଼ିଆରେ ଲେଖୁଥିଲେ ଉତ୍କଳ କଂଗ୍ରେସ ସାମ୍ୟବାଦୀ କର୍ମୀସଂଘ ପରେ ସମାଜବାଦୀ ଓ ସାମ୍ୟବାଦର ଅର୍ଥ ଅଲଗା ବୋଲି ଜାଣିବା ପରେ ସେମାନଙ୍କ ମଧ୍ୟରେ ସଚେତନତା ଆସିଥିଲା ଏବଂ ସାମ୍ୟବାଦ ନାମକୁ ଛାଡି ସେମାନେ ସମାଜବାଦୀ ଦଳ ବା ସୋସିଆଲିଷ୍ଟ ପାର୍ଟି ଗଠନ କରିଥିଲେ ।

ଏହି ସୋସିଆଲିଷ୍ଟ ପାର୍ଟିର ଲକ୍ଷ୍ୟ ଥିଲା ଭାରତର ଏକ ସମାଜବାଦୀ ସାଧାରଣତନ୍ତ୍ର ପ୍ରତିଷ୍ଠା କରିବା ଏବଂ ଏହି ଲକ୍ଷ୍ୟକୁ ହାସଲ ପାଇଁ ଦଳ ସବୁ ପ୍ରକାର ନ୍ୟାୟ ସଂଗତି ପନ୍ଥା ଅନୁସରଣ କରିବା । ଗାନ୍ଧିଜୀଙ୍କ ଅହିଂସା ନୀତି ଅନୁସାରେ ଏହା ପରିଚାଳିତ ହେବ । ଓଡ଼ିଶାରେ ସମାଜବାଦୀମାନଙ୍କ କାର୍ଯ୍ୟକଳାପ ସୀମିତ ଥିବାବେଳେ ଜାତୀୟ ସ୍ତରରେ ସମାଜବାଦୀମାନଙ୍କ ଅଭ୍ୟୁଦୟ ହେଲା । ଜୟପ୍ରକାଶ ନାରାୟଣ ପାଟନାଠାରେ କଂଗ୍ରେସ୍ ସୋସିଆଲିଷ୍ଟମାନଙ୍କର ଏକ ସମ୍ମିଳନୀ ଡାକିଲେ ଏବଂ ଏକ ପୁସ୍ତକ ଲେଖି ପ୍ରକାଶ କଲେ । ପୁସ୍ତକର ନାମ ଥିଲା 'WLY Socialism' । ଏହି ପୁସ୍ତକରେ ସେ ଗାନ୍ଧିଜୀଙ୍କ ନୀତିର ତୀବ୍ର ସମାଲୋଚନା କଲେ । ତାଙ୍କର ଏହି ପୁସ୍ତକ ସେତେବେଳେ ଯୁବ ସମାଜ ମଧ୍ୟରେ ଆଦୃତ ହୋଇଥିଲା । ଜୟପ୍ରକାଶଙ୍କର ସାଇଣ୍ଟିଫିକ୍ ସୋସିଆଲିଷ୍ଟ ନୀତିକୁ ଅନେକ ଗ୍ରହଣ କରିଥିଲେ ଏବଂ କଗ୍ରେସ ନେତାମାନଙ୍କ ମଧ୍ୟରେ ଛାନିଆଁ ପଶିଥିଲା ଯେ ବ୍ୟକ୍ତିଗତ ସଂପତ୍ତି ବାଜ୍ୟାପ୍ତି ହେବ ଓ ଶ୍ରେଣୀ ସଂଗ୍ରାମ ହେବ । ଏହି ଭ୍ରମ ଧାରଣାକୁ କଂଗ୍ରେସ କମିଟି ୧୯୩୪ ମସିହା ଜୁନ୍ ୧୭ ଓ ୧୮ ତାରିଖରେ ବମ୍ବେ ସମ୍ମିଳନୀରେ ଦୂରୀଭୂତ କଲେ ।

ଓଡ଼ିଶାରେ ସମାଜବାଦୀ ଆନ୍ଦୋଳନକୁ ବ୍ୟାପକ କରିବା ପାଇଁ ସୁରେନ୍ଦ୍ରନାଥ ଦ୍ୱିବେଦୀ କଟକଠାରେ ୧୯୩୭ ମସିହା ସେପ୍ଟେମ୍ବର ପହିଲାରେ ଏକ କୃଷକ ସମାବେଶର ଆୟୋଜନ କରିଥିଲେ । ସେତେବେଳେ ଚାଷୀମାନଙ୍କ ଉପରେ ଜମିଦାରମାନେ ଅତ୍ୟାଚାର କରୁଥିଲେ । ଚାଷୀର ପୋଖରୀର ମାଛ ଓ ବାଡ଼ିରେ ପାଚିଲା ଫଳ ଉପରେ ଜମିଦାରମାନଙ୍କର ହକ୍ ଥିଲା । ଏହାକୁ ସୁରେନ୍ଦ୍ର ନାଥ ତୀବ୍ର ବିରୋଧ କରିଥିଲେ । ପ୍ରଜାସତ୍ୱ ଆଇନ୍‌ର ସଂଶୋଧନ କରିବା ପାଇଁ ଏବଂ ସମାବେଶକୁ ମନ୍ତ୍ରୀମାନଙ୍କୁ ଆଣି ଦାବୀପତ୍ର ଗ୍ରହଣ ପାଇଁ ବ୍ୟବସ୍ଥା କରାଗଲା । ହଜାର ହଜାର ଚାଷୀ ଗାଁ ଗହଳରୁ ଚୁଡ଼ା ଚାଉଳ ଧରି କଟକ ଆସିଲେ । ଏହା ଦେଖି ସହର ବାସୀ ଚକିତ ହେଲେ ଏବଂ ଚାଷୀ ଆନ୍ଦୋଳନ ସଫଳ ହେଲା । କୃଷକ ଆନ୍ଦୋଳନ ସହିତ ସୋସାଲିଷ୍ଟ ପାର୍ଟିର ସଂଗଠନ ମଧ୍ୟ ପ୍ରସାରିତ ହେଲା । କୃଷକ ସଂଘର ଜିଲ୍ଲା ସଂଗଠନ ମାଧ୍ୟମରେ ସୋସାଲିଷ୍ଟ ପାର୍ଟି କାର୍ଯ୍ୟ କଲା ।

ଆନ୍ଦୋଳନକୁ ଅଧିକ ପ୍ରସାର କରିବା ପାଇଁ ଖୋର୍ଦ୍ଧାଠାରେ ସୋସାଲିଷ୍ଟ ପାର୍ଟିର କାର୍ଯ୍ୟକାରୀ କମିଟି ବୈଠକ ବସିଲା । ସେତେବେଳେ କମ୍ୟୁନିଷ୍ଟମାନେ ମଧ୍ୟ କଂଗ୍ରେସ୍ ସୋସିଆଲିଷ୍ଟ୍ ପାର୍ଟି ଭିତରେ ଥିଲେ ଏବଂ କମ୍ୟୁନିଷ୍ଟ ଇଣ୍ଟରନ୍ୟାସ୍‌ନାଲ୍ ସିଦ୍ଧାନ୍ତ ଅନୁସାରେ କାର୍ଯ୍ୟ କରୁଥିଲେ । ୧୯୩୫ ବେଳକୁ ଗୁରୁଚରଣ ପଟ୍ଟନାୟକ କମ୍ୟୁନିଷ୍ଟ ପାର୍ଟିର ଗୋପନୀୟ ସଦସ୍ୟ ପଦ ଗ୍ରହଣ କରି କଂଗ୍ରେସ୍ ସୋସିଆଲିଷ୍ଟ୍ ପାର୍ଟିରେ ରହି କାର୍ଯ୍ୟ କରୁଥିଲେ । ସେତେବେଳେ ଆଧୁନିକ ନାମରେ ଏକ ପତ୍ରିକା ପ୍ରକାଶ ପାଇଥିଲା ଏବଂ ଏହି ପତ୍ରିକାର ସଂପାଦକ ଥିଲେ ଭଗବତୀ ପାଣିଗ୍ରାହୀ । ଏହି ପତ୍ରିକାରେ ସୋଭିଏଟ ଋଷ୍ ଓ କମ୍ୟୁନିଜିମ୍ ଆଦର୍ଶବାଦକୁ ସମର୍ଥନ କରି ଅନେକ ଲେଖା ପ୍ରକାଶ ପାଉଥିଲା । ସବୁ ସମାଜବାଦୀମାନେ ଋଷକୁ ସମର୍ଥନ କରୁଥିଲେ । ନିଜେ ସୁରେନ୍ଦ୍ରନାଥ ଦ୍ୱିବେଦୀ ତାଙ୍କ ପୁସ୍ତକ ମୋ ଜୀବନ ସଂଗ୍ରାମରେ ସ୍ୱୀକାର କରିଛନ୍ତି । ତେଣୁ ସମାଜବାଦୀ ଓ ସାମ୍ୟବାଦୀମାନଙ୍କ ମଧ୍ୟରେ କୌଣସି ପ୍ରଭେଦ ଜଣାପଡୁ ନଥିଲା ।

ସମାଜବାଦୀ ଆନ୍ଦୋଳନକୁ ଅଧିକ ବ୍ୟାପକ କରିବା ପାଇଁ ଅନ୍ୟ ଏକ ପତ୍ରିକାର ସଂପାଦନା କାର୍ଯ୍ୟ ମଧ୍ୟ ଭଗବତୀ ଚରଣ ପାଣିଗ୍ରାହୀଙ୍କୁ ଦିଆଗଲା ଏବଂ ନିଜେ ସୁରେନ୍ଦ୍ରନାଥ ଦ୍ୱିବେଦୀ ଏହାର ପରିଚାଳକ, ପ୍ରକାଶକ ଓ ମୁଦ୍ରକ ହେଲେ । ପତ୍ରିକାର ନାମ ରଖାଗଲା କୃଷକ । ଏହି ପତ୍ରିକା ମାଧ୍ୟମରେ ସୁରେନ୍ଦ୍ରନାଥ ଚାଷୀ ଓ କୃଷକମାନଙ୍କୁ ସଂଗଠିତ ଓ ଜାଗ୍ରତ କରିବାକୁ ଉଦ୍ୟମ କରିଥିଲେ । କଂଗ୍ରେସ ଦଳରେ ରହି ବ୍ରିଟିଶ୍‌ମାନଙ୍କ ବିରୁଦ୍ଧରେ ଲଢ଼ି ଦଳିତ ନିଷ୍ପେଷିତ ଜନତାଙ୍କ ଆଗକୁ ଆଣିବାର ରାସ୍ତା ଦେଖାଇ ଥିଲେ ସୁରେନ୍ଦ୍ରନାଥ । ଏଥିପାଇଁ ବିତ୍ତଶାଳୀ ଓ କ୍ଷମତାଶାଳୀ ଲୋକମାନେ ତାଙ୍କୁ ତୀବ୍ର ବିରୋଧ କରିଥିଲେ ମଧ୍ୟ ସେ କାହାକୁ ଭ୍ରୁକ୍ଷେପ କରି ନଥିଲେ । ଜମିଦାର ଓ ଗଡ଼ଜାତ ରାଜାଙ୍କ ଅନ୍ୟାୟ ଓ ଦୁର୍ନୀତିକୁ ଏହି ପତ୍ରିକା ମାଧ୍ୟମରେ ସମାଲୋଚନା କରାଯାଇଥିଲା ।

ଓଡ଼ିଶା ଗଡ଼ଜାତ ପ୍ରଜା ଆନ୍ଦୋଳନର ନେତୃତ୍ୱ ନେଉଥିଲେ ସାରଙ୍ଗଧର ବାବୁ । ସେତେବେଳେ ଗଡ଼ଜାତ ଭିତରକୁ କୌଣସି ସଂବାଦପତ୍ର ଯିବା ବାରଣ ଥିଲା । କିନ୍ତୁ କୃଷକ ପତ୍ରିକା ଗଡ଼ଜାତ ମଧ୍ୟକୁ ପ୍ରବେଶ କଲା । ଏଥିରେ କ୍ରୋଧାନ୍ୱିତ ହୋଇ ଗଡ଼ଜାତ ରାଜାମାନେ ପ୍ରିନ୍‌ସେସ୍ ପ୍ରୋଟେକ୍‌ସନ୍ ଆକ୍ଟ ଅନୁସାରେ କୃଷକ ବିରୁଦ୍ଧରେ ମୋକଦ୍ଦମା କରିବା ପାଇଁ ଓଡ଼ିଶା ରାଜ୍ୟପାଳଙ୍କ ପାଖରେ ଦାବୀ କଲେ । କିନ୍ତୁ ଓଡ଼ିଶାରେ କଂଗ୍ରେସ ମନ୍ତ୍ରିମଣ୍ଡଳ ଥିବାରୁ ତାହା ସଂଭବ ହେଲା ନାହିଁ । କୃଷକ ପତ୍ରିକାକୁ ଲୁଚାଇ ଗଡ଼ଜାତ ଭିତରକୁ ନିଆଗଲା ଏବଂ ଏହା ଜଙ୍ଗଲରେ ଅଗ୍ନି ବ୍ୟାପିବା ଭଳି ଲୋକଙ୍କ ପାଖରେ ପହଞ୍ଚୁଥିଲା । ଏହା ଲୋକଙ୍କ ଭିତରେ ଯେଉଁଭଳି ଚାଞ୍ଚଲ୍ୟ ସୃଷ୍ଟି କରୁଥିଲା ରାଜ ଦରବାରରେ ସେପରି ବିସ୍ମୟ ଜାତ କରାଇଥିଲା । କୃଷକ ବାଣୀକୁ ଲୋକେ କେତେକ ଅଂଚଳରେ ଦୈବୀବାଣୀ ରୂପେ ଗ୍ରହଣ କରିଥିଲେ ।

କୃଷକର ପ୍ରଚାର ଓ ପ୍ରସାର ଯୋଗୁ କୃଷକମାନେ ଏକଜୁଟ ହୋଇ ଅବିଭକ୍ତ କଟକ ଜିଲ୍ଲାର ଜେନାପୁର (ବର୍ତ୍ତମାନ ଯାଜପୁର)ଠାରେ ଏକ ବିରାଟ କୃଷକମେଳା ହୋଇଥିଲା । ଏହି ସଭାରେ ଢେଙ୍କାନାଳ ଜିଲ୍ଲାର ଅନେକ ପ୍ରଜା ଯୋଗଦେଇ ସେମାନଙ୍କର ଦୁଃଖ ଦୁର୍ଦ୍ଦଶା ପ୍ରକାଶ କରିଥିଲେ । ଜେନାପୁରରେ ଏହି କୃଷକ ମେଳା ପାଇଁ ଗୌରାଙ୍ଗ ଚରଣ ଦାସ, ଅକ୍ଷୟ କୁମାର ଚକ୍ରବର୍ତ୍ତୀ, ପଣ୍ଡିତ ପ୍ରାଣକୃଷ୍ଣ ପଡ଼ିଆରୀ, ମାଳତୀ ଚୌଧୁରୀ, ନବକୃଷ୍ଣ ଚୌଧୁରୀ, ଫଣିନ୍ଦ୍ର ନାଥ ପାଲ୍ ଓ ସୁରେନ୍ଦ୍ର ନାଥ ଦ୍ୱିବେଦୀ ନିବେଦକ ଥିଲେ । ଏହି ସଭାପରେ ଗଡ଼ଜାତ ରାଜାଙ୍କ ବିରୁଦ୍ଧରେ ପ୍ରଜା ଆନ୍ଦୋଳନ ତେଜି ଉଠିଲା । ଏହା କ୍ରମେ ଢେଙ୍କାନାଳ, ଆଠଗଡ଼, ତାଳଚେର ଓ ସୁକିନ୍ଦାକୁ ପ୍ରସାର ଲାଭ କରିଥିଲା । ସମାଜବାଦୀ ନେତାମାନେ ଏହାକୁ ଦୃଢ଼ ସମର୍ଥନ ଦେଇଥିଲେ । ୧୯୩୮ ମସିହାରେ ଏହି ପ୍ରଜା ଆନ୍ଦୋଳନର ଝଲକ ସୁକିନ୍ଦାରେ ଦେଖା ଦେଇଥିଲା । ସୁକିନ୍ଦା ଅଂଚଳର ବିଶିଷ୍ଟ ଜନନାୟକ ଶ୍ରୀଯୁକ୍ତ ଧରଣୀଧର ଦତ୍ତ (ସୁକିନ୍ଦା ଗାନ୍ଧୀ) ଓ ରଘୁନାଥ ହୋତା ପ୍ରଜା

ଆନ୍ଦୋଳନକୁ ବ୍ୟାପକ କରିବା ପାଇଁ ଆଗେଇ ଆସିଲେ । ସେମାନେ ନବକୃଷ୍ଣ ଚୌଧୁରୀ ଓ ଗୌରାଙ୍ଗ ଚରଣ ଦାସଙ୍କ ଦ୍ୱାରା ଅନୁପ୍ରାଣିତ ହୋଇ ଗୋବର୍ଦ୍ଧନ ପୁର ହାଟ ପଡିଆରେ ୧୯୩୮ ମସିହାରେ ଏକ ପ୍ରଜାମେଳି ଆୟୋଜନ କରିଥିଲେ । ଜିଲ୍ଲା ପ୍ରଶାସନ ଦ୍ୱାରା ଲାଗୁ ହୋଇଥିବା ୧୪୪ ଧାରାକୁ ଭ୍ରୂକ୍ଷେପ ନକରି ବହୁ ପ୍ରଜା ଓ କୃଷକ ଏହି ସଭାରେ ଯୋଗଦେଇ ପ୍ରଜା ଆନ୍ଦୋଳନକୁ ସଫଳ କରିଥିଲେ । ସେହି ବର୍ଷ ଢ଼େଙ୍କାନାଳରେ ପ୍ରଜାମେଳି ଉଗ୍ର ରୂପ ନେଇଥିଲା । ୧୯୩୮ ମସିହା ସେପ୍ଟେମ୍ବର ମାସରେ ହଜାର ହଜାର ପ୍ରଜା ମେଳି ବାନ୍ଧି ଢ଼େଙ୍କାନାଳ ରାଜ ଦରବାରକୁ ଘେରାଉ କରିଥିଲେ । ଢ଼େଙ୍କାନାଳ ଭିତରକୁ ପ୍ରବେଶ ନିଷେଧ ଥିଲା । ତେଣୁ ସାରଙ୍ଗଧର ଦାସ, ମାଳତୀ ଦେବୀ ଓ ନବବାବୁ ସରକାରଙ୍କ ରେଡ୍ ଲାଇନ୍ ଭିତରେ ରହି ପ୍ରଜାଙ୍କୁ ଭାଷଣ ଦେଇଥିଲେ । କିନ୍ତୁ ଢ଼େଙ୍କାନାଳ ପ୍ରଜାମଣ୍ଡଳର ସଭାପତି ମହେଶ୍ୱର ସୁବାହୁ ସିଂ, ବୈଷ୍ଣବ ପଟ୍ଟନାୟକ ଓ ଅନ୍ୟ କେତେକ କର୍ମକର୍ତ୍ତା ଆଇନ୍ ଅମାନ୍ୟ କରିବାରୁ ଗିରଫ ହୋଇଥିଲେ ।

ପ୍ରଜା ଆନ୍ଦୋଳନର ମୁଖ୍ୟ ସାରଙ୍ଗଧର ଦାସ, ସୁରେନ୍ଦ୍ର ନାଥ ଦ୍ୱିବେଦୀଙ୍କ ସହ ମିଶି ପ୍ରଜା ଆନ୍ଦୋଳନକୁ ଅଧିକ ସଂଗଠିତ କରିଥିଲେ ।ସମାଜବାଦୀ ଓ କମ୍ୟୁନିଷ୍ଟମାନେ ତାଙ୍କୁ ସମର୍ଥନ ଦେଇଥିଲେ ମଧ୍ୟ କେତେକ କଂଗ୍ରେସ ନେତା ଅସହଯୋଗ କରିଥିଲେ । ସେମାନେ ଏହାକୁ ହିଂସାତ୍ମକ ଆନ୍ଦୋଳନ ରୂପେ ଆଖ୍ୟାୟିତ କରିଥିଲେ । ଫଳରେ ଯେଉଁମାନେ ଆନ୍ଦୋଳନକୁ ଭୟ କରୁଥିଲେ । ସେମାନଙ୍କୁ ଏକ ଆଳ ମିଳିଗଲା । ଯାହାଦ୍ୱାରା ସେମାନେ ଆନ୍ଦୋଳନରୁ ଦୂରେଇ ରହିଲେ । ମହତାବ ବାବୁ ଢ଼େଙ୍କାନାଳ ପ୍ରଜା ଆନ୍ଦୋଳନର ମୀମାଂସା କରିଦେଲେ । ଏହା ସୁରେନ୍ଦ୍ର ନାଥ ଦ୍ୱିବେଦୀ, ନବକୃଷ୍ଣ ଚୌଧୁରୀ ଓ ମାଳତୀ ଦେବୀଙ୍କୁ ଅତି ବାଧିଥିଲା ।

ସମାଜବାଦୀ ଆନ୍ଦୋଳନ ମଧ୍ୟରେ ଦେଶ ସ୍ୱାଧୀନ ହୋଇଥିଲା । ସ୍ୱାଧୀନତା ପରେ ସୁରେନ୍ଦ୍ର ନାଥ ଦ୍ୱିବେଦୀ ପ୍ରଜା ସୋସାଲିଷ୍ଟ ପାର୍ଟି ଗଠନ କରି ଓଡ଼ିଶାରେ ନେତୃତ୍ୱ ନେଇଥିଲେ । ତାଙ୍କ ସହିତ ଥିଲେ ବାଙ୍କ ବିହାରୀ ଦାସ, ପରମାନନ୍ଦ ମହାନ୍ତି, ରବି ରାୟ, ନିଶାମଣି ଖୁଣ୍ଟିଆ ଓ ହରିହର ବାହିନୀପତି । ସେ ଚାରିଥର ପାର୍ଲାମେଣ୍ଟକୁ ନିର୍ବାଚିତ ହୋଇଥିଲେ ଏବଂ ସମାଜବାଦୀ ଅନ୍ଦୋଳନକୁ ମୃତ୍ୟୁ ପର୍ଯ୍ୟନ୍ତ ସମର୍ଥନ କରିଥିଲେ । ପ୍ରଜା ସୋସାଲିଷ୍ଟ ପାର୍ଟି ଛାଡ଼ି ଶେଷରେ କଂଗ୍ରେସକୁ ଏବଂ କଂଗ୍ରେସ ଛାଡ଼ି ଶେଷରେ ଜୟପ୍ରକାଶଙ୍କ ସଂପୂର୍ଣ୍ଣ କ୍ରାନ୍ତି ଜନତାପାର୍ଟିରେ ଯୋଗ ଦେଇଥିଲେ । କିନ୍ତୁ ଏହି ଦଳର କାର୍ଯ୍ୟକ୍ରମ ଓ ନେତାଙ୍କ ପ୍ରତି ତାଙ୍କର ଆଗ୍ରହ ନଥିଲା । ତେଣୁ ଦଳ ସହିତ ସଂପର୍କ ଛିନ୍ନ କରି ସେ ଜଣେ ଶୁଭେଚ୍ଛୁ ଭାବରେ ରହିଥିଲେ । ଜନତା ପାର୍ଟି ଗଠନ ସହିତ ସମାଜବାଦୀ ଦଳର ଅସ୍ତିତ୍ୱ ଲୋପ ପାଇଥିଲା । ୧୯୩୪ ମସିହାରୁ ପ୍ରତିଷ୍ଠିତ ହୋଇଥିବା ଏହି ଦଳ ଭାଙ୍ଗିଗଲା ସତ କିନ୍ତୁ ସୁରେନ୍ଦ୍ରନାଥ ଦ୍ୱିବେଦୀ ଆଶା, ସ୍ୱପ୍ନ ଓ ଆଗ୍ରହ ପୂର୍ବପରି ସମାଜବାଦ ଉପରେ ଥିଲା । ସେ ଆଶା କରୁଥିଲେ ଭଗ୍ନ ସ୍ତୂପର ଦିନେନା ଦିନେ ସମାଜବାଦୀମାନେ ଆର୍ବିଭାବ ହେବେ ଏବଂ ଏକ ବିରାଟ ଅଟ୍ଟାଳିକା ଗଠନ ହେବ । ସେ କହୁଥଲେ ଦିନେନା ଦିନେ ସମାଜବାଦ ବା ସୋସିଆଲିଜିମ୍ ଆସିବ ଏଥିରେ ସନ୍ଦେହ ନାହିଁ । ଆଧୁନିକ ରାଷ୍ଟ୍ରର ସମସ୍ୟା ସମାଜବାଦ ବା ସୋସିଆଲିଜିମ୍ ଦ୍ୱାରା ସମାଧାନ ହୋଇପାରିବ, କେହି ଏହାର ଗତିରୋଧ କରି ପାରିବେ ନାହିଁ । ପୁଞ୍ଜିବାଦର ଧ୍ୱଂସ ଦ୍ୱାରା ହିଁ ସମାଜବାଦ ବା ସୋସିଆଲିଜିମ୍ ସ୍ଥାପନ ହେବ, ପୁଞ୍ଜିବାଦ ସହିତ ସମ୍ପୌତା କରି ନୁହେଁ ।

ମୁଖ୍ୟ ଇତିହାସ ବିଭାଗ
ଝାଡ଼େଶ୍ୱର କଲେଜ,
ଟୋଲକାନୀ, ଜି: ଯାଜପୁର

❖ ❖ ❖

# ଉପେନ୍ଦ୍ର ଭଞ୍ଜ କବିସମ୍ରାଟ କାହିଁକି

**ଅଧ୍ୟାପକ ପାର୍ଥସାରଥି ଅଜୟ ବାରିକ୍‌**

କବିସମ୍ରାଟ ଉପେନ୍ଦ୍ର ଭଞ୍ଜ ସମ୍ରାଟ ନଥିଲେ । କିନ୍ତୁ କବିମାନଙ୍କ ମଧ୍ୟରେ ରାଷ୍ଟ୍ରର ସମ୍ରାଟଙ୍କ ପରି ଜଣେ ସମ୍ମାନିତ ବ୍ୟକ୍ତି ଥିଲେ । ତେଣୁ ସମ୍ରାଟ ଶବ୍ଦଟିକୁ ଆକ୍ଷରିକ ଅର୍ଥରେ ଗ୍ରହଣ କରାଯିବା ଉଚିତ ନୁହେଁ । ଏ ସମ୍ପର୍କରେ ଭାରତର ପଣ୍ଡିତମାନେ ଗୋଟିଏ ସୁଚିନ୍ତିତ ମତ ଦେଇଛନ୍ତି । ସେମାନେ କହନ୍ତି– ଇନ୍ଦ୍ର, ଚନ୍ଦ୍ର, ବୃଷଭ ରତ୍ନ, କେଶରୀ, ସମ୍ରାଟ ଏସବୁ ଶବ୍ଦ ଆକ୍ଷରିକ ଅର୍ଥ ଛଡା ଆଉ ଗୋଟିଏ ନୂତନ ଅର୍ଥ ମଧ୍ୟ ପ୍ରକାଶ କରନ୍ତି । ତାହା ହେଉଛି ଶ୍ରେଷ୍ଠ, ଉତ୍ତମ, ସମସ୍ତଙ୍କଠାରୁ ଅଧିକ ଇତ୍ୟାଦି । ଗୋପବନ୍ଧୁ ଦାସଙ୍କୁ ଉତ୍କଳମଣି କୁହାଯାଏ । ଏଠାରେ ମଣିର ଅର୍ଥ ରତ୍ନ ବା ସର୍ବଶ୍ରେଷ୍ଠ । କାଳିଚରଣ ପଟ୍ଟନାୟକ ଥିଲେ କବିଚନ୍ଦ୍ର । ଅର୍ଥାତ କବିମାନଙ୍କ ଭିତରେ ଅସାଧାରଣ ପ୍ରତିଭାଶାଳୀ । ଡକ୍ଟର ହରେକୃଷ୍ଣ ମହାତାବ ଥିଲେ ଉତ୍କଳକେଶରୀ ଅର୍ଥାତ୍‌ ଓଡ଼ିଆଙ୍କ ଭିତରେ ଜଣେ ଅତି ଶ୍ରେଷ୍ଠପୁରୁଷ । ଡକ୍ଟର ରାଧାନାଥ ରଥ ଥିଲେ ଉତ୍କଳରତ୍ନ । ଅର୍ଥାତ୍‌ ଓଡ଼ିଶାର ଜଣେ ଶ୍ରେଷ୍ଠ ବ୍ୟକ୍ତି । କେତେକ କବିଙ୍କୁ କବି ଚକ୍ରବର୍ତ୍ତୀ ବା କବି ମହେନ୍ଦ୍ର କୁହାଯାଏ । ଏଠାରେ ମଧ୍ୟ ସେହି ଶ୍ରେଷ୍ଠତା ହିଁ ଫୁଟିଉଠେ । ତେଣୁ ଶ୍ରେଷ୍ଠ, ଏପରି ଅତି ଶ୍ରେଷ୍ଠ ଅର୍ଥରେ ଉପେନ୍ଦ୍ର ଭଞ୍ଜଙ୍କ ନାମରେ ସମ୍ରାଟ ଶବ୍ଦ ଯୋଗ କରାଯାଇଛି ।

ତେବେ ଆଜିର ପାଠକ ସମାଜରେ ଗୋଟେ ପ୍ରଶ୍ନ ଉଠିଥାଏ– ଉପେନ୍ଦ୍ର ଭଞ୍ଜଙ୍କୁ ସମ୍ରାଟ କୁହାଗଲା କାହିଁକି ? ଉପେନ୍ଦ୍ର ଭଞ୍ଜଙ୍କ ପର୍ଯ୍ୟନ୍ତ ଉତ୍କଳ ଭାରତୀ ଅନେକ କବିପୁତ୍ରଙ୍କୁ ଜନ୍ମ ଦେଇଥିଲେ । ଶାରଳା, ବଳରାମ, ଜଗନ୍ନାଥ, ଅଚ୍ୟୁତାନନ୍ଦ, ଅର୍ଜୁନ, କାର୍ତ୍ତିକ, ଶିଶୁ ଶଙ୍କର, ପ୍ରତାପ, ଦେବଦୁର୍ଲଭ, ବିଷ୍ଣୁ, ଦୀନକୃଷ୍ଣ, ଲୋକନାଥ, ଧନଞ୍ଜୟ ଏବଂ ଅନ୍ୟ ଅନେକ ବିଶିଷ୍ଟ ସାଧକ । ଭଞ୍ଜଙ୍କ ପରେ ସଦାନନ୍ଦ, ଅଭିମନ୍ୟୁ, ଯଦୁମଣି, ବଳଦେବ ଏବଂ ଆହୁରି ଅନେକ ବି ଅପୂର୍ବ କୃତିତ୍ୱ ଦେଖାଇଥିଲେ । ଏ ସମସ୍ତେ ଥାଉ ଥାଉ ଦେଶବାସୀ ଉପେନ୍ଦ୍ର ଭଞ୍ଜଙ୍କୁ କବିସମ୍ରାଟ କହିଲେ କାହିଁକି ? ହୁଏତ ଭଞ୍ଜଙ୍କର ଜୀବନକାଳ ମଧ୍ୟରେ ତାଙ୍କୁ କବିସମ୍ରାଟ କୁହାଯାଇ ନଥିଲା ବା କୁହାଯାଇ ନଥିବ । ହୋଇପାରେ ତାଙ୍କର ଅନେକ ବର୍ଷ ପରେ ଦେଶବାସୀ ତାଙ୍କୁ ସମ୍ରାଟ ଶବ୍ଦରେ ସମ୍ମାନିତ କରିଛନ୍ତି ଏବଂ ତାଙ୍କ ଭଳି ରୀତିଯୁଗୀୟ କବି ପ୍ରତିଭା ଦେଖାଇଥିବା ବିଦଗ୍ଧ କବି ଅଭିମନ୍ୟୁଙ୍କୁ ଦ୍ୱିତୀୟ ଭଞ୍ଜ ବୋଲି କୁହାଯାଇଥିଲା । ଏହି ସୂତ୍ରରେ ତାଙ୍କୁ ଦ୍ୱିତୀୟ କବିସମ୍ରାଟ କହିବାରେ ମଧ୍ୟ ଆପତ୍ତି ନଥାଇପାରେ । ସେ ଦ୍ୱିତୀୟ ଭଞ୍ଜ ଭାବରେ ସମ୍ମାନିତ ହୋଇଛନ୍ତି ସିନା ହେଲେ ଦ୍ୱିତୀୟ କବିସମ୍ରାଟ ବୋଲି ଅଭିହିତ ହୁଅନ୍ତି ନାହିଁ । ତେଣୁ ଏତେବଡ ସମ୍ମାନଟାଏ ଉପେନ୍ଦ୍ରଭଞ୍ଜଙ୍କୁ ଦିଆଗଲା କାହିଁକି ? ଏଥିପାଇଁ ଆମକୁ ଭାରତୀୟ ସାଂସ୍କୃତିକ ଇତିହାସ ଉପରେ ଦୃଷ୍ଟି ଦେବାକୁ ହେବ ।

ଭାରତ ଇତିହାସରେ ପ୍ରାୟ ୧୨୦୦ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ଥିଲା ପ୍ରାଚୀନ ଯୁଗ । ଯଦିଓ ତାହା ପୂର୍ବରୁ ଆଧୁନିକ ଭାରତର କେତୋଟି ବିଶିଷ୍ଟ ଭାଷାରେ କାବ୍ୟଶିଳ୍ପ ଫୁଟି ଉଠିଥିଲା, ତଥାପି ସଂସ୍କୃତିର ପ୍ରାଧାନ୍ୟ ଥିଲା ଅସାଧାରଣ । ସଂସ୍କୃତ ପଣ୍ଡିତମାନଙ୍କୁ ଆଳଙ୍କାରିକ ଭିତ୍ତି ଉପରେ ଭେଟିବା ପାଇଁ ପ୍ରାଦେଶିକ ସାହିତ୍ୟର କବିମାନେ ସମର୍ଥ ହେଉନଥିଲେ । ମହାକବି କାଳିଦାସ ଆଜି ବିଶ୍ୱବିଖ୍ୟାତ ହୋଇଛନ୍ତି, କିନ୍ତୁ ତାଙ୍କ କାବ୍ୟମାନଙ୍କରେ ସରଳତା ଏବଂ ସୁକୁମାରତା ହେତୁ ପଣ୍ଡିତମାନେ ତାଙ୍କୁ ଲଘୁକାବ୍ୟତ୍ରୟୀର ଲେଖକ ବୋଲି କହୁଥିଲେ । ଏପରିକି ଅବଜ୍ଞାସୂଚକ ବାକ୍ୟ ମଧ୍ୟ ପ୍ରୟୋଗ କରୁଥିଲେ । ତାଙ୍କ ପରେ ଆସିଲେ ଭାରବୀ, ମାଘ ଏବଂ ଶ୍ରୀହର୍ଷ । ଏହି ତିନି ମହାକବିଙ୍କର ତିନୋଟି ମହାକାବ୍ୟ ପାଣ୍ଡିତ୍ୟର ଉତ୍ତାଳ ତରଙ୍ଗମାଳାରେ ପୂର୍ଣ୍ଣଥିବାରୁ ପଣ୍ଡିତମାନେ

ଏହି ତିନୋଟିକୁ ଗୁରୁତ୍ରୟୀ ବୋଲି କହୁଥିଲେ । ଗତ ଆଠଶହ ବର୍ଷ ମଧ୍ୟରେ ହିମାଳୟରୁ କୁମାରିକା ପର୍ଯ୍ୟନ୍ତ ଅମୃତସରଠାରୁ ଅରୁଣାଚଳ ପର୍ଯ୍ୟନ୍ତ ଏହି ବିଶାଳ ଭୂଖଣ୍ଡରେ ଅସଂଖ୍ୟ କାବ୍ୟ ରଚିତ ହୋଇଯାଇଛି । କିନ୍ତୁ ଗୁରୁତ୍ରୟୀର ଗୌରବ ଅପହରଣ କରିବାକୁ ଅଥବା କ୍ଷୁଣ୍ଣ କରିବାକୁ କୌଣସି କବି ସମର୍ଥ ହୋଇନାହାନ୍ତି । ଏ ଦୃଷ୍ଟିରୁ ପ୍ରାଦେଶିକ ଭାଷାରେ କବିମାନଙ୍କୁ ପ୍ରବୀଣ ସଂସ୍କୃତ କବି ପଣ୍ଡିତମାନେ ସମ୍ମାନ ଦେଖାଇବାକୁ କେବେହେଲେ ପ୍ରସ୍ତୁତ ନଥିଲେ । କିନ୍ତୁ ଏଭଳି ଏକ ରଣାଙ୍ଗନରେ ଆବିର୍ଭୁତ ହେଲେ ଉପେନ୍ଦ୍ର ଭଞ୍ଜ । ଭାରତ, ଦଣ୍ଡୀ, ବାମନ, ଭାମହ, ମମ୍ମଟ, ଆନନ୍ଦ ବର୍ଦ୍ଧନ, କୁନ୍ତକ, କ୍ଷେମେନ୍ଦ୍ର, ବିଶ୍ୱନାଥ, କେଶବ, ଭୋଜରାଜ, ଜଗନ୍ନାଥ ପ୍ରଭୃତି ଆଳଙ୍କାରିକମାନଙ୍କର ଶାସ୍ତ୍ର ଅଧ୍ୟୟନ କରି ଉପେନ୍ଦ୍ର ଭଞ୍ଜ ହେଲେ ଅଳଙ୍କାର ଶାସ୍ତ୍ରରେ ପ୍ରବୀଣ । ତା' ସହିତ ଚାରି ବେଦ, ଚାରି ଉପବେଦ, ଛ'ଅଙ୍ଗ, ଛ'ଦର୍ଶନ, ଅଠର ପୁରାଣ, ଅଠର ଉପପୁରାଣ, ନାଟ୍ୟଶାସ୍ତ୍ର, ଧର୍ମଶାସ୍ତ୍ର, ତନ୍ତ୍ରଶାସ୍ତ୍ର, ମନ୍ତ୍ରଶାସ୍ତ୍ର, ଆୟୁର୍ବେଦ, ଜ୍ୟୋତିଷ ଛନ୍ଦ ଶାସ୍ତ୍ର ଇତ୍ୟାଦି ଅଧ୍ୟୟନ କରି ଜଣେ ପୁରୁଷ ସରସ୍ୱତୀ ହୋଇଥିଲେ । ଏଭଳି ବ୍ୟକ୍ତିତ୍ୱର ଭିତ୍ତିଭୂମି ଉପରେ ସେ ଲେଖିଲେ, ବୈଦେହୀଶ ବିଳାସ, କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ, ଲାବଣ୍ୟବତୀ, ସୁଭଦ୍ରା ପରିଣୟ, ପ୍ରେମ ସୁଧାନିଧି, ରସିକହାରାବଳୀ, ଷୋଳପୋଇ, ଅବନା ରସତରଙ୍ଗ, କଳା କଉତୁକ ଏବଂ ଅନ୍ୟ ପ୍ରାୟ ତିରିଶ ଖଣ୍ଡ କାବ୍ୟ । ଜୀବନର ସମସ୍ତ ବିଭାଗ– ପ୍ରାକୃତିକ ଜଗତର ଯାବତୀୟ ଦୃଶ୍ୟ, ପ୍ରାଣୀ ଜଗତର ବିଭିନ୍ନ ବିଭାଗ ଏବଂ ସର୍ବୋପରି ମର୍ତ୍ତ୍ୟମଣ୍ଡଳର ଜାତି, ରୀତି, ବେଶଭୂଷା, ବନ, ପର୍ବତ, ସରିତ–ସରୋବର ଏବଂ ଅନ୍ୟ ଯାବତୀୟ ଅଙ୍କନ କରି ସେ ସମସ୍ତଙ୍କୁ ଅତିକ୍ରମ କରିଗଲେ । ବେପାରୀ ପାଇଁ ଯେପରି ମାଲ ମସଲା ଦରକାର, କବି ପାଇଁ ଶବ୍ଦସମ୍ଭାର ସେହିପରି ବିଶେଷେ ଆବଶ୍ୟକ । ଉପେନ୍ଦ୍ର ଭଞ୍ଜ ଗଭୀର ଆତ୍ମବିଶ୍ୱାସରେ ଘୋଷଣା କରିଛନ୍ତି–

'ତରଣୀ କୂଳର ସାର
ଆଶ୍ରିବାରୁ ନିରନ୍ତର
କହେ ଉପଇନ୍ଦ୍ର ଭଞ୍ଜ ମୁଁ ଲଭିଛି
ଶବଦ ସମୁଦ୍ର ପାର ।'

ଓଡ଼ିଶାରେ ଜନ୍ମ ହୋଇ ସରସ୍ୱତୀଙ୍କ କୃପାପାତ୍ର ଏ ମହାକବି ଆମ୍ଭମାନଙ୍କୁ ଧନ୍ୟ କରିଯାଇଛନ୍ତି ।

ସମ୍ପାଦକ, 'ଚିର ସଂଧାନ'
ଏମ୍‌ଆଇଜି–୭୮, ଅନନ୍ତବିହାର, ପୋଖରୀପୁଟ
ଭୁବନେଶ୍ୱର–୭୫୧୦୨୦

# ପ୍ରସିଦ୍ଧ ତୀର୍ଥକ୍ଷେତ୍ର ପୁରୀ ସହରରେ ବର୍ଷାଜଳ ନିଷ୍କାସନ ଓ ପରିମଳ ବ୍ୟବସ୍ଥା

ଜବାହରଲାଲ ନେହେରୁ ନ୍ୟାସନାଲ ଅର୍ବାନ ରେନେଓ୍ୱାଲ ମିସନ ତରଫରୁ ଭାରତର ୬୩ଟି ମନୋନୀତ ସହର ମଧ୍ୟରୁ ପୁରୀ ଗୋଟିଏ । ବର୍ଷାଜଳ ନିଷ୍କାସନ ନିମନ୍ତେ ଡ୍ରେନେଜ ବିଭାଗ ତରଫରୁ ସର୍ବମୋଟ ୭୧କୋଟି ୮୨ଲକ୍ଷର ପ୍ରକଳ୍ପ ଅନୁମୋଦନ ଲାଭ କରିଛି । ମୋଟ ୭୮,୯୨୬ ମିଟର ଡ୍ରେନ୍ ନିର୍ମାଣ କରାଯାଇ ବର୍ଷାଜଳ ନିଷ୍କାସନ ପାଇଁ ଲକ୍ଷ୍ୟଧାର୍ଯ୍ୟ କରାଯାଇଛି । ଏ ସମ୍ପର୍କରେ ତ୍ୱରିତ କାର୍ଯ୍ୟ ନିମନ୍ତେ ପର୍ଯ୍ୟଟନ ମନ୍ତ୍ରୀ ଶ୍ରୀ ମହେଶ୍ୱର ମହାନ୍ତିଙ୍କ ଅଧ୍ୟକ୍ଷତାରେ ଏକ ଉଚ୍ଚସ୍ତରୀୟ ବୈଠକ ଅନୁଷ୍ଠିତ ହୋଇ ବିକାଶମୂଳକ କାର୍ଯ୍ୟର ସମୀକ୍ଷା କରାଯାଇଥିଲା । ବର୍ତ୍ତମାନ ପର୍ଯ୍ୟନ୍ତ ୨୪,୯୧୩ ମିଟର ଡ୍ରେନ୍ ନିର୍ମାଣ କରାଯାଇ ମୋଟ ୨୧କୋଟି ୨୬ ଲକ୍ଷ ବ୍ୟୟ କରାଯାଇଛି ବୋଲି ଜଣାପଡିଛି । ଆସନ୍ତା ଜୁନ୍ ୧୫ ମଧ୍ୟରେ ରଥଯାତ୍ରାକୁ ଆଖି ଆଗରେ ରଖି କାର୍ଯ୍ୟ ସମାପ୍ତ କରିବାକୁ ଜଳସମ୍ପଦ ବିଭାଗ ଶାସନ ସଚିବ ଶ୍ରୀ ସୁରେଶ ଚନ୍ଦ୍ର ମହାପାତ୍ର ନିର୍ଦ୍ଦେଶ ଦେଇଛନ୍ତି । ସେହିପରି ୧୩୪ କିଲୋମିଟର ସ୍ୱରେଜ ଲାଇନରୁ ୧୨୦ କିଲୋମିଟର ସ୍ୱରେଜ ବ୍ୟବସ୍ଥା ସରିଛି । ପୌରସଂସ୍ଥା କାର୍ଯ୍ୟନିର୍ବାହୀ ଅଧିକାରୀ ରାଜେନ୍ଦ୍ର ଦାସ, ଅତିରିକ୍ତ ଜିଲ୍ଲାପାଳ ସୁକାନ୍ତ ପ୍ରଧାନଙ୍କ ସମେତ ବିଭିନ୍ନ ବିଭାଗର ମୁଖ୍ୟ ଓ କାର୍ଯ୍ୟନିର୍ବାହୀ ଯନ୍ତ୍ରୀମାନେ ଏହି ବୈଠକରେ ଉପସ୍ଥିତ ଥିଲେ ।

# ଅମୃତ ଚେତନା ଓ ଆନନ୍ଦାନୁଭୂତିର କବି ମଧୁସୂଦନ ରାଓ

ବଶିଷ୍ଠ କୁମାର ବେହେରା

ଓଡ଼ିଆ ସାହିତ୍ୟରେ ରାଧାନାଥ ଓ ଫକୀରମୋହନଙ୍କ ଦାୟାଦ ଦେଖାଇଛନ୍ତି ମଧୁସୂଦନ ରାଓ । ଏପରି ଦାୟାଦ ଦେଖାଦେବା ଏଯାବତ୍ ଓଡ଼ିଆ ସାହିତ୍ୟରେ ବିରଳ । ତାଙ୍କର ଦିବ୍ୟଦର୍ଶନ ଓ ମଧୁମାନସର ଅଧିକାରୀ ହେବା କାହାରି ଭାଗ୍ୟରେ ଘଟିପାରି ନାହିଁ । ଯେଉଁ ଦିବ୍ୟଦୃଷ୍ଟି ବଳରେ ମଣିଷ କ୍ଷଣିକ ଓ ଚିରନ୍ତନର ପ୍ରଭେଦ ବୁଝିପାରେ, ସେହି ଦୃଷ୍ଟି କେବଳ ଥିଲା ମଧୁସୂଦନଙ୍କର । ସୃଷ୍ଟିର ସ୍ତରେ ସ୍ତରେ ସେ ଅମୃତର ସନ୍ଧାନ କରିଥିଲେ। ମଣିଷକୁ ଅମୃତର ସନ୍ତାନ, ଆଲୋକର ପୁତ୍ର ବୋଲି ସେ ସମ୍ବୋଧନ କରିଥିବା ଜୀବନର ସନାତନ ଓ ଶାଶ୍ୱତ ଦିଗନ୍ତଟିକୁ ଖୋଲି ଦେଇ ସେ ନିରାଶ ପ୍ରାଣରେ ଭରି ଦେଇଥିଲେ ଆପଣାର ଐଶ୍ୱର୍ଯ୍ୟ। ସ୍ଥାବର ଜଙ୍ଗମ ସକଳ ଘଟରେ ସକଳ ବସ୍ତୁ ଓ ଭୂମିର ଦର୍ଶନ ଓ ମୃତ୍ୟୁ ପରେ ଅମୃତର ଉପଲବ୍ଧି, ଅବସାଦରେ ପ୍ରସାଦର ଆସ୍ୱାଦ, ନିର୍ଜୀବନରେ ଜୀବନର ଉଜ୍ଜୀବନ, ତୁଚ୍ଛରେ ଉଚ୍ଚର ଆରୋପଣ, ନଗଣ୍ୟର ମହାନର ଆବେଦନ, ସମପକ୍ଷରେ ଅସକ୍ଷମର ଉଦ୍‌ବୋଧନ କେବଳ ମଧୁସୂଦନଙ୍କ ଜୀବନରେ ହିଁ ସମ୍ଭବ ହୋଇଥିଲା।

ରାଧାନାଥ, ଫକୀରମୋହନ ଓ ମଧୁସୂଦନ ତିନିହେଁ ଗୋଟିଏ ଯୁଗର ଓଡ଼ିଆ ସାହିତ୍ୟରେ ତ୍ରିବେଣୀ, ଗୋଟିଏ ତ୍ରିଭୁଜରେ ତିନୋଟି ବାହୁ । ଓଡ଼ିଆ ସାହିତ୍ୟର ସୌଭାଗ୍ୟ ଯେ ଏହି ତିନିଜଣ ଏକ ଲକ୍ଷ୍ୟ ନେଇ ସାଧନା ଆରମ୍ଭ କରିଥିଲେ । ତିନୋଟି ଭିନ୍ନ ଭିନ୍ନ ବିଭାବ– ବିଭବରେ ଓଡ଼ିଆ ସାହିତ୍ୟକୁ ସମୃଦ୍ଧ କରିପାରିଥିଲେ । ସମାଜ ଭିତରେ ବାସ୍ତବ ସତ୍ୟ–ସନ୍ଧାନୀ ଫକୀରମୋହନ ହେଲେ ସତ୍ୟର ସଂସ୍ଥାପକ। ପ୍ରକୃତି ଓ ଜୀବନର ସୌନ୍ଦର୍ଯ୍ୟ ସନ୍ଧାନୀ ରାଧାନାଥ ହେଲେ ସୁନ୍ଦର ଓ ଶାଶ୍ୱତ କାରିଗର। ମଧୁର ଅନ୍ୱେଷୀ ମଧୁସୂଦନ ହେଲେ ଶିବ ଉପାସକ, ମଧୁସୂଦନଙ୍କ ଜୀବନ ଥିଲା ଏକ ବ୍ରହ୍ମଦର୍ଶୀ ଋଷି ସାଧରଣ ଜୀବନ । ତାଙ୍କ ଜୀବନ ଓଡ଼ିଆ ସାହିତ୍ୟ ସୃଷ୍ଟି ପାଇଁ ସତେ ଯେପରି ଥିଲା ଉତ୍ସର୍ଗୀକୃତ। ଯଥାର୍ଥରେ ବ୍ୟାସକବି ଫକୀରମୋହନ ମଧୁସୂଦନଙ୍କ ପ୍ରତି ଶ୍ରଦ୍ଧାଞ୍ଜଳି ଅର୍ପଣ କରି ଗାଇଛନ୍ତି –

ଏକାନ୍ତ ଈଶ୍ୱର ନିଷ୍ଠା ଧର୍ମ ଆଚରଣେ  
ସେ ମଧୁ ସମାନେ ଆଉ ଦେଖିନାହିଁ ଜଣେ  
ଶରୀର ଗଠିତ ସତ୍ୟ ମାନବ ଆଗରେ  
ସମସ୍ତ ଦେବତା ଧର୍ମ ଥିଲା ତାହାଠାରେ।

x x x

ମଧୁସୂଦନ ପୂର୍ଣ୍ଣହେବା କେବେ ସମ୍ଭାବନା  
କେତେ ଯୁଗ ଯୁଗାନ୍ତରେ ଈଶ୍ୱରଙ୍କୁ ଜଣା।

କୋମଳ କୈଶୋରରୁ ମଧୁସୂଦନଙ୍କ ହୃଦୟ ଭଗବତ୍ ସତ୍ତାର ଉପଲବ୍ଧି ଉଦ୍‌ବୁଦ୍ଧ ହୋଇ ଉଠିଥିଲା । ପୁରୀ ଜିଲ୍ଲା ସ୍କୁଲରେ ଅଧ୍ୟୟନ ପରେ ତାଙ୍କର ଭଗବତ୍–ଭକ୍ତି– ପ୍ରଣୟତା ଓ ଧର୍ମାନୁପଣତାର ପରିଚୟ ମିଳିଥାଏ । ପ୍ରତ୍ୟହ ଶିବ ଦର୍ଶନ ନକଲେ ସେ ଜଳ ସୁଦ୍ଧା ସ୍ପର୍ଶ କରୁନଥିଲେ । ପୁରୀର ବାନାମ୍ବର ମହାଦେବଙ୍କୁ ପୁଷ୍ପ ନୈବେଦ୍ୟ ଅର୍ପଣ କରି ଫେରି ଆସୁଥିବା ବେଳେ ପୁରୀବାସୀ ମଧୁସୂଦନଙ୍କ ଭକ୍ତି ଗଦ୍‌ଗଦ କଣ୍ଠରୁ ଶୁଣିବାକୁ ପାଉଥିଲେ ଗୋଟିଏ 'କେଉଁ କର୍ମହୀନ କରଣ ଜଣାଣ ବାଲଚକେଶ୍ୱରଙ୍କୁ ଚାହିଁ...। ଛାତ୍ର ଜୀବନରେ ଗୁରୁଦେବ ରାଧାନାଥଙ୍କ ସାନ୍ନିଧ୍ୟ ମଧ ତାଙ୍କ ଆଧ୍ୟାତ୍ମିକ ଓ ଦାର୍ଶନିକ ଜୀବନରେ ପ୍ରଭାବ ପକାଇ ନାହିଁ । ମହୋଦଧି କୂଳରେ ରାଧାନାଥ ଦିଗ୍‌ବଳୟଲୀନ ମହୋଦଧି ଓ ଅନନ୍ତ ବିହାୟସର ଜୁଞ୍ଜେୟ ବିସ୍ତୁତି ଓ ନିରୁକ୍ତି ମଧରେ ପରସ୍ପର ବିଶ୍ୱପତିଙ୍କର ମହିମ୍ନ ସ୍ପନ୍ଦନ ଅନୁଭବ କରିବାର ଗୂଢ ରହସ୍ୟ ଶିଖାଇ ଥିଲେ ପ୍ରିୟତମ

ଛାତ୍ର ମଧୁସୂଦନଙ୍କ । ମହୋଦଧିର ମାୟା ଦିନେ ମଧୁସୂଦନଙ୍କୁ ଜୀବନରେ ସୃଷ୍ଟି କରିଥିଲା ଏକ ସ୍ୱପ୍ନ । ମହୋଦଧି କୂଳରୁ ସେ ଫେରୁଛନ୍ତି ଆଗେ ଆଗେ ଚାଲିଛନ୍ତି ଜଣେ ଜ୍ୟୋର୍ତିମୟ ପୁରୁଷ, କଣ୍ଠରେ ତାଙ୍କର ଓଁକାର ସମୀରଣ–ସ୍ୱନ୍ଦୀ ଝଙ୍କାର । ସେହି ଓଁକାର ଝଙ୍କାର ସହିତ ଉଦ୍ଭାସିତ ହୋଇଉଠିଛି ଅଭୂତପୂର୍ବ ଜ୍ୟୋତିରାଶି । ମଧୁସୂଦନ ସେ ଜ୍ୟୋତିର ଅନୁସରଣ କରୁଛନ୍ତି, ନଗର ଉପାନ୍ତରେ ସେ ଆସି ଉପସ୍ଥିତ ହୋଇଛନ୍ତି । କିନ୍ତୁ ହଠାତ୍ ଏ କ'ଣ ହେଲା ? ସେ ଜ୍ୟୋତି କାହିଁ ? ସେ ଜ୍ୟୋତିମନ୍ତ ପୁରୁଷ କାହାନ୍ତି ? ସ୍ୱପ୍ନର ସେ ଦୃଶ୍ୟ ତାଙ୍କ ପ୍ରାଣରେ ଏକ ଅକ୍ଷୟ ରେଖାପାତ କଲା । ତାଙ୍କ ହୃଦୟ ଦିଗ୍‌ବଳୟରେ ଉଇଁ ଆସିଲା ଆସ୍ତିକତାର ସୂର୍ଯ୍ୟ ।

ପୁରୀର ତତ୍କାଳୀନ ପଣ୍ଡିତ ହରିହର ଦାଶଙ୍କ ଜୀବନର ଅନ୍ତିମ ପରିଣତ ମଧୁସୂଦନଙ୍କର ଏ ବାସ୍ତବତାକୁ ଆହୁରି ଉଜ୍ଜ୍ୱଳତର କରିଥିଲା । ଏହି ତାର୍କିକ ପଣ୍ଡିତ ସଂସ୍କୃତ ଭାଷାରେ ଅପୂର୍ବ ବିଦ୍‌ବତ୍ତା ଓ ଅନର୍ଗଳ ବାଗ୍ମିତା ଯୋଗୁଁ ପଣ୍ଡିତ ମହଲରେ ସର୍ବୋଚ୍ଚ ସମ୍ମାନର ଅଧିକାରୀ ଥିଲେ । ପୁରୀର ତତ୍କାଳୀନ ମାଜିଷ୍ଟ୍ରେଟ ବକ୍ସଓୟେଲ ସାହେବ ତାଙ୍କର ଶିଷ୍ୟତ୍ୱ ଗ୍ରହଣ କରି ସଂସ୍କୃତ ଭାଷାରେ ବ୍ୟୁତ୍ପତ୍ତି ଅର୍ଜନ କରିଥିଲେ । ଦେଶ ହିତୋପଣା, ସମାଜ ସଂସ୍କାର ପ୍ରଭୃତିରେ ଥିଲେ ସେ ଗୋପବନ୍ଧୁଙ୍କର ଗୁରୁ । ତାଙ୍କୁ ଗୌରବ ନେବା ପାଇଁ ଗୋପବନ୍ଧୁ ସତ୍ୟବାଦୀ ବନବିଦ୍ୟାଳୟର ପାଠାଗାର ନାମ ରଖିଥିଲେ 'ହରିହର ଲାଇବ୍ରେରୀ' । ଅପର ପକ୍ଷରେ ହରିହର ଥିଲେ ଜଣେ ଚରମ ନାସ୍ତିକ ଦାର୍ଶନିକ । ହିନ୍ଦୁଧର୍ମର ପୂଜା ପଦ୍ଧତି, ବିଧି ବିଧାନର ସେ ଥିଲେ ପ୍ରବଳ ବିରୋଧୀ । ଏହି ହରିହରଙ୍କ ସୁନାମରେ ଆକୃଷ୍ଟ ହୋଇ ମଧୁସୂଦନ ଗୁରୁଦେବ ରାଧାନାଥଙ୍କ ସହିତ ତାଙ୍କ ପାଖକୁ ସଂସ୍କୃତ ସାହିତ୍ୟ ଚର୍ଚ୍ଚା କରିବା ଉଦ୍ଦେଶ୍ୟରେ ଯାଉଥିଲେ । ମଧୁସୂଦନ ନାସ୍ତିକ ହରିହରଙ୍କ ମତବାଦରେ ମର୍ମାହତ ହୋଇ ଯୁକ୍ତି ବିରୁଦ୍ଧରେ ଯୁକ୍ତି ବାଢୁଥିଲେ । ଏ ବିରୋଧ ସତ୍ତ୍ୱେ ହରିହରଙ୍କ ପ୍ରତି ଭକ୍ତି, ଶ୍ରଦ୍ଧା, ସମ୍ମାନ ଥାଏ ଅତୁଟ ଓ ଅକ୍ଷୁଣ୍ଣ । ଦିନେ ହରିହରଙ୍କ ସମ୍ପର୍କରେ ସେ ଏକ ଅଦ୍ଭୁତ ସ୍ୱପ୍ନ ଦେଖିବାକୁ ପାଇଲେ । କେତେ ଖଣ୍ଡ ଅର୍ଦ୍ଧଦଗ୍ଧ ଜ୍ୱଳନ୍ତ କାଷ୍ଠକୁ ସ୍କନ୍ଧରେ ବହନ କରି ପଣ୍ଡିତ ହରିହର ପୁରୀର ବଡଦାଣ୍ଡ ଉପରେ ପାଗଳଙ୍କ ପରି ଏଣେତେଣେ ଧାଉଁଛନ୍ତି । ଯାହାକୁ ଦେଖୁଛନ୍ତି ତା' ଉପରକୁ କ୍ରୋଧରେ ଜ୍ୱଳନ୍ତ କାଷ୍ଠ ନିକ୍ଷେପ କରିବାକୁ ଲାଗିଛନ୍ତି । ଶେଷରେ ନରେନ୍ଦ୍ର ପୁଷ୍କରିଣୀରେ ଝାସ ଦେଇଛନ୍ତି । ଆଶ୍ଚର୍ଯ୍ୟର କଥା ସତକୁ ସତ ହରିହର ଏ ସ୍ୱପ୍ନର ଅଳ୍ପଦିନ ପରେ ଅଗ୍ନିରେ ଦଗ୍ଧ ହୋଇ ଇହଲୀଳା ସମ୍ବରଣ କରିଥିଲେ । ମଧୁସୂଦନ ନାସ୍ତିକତାର ଭୟାବହ ପରିଣତକୁ କିପରି ଅନ୍ତରେ ଅନ୍ତରେ ଭୟ କରୁଥିଲେ, ଏ ସ୍ୱପ୍ନ ତା'ର ଏକ ନିଦର୍ଶନ । ଜଗନ୍ନାଥ ମନ୍ଦିର ନିକଟ ଏକ ମଠର ବାବାଜୀ ହରିହର ଦାସଙ୍କ ପ୍ରତ୍ୟହ ଆଧ୍ୟାତ୍ମିକ ଉଦ୍‌ବୋଧନ ମଧ୍ୟ ମଧୁସୂଦନଙ୍କ ନାସ୍ତିକ ଜୀବନର ଥିଲା ଅନ୍ୟତମ ପ୍ରାଣ ଓ ପ୍ରେରଣା ।

ମଧୁସୂଦନଙ୍କ ଆଧ୍ୟାତ୍ମିକ ଚେତନା କଲେଜ ଜୀବନରେ ଗୀତା, ଉପନିଷଦ ପ୍ରଭୃତି ଧର୍ମ ଓ ଦର୍ଶନ ଶାସ୍ତ୍ର ଅଧ୍ୟୟନ ଦ୍ୱାରା ଏବଂ ବ୍ରହ୍ମ ଧର୍ମରେ ଦୀକ୍ଷା ଗ୍ରହଣ କରିବା ଦ୍ୱାରା ସଂଦୀପିତ ହୋଇଥିଲା, କିନ୍ତୁ ଏକ ଦିଗରେ ପବିତ୍ର ଉପନିଷଦ ଅନ୍ୟ ଦିଗରେ ବ୍ରାହ୍ମଧର୍ମ ତାଙ୍କର ଅଗୈଶଦ ପରପୃଷ୍ଟ ଚିନ୍ତାଧାରାର ତୁମୁଳ ପରିବର୍ତ୍ତନ ଆଣିଦେଲା । ତାଙ୍କର ସାକାର ପୂଜା ନିରାକାର ନିରାଜନାରେ ପରିଣତ ହେଲା । ତାଙ୍କର ଭଗବତ ସତ୍ତା ଉପଲବ୍ଧ ମୂର୍ତ୍ତି ମନ୍ଦିର ମଧ୍ୟରେ ସୀମାବଦ୍ଧ ନରହି ଅନନ୍ତ ବିଶ୍ୱବ୍ୟାପକତା ବିଭୂତିରେ ଉଦ୍‌ବୁଦ୍ଧ ହେଲା। ଉତ୍କଳର ସୀମିତ ପରିବେଷ୍ଟନକୁ ଅତିକ୍ରମ କରି ତାଙ୍କର ଆତ୍ମା ଅସୀମ ବିଶ୍ୱ ବ୍ରହ୍ମାଣ୍ଡ ଭିତରେ ପ୍ରସାରିତ ହେଲା । ସେ ନିଜ ଭିତରେ ବିଶାଳ ବିଶ୍ୱକୁ ଓ ବିଶାଳ ବିଶ୍ୱରେ ନିଜକୁ ଅନୁଭବ କଲେ । ବିଶ୍ୱୈକ ପ୍ରାଣତା ଓ ବିଶ୍ୱାନୁଭୂତିରେ ତାଙ୍କର 'ଅସ୍ମିତା' ବିସ୍ମୟରେ ବିସ୍ମିତ ହୋଇଗଲା, କିନ୍ତୁ ସେହି ବିସ୍ମୃତି ତାଙ୍କୁ ଅନନ୍ୟ ସ୍ମୃତିରେ ଦ୍ୱିପାନ୍ୱିତ କଲା ।

ବ୍ରାହ୍ମଧର୍ମର ଉପାସକ ମଧୁସୂଦନଙ୍କ ବ୍ରାହ୍ମ ଆନନ୍ଦମୟ ଓ ପ୍ରେମମୟ । 'ପାପର ଭୁବନେ ସେ ପୁଣ୍ୟର ତପନ' । ତେଣୁ ସେ ସମଗ୍ର ମାନବ ଜାତିକୁ ଉପଦେଶ ଦେଇ କହିଛନ୍ତି, ଏହି ଭବସିନ୍ଧୁ ମାୟା ଶୈଳମୟରେ ମଣିଷର ସବୁଦମ୍ଭ, ଗର୍ବ, ଆଶା, ଭାଙ୍ଗି ଚୁର୍‌ମାର ହୋଇଯାଏ । କେବଳ ଭଗବତ ବିଶ୍ୱାସ ଓ ଦର୍ଶନ ମଣିଷ ମନରେ ଉଦ୍ରେକ କରେ ଅନିର୍ବଚନୀୟ ଆନନ୍ଦ । ଈଶ୍ୱର ପ୍ରେମର ପ୍ରତିଧ୍ୱନି ତାଙ୍କର ପ୍ରତ୍ୟେକ କବିତାରେ ତା'ର ଅନିର୍ବାଣ ସ୍ୱାକ୍ଷର ବହନ କରିଛି । ଭଗବଦ୍ ଉଦ୍‌ବେଳିତ ତାଙ୍କ ମର୍ମ କୋଣରୁ ସ୍ୱତଃ ଉତ୍ସାହିତ ହୋଇଛନ୍ତି ଅମର ଅକ୍ଷୟ ସତ୍ୟ ଧର୍ମର ଅପୂର୍ବ ସଂଗୀତ ମାଧୁରୀ ତାଙ୍କର ପ୍ରତ୍ୟେକ ସୃଷ୍ଟି ସମ୍ଭାର ଭିତରେ ବ୍ରହ୍ମଙ୍କ ସୁଲଭ ଦିବ୍ୟ ଦର୍ଶନର ପ୍ରଶସ୍ତମାର୍ଗ ଉନ୍ମୋଚିତ ହୋଇଛି ।

ବାସ୍ତବିକ ମଧୁସୂଦନଙ୍କ ଜୀବନ ଥିଲା ଏକ ଅଖଣ୍ଡ ସ୍ୱର୍ଗୀୟ ପ୍ରେମର ଅବାରିତ ଉତ୍ସ । କଅଁଳ ହୃଦୟ ଦେବଶିଶୁର ନିଷ୍ପାପ ପ୍ରାଣରେ ଧର୍ମଧନର ସୁରଧ୍ୱନି ପ୍ରବାହିତ କରିବା ପାଇଁ ସେ ଯେଉଁ ଉପଦେଶ ଭରା ନୀତି ସଂଗୀତ ରଚନା କରିଛନ୍ତି, ତାହହିଁ ତାଙ୍କ ମାନସ ଚେତନାର ଏକ ଦୀପ୍ତିମନ୍ତ ଆଲୋକ ସ୍ତମ୍ଭ ।

'ବାଲ୍ୟକାଳେ ଧର୍ମ ଧନ ମୁଁ ସଞ୍ଚିବି
ଏ ଜୀବନ ଅନିଶ୍ଚିତ
କେ ଜାଣେ କାହାର ଆଜି ମୃତ୍ୟୁକାଳ
ହୋଇଯିବ ଉପସ୍ଥିତ ।'

(ଋଷିପ୍ରାଣେ ଦେବା ବିତରଣ)

ଏହି ଧର୍ମ ସଂଚୟ କରିବା ଥିଲା ମଧୁସୂଦନଙ୍କ ଜୀବନର ପରମ ବ୍ରତ ଓ ତାଙ୍କର ଜୀବନ ଦର୍ଶନ । ମଧୁସୂଦନ ଯଥାର୍ଥରେ ଓଡ଼ିଶାର ଋଷିକବି । ତାଙ୍କ କାବ୍ୟ କବିତାରେ ବୈଦିକ କବିତା ସୁଲଭ ଏକ ଉଦାର ଝଙ୍କାର ଶ୍ରୁତିଗୋଚର ହୁଏ । ଆପାର୍ଥିବ ଶକ୍ତି ନିକଟରେ ତାଙ୍କର ଆତ୍ମବିନୋଦନ ଭାବ ତାଙ୍କୁ ମାୟାମୋହଘେରା ଜୀବନଠାରୁ ଦୂରେଇ ରଖିଥିଲା । ସେ ଜୀବନକୁ ଅମୃତ ସୋପାନ ଏବଂ ମଣିଷକୁ ଅମୃତ ସନ୍ତାନ ବୋଲି କହୁଥିଲେ । ବ୍ରହ୍ମ ଚେତନାର ଉଚ୍ଚାରଣ ହିଁ ଥିଲା ତାଙ୍କ ଜୀବନ ବେଦନାର ବାଣୀ ନିର୍ଯ୍ୟାସ ।

ବରିଷ୍ଠ ଗବେଷକ
ଓଡ଼ିଆ ଭାଷା ଓ ସାହିତ୍ୟ ବିଭାଗ
ଉତ୍କଳ ବିଶ୍ୱବିଦ୍ୟାଳୟ
ବାଣୀବିହାର

# ଠାକୁରମୁଣ୍ଡା

ମୁକ୍ତିଲତା ଆଇଚ୍‌

ଶାପଗ୍ରସ୍ତା କିନ୍ନରୀ ପରି
ଲାସ୍ୟମୟୀ ବନାନୀର ସବୁଜ ଓଢଣୀ ତଳେ
ଶୋଇ ରହିଛି 'ଠାକୁରମୁଣ୍ଡା'
ରାଶି ରାଶି ଶାଳତରୁ ଗହଳରୁ ଉଙ୍କି ମାରୁଛି
ତା'ର କାକରଭିଜା ସଫେଦ୍‌ ମୁହଁ
ସୁନ୍ଦର ପଦଯୁଗଳରେ ତା'ର ଚକ୍‌ ଚକ୍‌ କରୁଛି
ଶାଳ ଫୁଲର ପାଉଁଜି
ଆଉ ଗଭାରେ ରଙ୍ଗବେରଙ୍ଗ ଅର୍କିଡ୍‌ ଓ
ମତୁଆଲି ମହୁଲ ଫୁଲର ସମ୍ଭାର
ମିଠା ମିଠା ବାସ୍ନା ଯା'ର ଭାସିଆସେ ଧୀର ପବନରେ
ନିକଟେ ତା ଧ୍ୟାନମଗ୍ନ ତପସ୍ୱୀ ପରି ଉଭା 'ମେଘାସନ'
ଅଦୂରରେ ପ୍ରକୃତିରାଣୀ 'ଶିମୁଳିପାଳ'ର
ଅପାଶୋରା ଶୋଭାର ଭଣ୍ଡାର
ଆକର୍ଷୁଛି ଦୂରଦୂରାନ୍ତରୁ ଅଗଣିତ ଭ୍ରମଣକାରୀଙ୍କୁ ।
ଛଳନା ଓ ପ୍ରତାରଣାର ସୀମାରେଖା ଛୁଇଁନଥିବା
ନିରୀହ ଅଧିବାସୀଗଣ ତା'ର ସର୍ବଦା କର୍ମଠ
ଦିନ ଏଠି କୋଳାହଳମୟ
ଆଉ ରାତି ଏଠି ନିରବ ନିଷ୍ପନ୍ଦ
କେମିତି ଏକ ଶୀତଳତାର ସ୍ୱର୍ଣତାର ସ୍ୱଚ୍ଛ ପବନରେ
ଛୁଇଁଯାଇ ଆହ୍ଲାଦିତ କରେ ସଭିଙ୍କ ପ୍ରାଣକୁ
ବକ୍ଷେ ଧରି ଅଧିଷ୍ଠାତ୍ରୀ ମହିମାମୟୀ 'ମା ବାସୁଳୀ'ଙ୍କୁ
ମାଟି ତାର ହୋଇଅଛି ଧନ୍ୟ ।
ଜୀବନ ମୋ ହୋଇଛି ସାର୍ଥକ
ଯେଉଁଦିନୁ ଲଭିଅଛି ସାନ୍ନିଧ୍ୟ ତାହାର ।

ଠାକୁରମୁଣ୍ଡା ସରକାରୀ ଉଚ୍ଚ ବାଳିକା ବିଦ୍ୟାଳୟ
ମୟୂରଭଞ୍ଜ

❖ ❖ ❖

# ଉଗ୍ର ଜାତୀୟ ଚେତନାର ଏକ ଅଲିଭା ବର୍ତ୍ତିକା ବୀରକିଶୋର

ଦୁଃଖିଶ୍ୟାମ ଦାସ

ଦିନ ଥିଲା ଦିଗ୍‌ବିଜୟୀ ସମ୍ରାଟ ଗଜପତି କପିଳେନ୍ଦ୍ର ଦେବଙ୍କ ରାଜତ୍ୱ କାଳରେ ଓଡ଼ିଶାର ସୀମା ସରହଦ ଆଗଙ୍ଗା ଗୋଦାବରୀ ପର୍ଯ୍ୟନ୍ତ ପରିବ୍ୟାପ୍ତ ହେବା ସଙ୍ଗେ ସଙ୍ଗେ କଳା, ସାହିତ୍ୟ, ସଂସ୍କୃତି, ଅର୍ଥନୀତି, ଶାସନ ନୀତି ତଥା ସମାଜ ନୀତି ଆଦି ସକଳ କ୍ଷେତ୍ରରେ ସମୃଦ୍ଧିର ଚରମ ଉତ୍କର୍ଷ ଲାଭ କରିଥିଲା । ସୂର୍ଯ୍ୟବଂଶୀ ଶାସନର ଅବସାନ ପରେ ୧୮୬୮ ଖ୍ରୀଷ୍ଟାବ୍ଦରୁ ଓଡ଼ିଶାର ଭାଗ୍ୟରବି ଅସ୍ତମିତ ହୋଇ ଦୀର୍ଘ ତିନିଶହ ବର୍ଷରୁ ଊର୍ଦ୍ଧ୍ୱକାଳ ଧରି ବିଦେଶୀ ଆଫଗାନ, ମୁସଲମାନ, ମୋଗଲ, ମରହଟ୍ଟା ଓ ପରେ ପରେ ଇଂରେଜମାନଙ୍କ କବଳରେ କବଳିତ ହୋଇଥିଲା । ଫଳରେ ଓଡ଼ିଶାର ଭ୍ୟାଗାକାଶ ଅନିର୍ବଚନୀୟ କରାଳ ଛାୟାରେ ଆଚ୍ଛାଦିତ ହୋଇ ଶ୍ରୀହୀନ ହେବାକୁ ଲାଗିଲା । ବିଶେଷକରି ୧୮୦୩ ଖ୍ରୀଷ୍ଟାବ୍ଦରେ ଇଂରେଜମାନଙ୍କର ଓଡ଼ିଶା ଦଖଲ ଓ ଶୋଷଣ ନୀତି ଓଡ଼ିଆ ଜାତିର ମେରୁଦଣ୍ଡକୁ ସମୂଳେ ଦୋହଲାଇ ଦେଇଥିଲା । ସୂର୍ଯ୍ୟାସ୍ତ ଆଇନ ବଳରେ ବହୁ ବଙ୍ଗୀୟ ଧନାଢ୍ୟ ବ୍ୟକ୍ତିଙ୍କୁ ସ୍ୱଳ୍ପ ମୂଲ୍ୟରେ ଓଡ଼ିଶାର ଜମିଦାରୀ ବିକ୍ରୟ କରି ସେମାନେ ଓଡ଼ିଶାବାସୀଙ୍କୁ ଦରିଦ୍ର, ଭୂମିହରା ଓ ହୀନବୀର୍ଯ୍ୟ କରି ଦେଇଥିଲେ । ପୁଣି ଅଖଣ୍ଡ ଓଡ଼ିଶାକୁ ଖଣ୍ଡବିଖଣ୍ଡିତ କରି କେବଳ ଉପକୂଳବର୍ତ୍ତୀ କଟକ, ପୁରୀ ଓ ବାଲେଶ୍ୱର ବ୍ୟତୀତ ଅନ୍ୟ ସମସ୍ତ ଅଞ୍ଚଳକୁ ବଙ୍ଗ, ବିହାର, ମଧ୍ୟପ୍ରଦେଶ ଭୁକ୍ତ କରାଯାଇ ଓଡ଼ିଆ ଜାତିର ସଂହତି, ସ୍ୱାଭିମାନ, ଶିକ୍ଷା ଓ ସଂସ୍କୃତି ଆଦିକୁ ଧ୍ୱଂସ କରିବାର ଏକ ହୀନ ଚକ୍ରାନ୍ତ କରାଗଲା । ପଶ୍ଚିମ ଓଡ଼ିଶାରେ ହିନ୍ଦୀ ଦକ୍ଷିଣରେ ତେଲଗୁ ଓ ଉପକୂଳବର୍ତ୍ତୀ ଓଡ଼ିଶାରେ ବଙ୍ଗ ଭାଷା ପ୍ରଚଳନ କରି ଓଡ଼ିଆ ଭାଷାର ପ୍ରାଧାନ୍ୟ ହ୍ରାସ ନିମନ୍ତେ ପ୍ରକ୍ରିୟାକରଣ କରାଯାଇ ଭାଷା ବିଲୋପ ନୀତିର ସୂତ୍ରପାତ କରାଗଲା । ଠିକ୍ ଏଭଳି ଏକ ସନ୍ଧିକ୍ଷଣରେ ତଥା ଘୋର ଦୁର୍ଦ୍ଦିନରେ ଯେତେବେଳେ ଭାଷା ସାହିତ୍ୟ ସଂହତି ଓ ସ୍ୱାଭିମାନ ବିପନ୍ନ ହୋଇଥିଲା, ସେତିକି ବେଳେ ଯେଉଁ ସୁଯୋଗ୍ୟ ସନ୍ତାନ ଓ ବରପୁତ୍ରଗଣ ବୀର ପ୍ରସବିନୀ ଉତ୍କଳ ଜନନୀର ମୁଖ ମଣ୍ଡଳରେ ହସ ଫୁଟାଇବା ଲାଗି ତ୍ୟାଗପୂତ ସଂଗ୍ରାମର ଯଜ୍ଞରେ ଆତ୍ମାହୁତି ଦେବାକୁ ଆଗେଇ ଆସିଥିଲେ, ସେମାନଙ୍କ ମଧ୍ୟରେ ଊନବିଂଶ ଶତାବ୍ଦୀର ଶେଷ ପାଦର କବି ବୀରକିଶୋରଙ୍କ ନାମ ସ୍ମରଣଯୋଗ୍ୟ ।

ଜାତୀୟ କବି ବୀରକିଶୋର ଦାସ ୧୮୯୬ ମସିହା ନଭେମ୍ବର ମାସ ୨୩ ତାରିଖରେ ଜଗତସିଂହପୁର ନିକଟବର୍ତ୍ତୀ ପୁନଙ୍ଗ ବା ପୁନଗ୍ରାମଠାରେ ଏକ କୁଳୀନ ପରିବାରରେ ଭୂମିଷ୍ଠ ହୋଇଥିଲେ । ତତ୍କାଳୀନ ସ୍ୱାଧୀନତା ତଥା ଜାତୀୟତା ଆନ୍ଦୋଳନରେ ଏଇ ପ୍ରମୁଖ ପୃଷ୍ଠଭୂମି ଥିଲା କଟକ ଜିଲ୍ଲାର ଜଗତସିଂହପୁର । ଏହି ଅଞ୍ଚଳରେ ବହୁ ବିଶିଷ୍ଟ ଦେଶପ୍ରେମୀ ସଂଗ୍ରାମୀ ଯଥା–ଗୋପବନ୍ଧୁ ଚୌଧୁରୀ, ନବକୃଷ୍ଣ ଚୌଧୁରୀ, ସାରଳାଦେବୀ, ନିତ୍ୟାନନ୍ଦ କାନୁନ୍‌ଗୋଙ୍କ ଭଳି ମହାନ୍ ଯୋଗଜନ୍ମା ବ୍ୟକ୍ତି ଜନ୍ମଲାଭ କରିଥିଲେ । ଓଡ଼ିଶାରେ ଅସହଯୋଗ ଆନ୍ଦୋଳନ ଚଳାଇବା ନିମନ୍ତେ ମହାତ୍ମା ଗାନ୍ଧୀଙ୍କ ନିର୍ଦ୍ଦେଶକ୍ରମେ ସ୍ୱାଧୀନତା ସଂଗ୍ରାମୀମାନଙ୍କୁ ତାଲିମ୍ ଦେବା ଉଦ୍ଦେଶ୍ୟରେ ଏଠାରେ ଅଲକାଶ୍ରମ ନାମକ ଏକ ଆଶ୍ରମ ପ୍ରତିଷ୍ଠା କରାଯାଇଥିଲା । କବି ବୀରକିଶୋରଙ୍କ ଗ୍ରାମ ପ୍ରାକୃତିକ ଶୋଭା ବିମଣ୍ଡିତ ଚତୁଃପାର୍ଶ୍ୱ ନଦୀନାଳ ଓ ଜଙ୍ଗଲ ସୁଶୋଭିତ କେତେକ ବଙ୍ଗାଳି ଓ ଓଡ଼ିଆ ପରିବାରକୁ ନେଇ ଏକ ମିଶ୍ରିତ ସଂସ୍କୃତିର ମିଳନସ୍ଥଳୀ ଭାବେ ଆଞ୍ଚଳିକ ପ୍ରସିଦ୍ଧି ଲାଭ କରିଥିଲା । କବିବର ରାଧାନାଥ ରାୟ ଏହି ଗ୍ରାମର ଶୋଭାରେ ବିମୋହିତ ହୋଇ ତାଙ୍କ ନନ୍ଦିକେଶ୍ୱରୀ କାବ୍ୟରେ ଏହାର ଅପରୂପ ପ୍ରାକୃତିକ ଗୁଣରାଜି ଅତୀବ ସୁନ୍ଦର ଭାବରେ ବର୍ଣ୍ଣନା କରିଛନ୍ତି । ବାଲ୍ୟକାଳରୁ ଏହିଭଳି ଏକ ପରିବେଶର ପ୍ରଭାବ ତାଙ୍କ ପରବର୍ତ୍ତୀ ଜୀବନକୁ ବହୁ ଭାବରେ ପ୍ରଭାବିତ କରିଥିବା ପରିଲକ୍ଷିତ ହୁଏ । କଟକ ଭିକ୍ଟୋରିଆ ସ୍କୁଲରେ ଅଧ୍ୟୟନ କାଳରେ ତାଙ୍କର ଶିକ୍ଷାଗୁରୁ ଥିଲେ

ଭକ୍ତକବି ମଧୁସୂଦନ ରାଓ, ଯାହାଙ୍କର ନୀତି ଓ ଆଦର୍ଶରେ ଅନୁପ୍ରାଣିତ ହୋଇଥିଲେ କବି ବୀରକିଶୋର । ଏହି ବୟସରୁ ତାଙ୍କ କବି ଜୀବନର ନବୋନ୍ମେଷ ଘଟିବା ସହ ହୃଦୟ କନ୍ଦରରୁ କବିତ୍ୱର ସ୍ଫୁରଣ ହୋଇଥିଲା । ତାଙ୍କ ଲେଖନୀ ନିସୃତ ପ୍ରଥମ କବିତାଟି କାର୍ତ୍ତିକ ପୂର୍ଣ୍ଣିମା ପରଦିନ ଉଷାକାଳରେ ସବୁଜ ଦୁର୍ବାଦଳ ଉପରେ ପତିତ ବିନ୍ଦୁ କାକରର ମୁକ୍ତାସମ ଝଲମଲ ଶୋଭା ବର୍ଦ୍ଧନକାରୀ ଦୃଶ୍ୟରାଜି ଅବଲୋକନରୁ ଆତ୍ମ ପ୍ରକାଶ କରିଥିଲା । ପରେ ପରେ ସେ ଶଙ୍ଖଚିଲ, ନାଉଫୁଲ, ଶତପୁତ୍ର, ବସନ୍ତବନ୍ଧୁ, ଶରତ ସଖା ଆଦି ତିନିଶହରୁ ଅଧିକ ଗୀତ କବିତା ରଚନା କରିବା ସହିତ ଅନୁବାଦ କବିତା, ଡାଫୋଡିଲ ଫୁଲକୁ କାଠଯୋଡ଼ି କୂଳର ଅଗରାଫୁଲ ସହ ତୁଳନା କରି ରୋମାଣ୍ଟିକ ଭାବବେଗ ସମ୍ପନ୍ନ ପଲ୍ଲୀ ପ୍ରକୃତିକୁ ଏପରି ଅପରୂପ ବର୍ଣ୍ଣନା ଶୈଳୀରେ ଉପସ୍ଥାପନ କରିଥିଲା, ଯାହାକି ଭକ୍ତକବି ମଧୁସୂଦନଙ୍କୁ ଚମତ୍କୃତ କରି ଦେଇଥିଲା । ବିଶେଷ କରି ୧୬ ବର୍ଷ ବୟସରୁ ବିଶିଷ୍ଟ କବି ନାରାୟଣ ମୋହନ ଦେବଙ୍କ ସାହଚର୍ଯ୍ୟ ଲାଭକରି ଏହିସବୁ କବିତା ରଚନା ଦିଗରେ ସେ ବହୁ ଭାବରେ ଅନୁପ୍ରେରିତ ହୋଇଥିଲେ ।

ପରିସ୍ଥିତି ଚକ୍ରରେ ପଡ଼ି ବୀରକିଶୋର ରେଭେନ୍ସା କଲେଜରେ ଆଇ.ଏ ଶ୍ରେଣୀରୁ ପାଠପଢ଼ା ଛାଡି ପରିବାର ଭରଣପୋଷଣ ନିମନ୍ତେ କଟକରେ ପି.ଡବ୍ଲ୍ୟୁ.ଡିରେ କିରାଣି ଚାକିରି କରୁଥାନ୍ତି । ଭାରତରେ ଗାନ୍ଧିଯୁଗ ଆରମ୍ଭ ପୂର୍ବରୁ ଓଡ଼ିଶା ମାଟିରେ ସମାଜ ସେବାକୁ ଜୀବନର ମହାନ୍ ବ୍ରତଭାବେ ବରି ନେଇଥିବା ଲକ୍ଷ୍ମୀନାରାୟଣ ସାହୁଙ୍କର ସାନ୍ନିଧ ଲାଭ କରିଥିଲେ ବୀରକିଶୋର । ଦକ୍ଷିଣ ଆଫ୍ରିକାରେ ପ୍ରବାସୀ ଭାରତୀୟମାନଙ୍କ ପ୍ରତି ଗୋରା ଶାସକମାନଙ୍କ ଅମାନୁଷିକ କାର୍ଯ୍ୟ କଳାପକୁ ବାରିଷ୍ଟର ମୋହନ ଦାସ କରମଚାନ୍ଦ ଗାନ୍ଧୀ ପାଶ୍ଚାତ୍ୟ ଜଗତର ମହାମନୀଷି ଟଲଷ୍ଟୟଙ୍କ ଦ୍ୱାରା ଅନୁପ୍ରାଣିତ ହୋଇ ଦୃଢ଼ ପ୍ରତିବାଦ କରୁଥାନ୍ତି । ସେହି ସମୟରେ ଗାନ୍ଧୀଙ୍କ ଉପରେ ଲିଖିତ ଏକ କ୍ଷୁଦ୍ର ଜୀବନ ପୁସ୍ତକ ସମାଜସେବୀ ଲକ୍ଷ୍ମୀନାରାୟଣଙ୍କଠାରୁ ପାଇ ସେ ପାଠ କରିବାର ସୁଯୋଗ ଲାଭ କଲେ । ଇଂରାଜୀରେ ଲିଖିତ ଏହି କ୍ଷୁଦ୍ର ପୁସ୍ତକଟି ସମ୍ପୂର୍ଣ୍ଣଭାବେ ତାଙ୍କ ଜୀବନ ପଥର ମୋଡ଼ ବଦଳାଇ ଦେଲା । ତାଙ୍କ କବିତା ରଚନାର ଧାରା ମଧ୍ୟ ତଦନୁଯାୟୀ ଆଙ୍ଗିକ ଓ ଆତ୍ମିକ ପରିବର୍ତ୍ତନର ସ୍ୱର ଉତ୍ତୋଳନ କଲା । ତାଙ୍କ ଲେଖନୀରୁ ଆତ୍ମପ୍ରକାଶ କଲା–

'ମୋତେ ମିଳାଇ ଦିଅ ହେ ସବୁରି ସାଥେ
ମୋ ଭଙ୍ଗାହୃଦୟର ରଙ୍ଗା ପକ୍ଷୀଟିକି
ବାନ୍ଧି ଦିଅ ନେଇ ସବୁରି ହାତେ ।'

୧୯୨୧ ମସିହା ଘଟଣା ମହାତ୍ମା ଗାନ୍ଧୀଙ୍କ ଦ୍ୱାରା ଆହୂତ ଅସହଯୋଗ ଆନ୍ଦୋଳନ ସାରା ଦେଶରେ ଚହଳ ସୃଷ୍ଟି କରୁଥାଏ । ବାପୁଜୀଙ୍କ ବଜ୍ର ଆହ୍ୱାନ ଆକୁମାରୀ–ହିମାଚଳର ଗ୍ରାମଠାରୁ ସହରଯାଏଁ ଚାରିଆଡ଼େ ଦେଶ ପ୍ରେମର ଉନ୍ମାଦନା ତଥା ଅଭିନବ ଭାବଧାରାରେ ବିପ୍ଲବର ବହ୍ନି ସାଧାରଣ ଜୀବନଧାରାକୁ ପ୍ରଭାବିତ କରୁଥାଏ । ପରାଧୀନତାର ଶୃଙ୍ଖଳରୁ ମୁକ୍ତିଲାଭ ନିମନ୍ତେ ଜାତୀୟ ଜୀବନରେ ଦେଶଭକ୍ତିମୂଳକ ବ୍ୟାକୁଳତାର ସ୍ରୋତ ଦେଶବାସୀମାନଙ୍କ ହୃଦୟକୁ ଉଦ୍‌ବେଳିତ କରୁଥିଲା । ଯୁବସୁଲଭ ଗୁଣାବତ୍ତାରେ ଆୟୁତ ସଂଗ୍ରାମୀ ବୀରକିଶୋରଙ୍କ ମନକୁ ଦେଶବାସୀଙ୍କ ଦୁଃଖ ଦୁର୍ଦ୍ଦଶା ବ୍ୟଥିତ ଓ ମର୍ମାହତ କରିଦେଲା । ବିଂଶ ଶତାବ୍ଦୀର ତୃତୀୟ ଦଶନ୍ଧିର ଆରମ୍ଭରୁ ସେ ଇଂରେଜମାନଙ୍କ ସକଳ ପ୍ରକାର ଅତ୍ୟାଚାର, ଅନ୍ୟାୟ, ଅନୀତି ଓ ଶୋଷଣ ବିରୁଦ୍ଧରେ ସଂଗ୍ରାମ କରିବା ନିମନ୍ତେ ବୈପ୍ଳବିକ ଚେତନାର ଅଗ୍ରଦୂତ ରୂପେ କାର୍ଯ୍ୟ ଆରମ୍ଭ କଲେ । ଅଷ୍ଟାଦଶ ଶତାବ୍ଦୀରେ କବି ପୁଷ୍କିନ୍ ଯେପରି ତାଙ୍କ କାବ୍ୟ କବିତା ମାଧ୍ୟମରେ ଜାର ଶାସନର ଅନ୍ୟାୟ, ଅନୀତି ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିଥିଲେ, ସେହିପରି ଦୀର୍ଘଦିନର ଦାସତ୍ୱ ଶୃଙ୍ଖଳକୁ ଛିନ୍ନକରି ମୁକ୍ତି ଓ ସ୍ୱାଧୀନତାର ନବୋ–ସୂର୍ଯ୍ୟୋଦୟ ପାଇଁ ବୀରକିଶୋରଙ୍କ ଲେଖନୀରୁ ଆତ୍ମପ୍ରକାଶ କଲା 'ମୋହନବଂଶୀ' କାବ୍ୟ ।

'ମୋହନବଂଶୀ' ହେଉଛି ତାଙ୍କ ଦ୍ୱାରା ରଚିତ କାବ୍ୟଗୁଡ଼ିକ ମଧ୍ୟରୁ ୧୯୨୧ ମସିହାରେ ପ୍ରକାଶିତ ସର୍ବପ୍ରଥମ କ୍ଷୁଦ୍ରକାବ୍ୟ–ଗ୍ରନ୍ଥ । ପଞ୍ଜାବର ଜାଲିଆନାୱାଲାବାଗଠାରେ ଯେଉଁ ନରମେଧ ଯଜ୍ଞ ଘଟିଥିଲା, ତାହା ତାଙ୍କ ହୃଦୟକୁ ବହୁ ଭାବରେ ବିଦୀର୍ଣ୍ଣ କରିଥିଲା । ସରକାରୀ ଚାକିରି ଭିତରେ ଥାଇ ସେ ଗଭୀର ଭାବରେ ଏହି ମର୍ମନ୍ତୁଦ ଘଟଣାସବୁକୁ ଭିତ୍ତିକରି ଯେଉଁ ତିନିଗୋଟି ଚେତନାଧର୍ମୀ କବିତା ରଚନା କରିଥିଲେ ତାହା ମୋହନବଶଂୀ ପୁସ୍ତକଟି ପ୍ରକାଶ ନିମନ୍ତେ ଅପୂର୍ବ ସୁଯୋଗ ସୃଷ୍ଟି କରିଥିଲା । ସରକାରୀ କଳର ନାଲି–ଫିତା ଭିତରେ ନିଜ ନାମକୁ ଆତ୍ମଗୋପନ ରଖିବାର ଅଭିପ୍ରାୟରେ ସେ ତତ୍କାଳୀନ ବିହାର ଓଡ଼ିଶାର ମନ୍ତ୍ରୀ ମଧୁସୂଦନ ଦାସଙ୍କ ନାମରେ ବହିଟିକୁ ପ୍ରକାଶ ନିମନ୍ତେ ଉତ୍ସର୍ଗ ପତ୍ରରେ ଲେଖିଥିଲେ– ପୂଜ୍ୟପାଦ ! ବହୁଦିନ ବ୍ୟାପି ଝଡ ବର୍ଷା ପରେ ସୂର୍ଯ୍ୟାଲୋକ ପ୍ରକଟିତ ହେଲା ପରି ଆଜି ଏ ହତଭାଗ୍ୟ ଅଧଃପତିତ ଉତ୍କଳରେ ଗୋଟିଏ ଗୋଟିଏ ଶିକ୍ଷିତ, କଷ୍ଟ ସହିଷ୍ଣୁ ଓ ସ୍ୱଦେଶୀ– ପ୍ରେମିକ ଦେଖା ଦେଉଛନ୍ତି ସତ, ମାତ୍ର ଆପଣ ହିଁ ଉତ୍କଳର ପ୍ରଥମ କର୍ମୀ । ଆପଣ ହିଁ ନାନା ପ୍ରକାର ଅପମାନ ଓ ନିର୍ଯ୍ୟାତନା ସହ୍ୟ କରି ଉତ୍କଳ ବାହାରେ ଓଡ଼ିଆ ବୋଲି ପରିଚୟ

ଦେଇଛନ୍ତି । ଆପଣ ହିଁ ଉତ୍କଳର ସର୍ବାଙ୍ଗୀନ ଉନ୍ନତି କଳ୍ପେ ଉତ୍କଳ ମିଳନ ମେଳା ଭିଆଇ ଅଛନ୍ତି। ପୂଜ୍ୟପାଦ, ଆପଣଙ୍କର ରୋପିତ ସେହି ଉତ୍କଳ ମିଳନ– ମେଳା ପାଦପଟି ଯେ ମହାତ୍ମାଙ୍କର ସ୍ୱଦେଶ ପ୍ରେମର ମଳୟ ସ୍ପର୍ଶରେ ଆଜି ସୁକୁସୁମ ମୋହନବଂଶୀ ବାଦନ କରୁଅଛନ୍ତି, ସେ ମୋହନବଂଶୀର ନାଦରେ ପଞ୍ଚନଦୀର ଜଳ ଚିଲିକାର ଜଳ ସଙ୍ଗେ ମିଶିବାକୁ ବସିଛି, ମୋହନବଂଶୀର ନାଦରେ ହିମାଦ୍ରି ଶିଖ ମେଘାସନକୁ ଆଲିଙ୍ଗନ କରିବାକୁ ଚାହିଁ ରହିଛି । ଆପଣଙ୍କର ପୂର୍ବ କୀର୍ତ୍ତି ସ୍ମରଣ କରି ଆଜି ମୋହନବଂଶୀ ନିନାଦିତ । ସେ ମୋହନ ସଙ୍ଗୀତର ଭାବଜ୍ୟୋତିକ ଛବି ଖଣ୍ଡିମୋର ଏ ଦୁର୍ବଳ ଲେଖନୀରେ ଅଙ୍କନ କରି ଭକ୍ତି ସହକାରେ ଆପଣଙ୍କର କର କମଳରେ ଅର୍ପଣ କଲି । ଏହି ମୋହନବଂଶୀ କ୍ଷୁଦ୍ର ଗ୍ରନ୍ଥଟିର ମୁଖ୍ୟ ଅଂଶ ଗ୍ରହଣ କରିଥିବା ଧର୍ମବାଣୀ ଶୀର୍ଷକ କବିତାଟିରେ କବି ଅତୀତ ଭାରତର ବହୁ ଦେବାଦେବୀ ଭକ୍ତ, ବୀର, ଯୋଗୀ ଆଦିଙ୍କର ମନ୍ତ୍ର ଓ ମହିମାଗାନ କରି ଦେଶବାସୀଙ୍କ ଭିତରେ ପୂର୍ବ ସ୍ମୃତି ଜାଗ୍ରତ କରିବା ପାଇଁ ପ୍ରୟାସ କରି ଲେଖିଛନ୍ତି–

ଶାକ୍ୟସିଂହ ଯେଉଁ ଦେଶେ ଗଳାହାର କାଢ଼ି
ସୁତ ଦାରା ପରିବାର ସବୁ ଆଶା ଛାଡ଼ି
ଚାଲିଗଲେ ପର ଦୁଃଖ ତୁଟାଇବା ପାଇଁ
ସେ ଦେଶେ ଜନମ ମୁହିଁ ନେଇ ଅଛି ଭାଇ ।

XXX

ଯେ ଦେଶେ ଦଧୀଚି ମୁନି ଦେବତାଙ୍କ ପାଇଁ
ଦାନ କଲେ ନିଜ ଅସ୍ଥି ମନା କଲେ ନାହିଁ
ସେ ଦେଶର ଜଳବାୟୁ ଗଢିଅଛି ମୋତେ
କି କହିବି ମନକଥା ଫେଡି ଆଉ ତୋତେ।

XXX

ସେ ଦେଶେ ମୋହନ ଆଜି ଧରି ନବବଂଶୀ
ଦିନରାତି ଚାହିଁ ଦେଖ ବଜାଉଛି ବସି
ବିଷାଦେ ଡାକଇ ବଂଶୀ ଉଠ ଭାଇ ଭାଇ
ତୋ ଦେହରେ ଶୋଣିତ କି ଆଜି ଆଉ ନାହିଁ ?
ତୋ ଦେହରେ ନାହିଁ କିରେ ଦେବତାଙ୍କ ଅସ୍ଥି ?
ଏ ଭାରତ ଭୂମି ପରା ଦେବତାଙ୍କ ବସ୍ତି ?
ପଞ୍ଜାବର ଅତ୍ୟାଚାର ନାହିଁ କିରେ ମନେ
ଦେଖୁ ଦେଖୁ ଶୁଣୁ ଭୁଲିଗଲୁ କ୍ଷଣେ।

ଏହି କାବ୍ୟଟିକୁ ରଚନା କଲାବେଳେ ବୀରକିଶୋର ସରକାରୀ ଚାକିରିରେ ଥିବାରୁ ଜାତୀୟ କବି ଭାବେ ପରିଚିତ ହୋଇପାରି ନଥିଲେ। ପଞ୍ଜାବର ନରମେଧ ଯଜ୍ଞରେ ଗୋରା ଫଉଜର ଗୁଳିରେ ନିରବ ଛାତ୍ର ମଦନର ପ୍ରାଣହାନୀ, ସତୀତ୍ୱ ହରାଇବା ଭୟରେ ଶହ ଶହ ହିନ୍ଦୁ ନାରୀଙ୍କର ଆତ୍ମହତ୍ୟା ଏବଂ ସାଧାରଣ ଜନତାଙ୍କ ଉପରେ ଅକଥନୀୟ ଅତ୍ୟାଚାରକୁ ଚେତାଇ ଦେବା ଉଦ୍ଦେଶ୍ୟରେ କବି ଲେଖିଥିଲେ–

ହିମାଚଳ ପଦତଳ ସୀମାଞ୍ଚଳ ଯାଏ
ମଦନର ପ୍ରେତଆତ୍ମା ଡାକି ଡାକି ଯାଏ ।
ଡାକିଯାଏ ପ୍ରେତଆତ୍ମା ପଞ୍ଜାବ ସତୀର
ସତୀତ୍ୱ ହରଣ ଭୟେ ଦେଲା ଯେହୁଶିରା

XXX

ଡାକୁଛନ୍ତି ପଞ୍ଜାବ କୁଳ ସୀମାନ୍ତିନୀ
ବିନା ଦୋଷେ ମରିଥିଲେ ଯେ ସବୁ ଗର୍ଭିଣୀ।

ଇଂରେଜ ଶାସନ ପରାଧୀନତାର ଶୃଙ୍ଖଳରେ ପେଶି ହୋଇ ଭାରତୀୟମାନଙ୍କର ଦୟନୀୟ ଅବସ୍ଥାକୁ ଲକ୍ଷ୍ୟ କରି କବିଙ୍କ ଲେଖନୀରୁ ପୁଣି ଝରି ପଡ଼ିଥିଲା –

ସୁନାର ଭାରତ ଆମ ହେଲା ଛାରଖାର
ଖାଇବାକୁ ନ ପାଇଲୁ ଓଳିଏ ଆହାର ।
ବିଦେଶୀ ଦରବେ ଆମ ଦେଶ ଗଲା ଭରି
ସତ କହିବାକୁ ଲୋକେ ମରୁଛନ୍ତି ଡରି ।

XXX

ବାନ୍ଧଇଲା କଙ୍କଡାପରି ଆମ ଜାତି ବଳ
ଟାଣି ନେଇଗଲା ସବୁ ୟୁରୋପର କଳା
ଟାଣିନେଲା ଧନ ଭାଇ ଟାଣି ନେଲା ଧାନ
ସର୍ବଶେଷେ ଟାଣିନେଲା ପିଣ୍ଡରୁ ପରାଣ
ତେବେ ସୁଦ୍ଧା ଭାଇ ତୋର ନ ତୁଟିଲା ଆଶ
ଉତ୍‌ପଂଶ ତମ୍ପଠାରେ ରଖିଛୁ ବିଶ୍ୱାସ।

ଗାନ୍ଧୀଙ୍କ ନେତୃତ୍ୱ ପ୍ରତି ଆସ୍ଥା ପ୍ରକଟ କରି ସେ ଆଶୀର୍ବାଣୀ ଶୁଣାଇ ଲେଖିଥିଲେ –

ଆସ ଭାଇ ମୋ ଭୟ ନାହିଁ ଆଉ
ଭାରତର ପୂର୍ବ ଆଶା ଜଳେ ଦାଉ ଦାଉ।
ମାଘ ମାସ ଶୀତ ଆଉ ଭାରତରେ ନାହିଁ
ମଧୁର ବସନ୍ତ ନିଶି ଆସିଲାଣି ପାହି ।

ଧୀରେ ଧୀରେ ବହିଲାଣି ମଳୟ ପବନ
ଗୁଣୁ ଗୁଣୁ ଶୁଭୁଅଛି ମଧୁପ ଗୁଞ୍ଜନ ।
ମାନସରୋବରଠାରୁ କୁମାରିକା ଯାକେ
ବସନ୍ତ କୋଇଲି ଆଜି ଘରେ ଘରେ ଡାକେ ।

ଶେଷରେ ଘର ସଂସାର, ସରକାରୀ ଚାକିରିର ମୋହମାୟାକୁ ତୁଚ୍ଛ ମନେକରି ସ୍ୱାଧୀନଚେତା ମନରେ ଦେଶ ଓ ଜାତିର ମୁକ୍ତି ଲାଗି ତାଙ୍କ ଲେଖନୀରୁ ସ୍ୱତଃ ପରିପ୍ରକାଶ ହୋଇଥିଲା-

ମନଠାରୁ ବଡ଼ ଧନ ନାହିଁ ଆଉ ମୋର
ଅରପିଲି ଆଜି ତାକୁ ଦେଶ ପଦେ ତୋର ।
ଅରପିଲି ଆଶୀର୍ବାଦ କର ମୋତେ ଭାଇ
ମୋ ଜୀବନ ଦିଏ ଯେହ୍ନେ ତୋ ଜୀବନ ପାଇଁ ।
ତୋହରି ମଙ୍ଗଳ କାମେ ଲାଗି ଦିବାନିଶି
ମାଟି ଦେହ ଯାଉ ମୋର ମାଟି ତଳେ ମିଶି ।
ହିମାଳୟ ଗିରି ମୋର ସ୍ୱାଧୀନତା ପାଉ ।

x x x

ଏ ଜୀବନ ଦାନକରି ଦେଶ ଲାଗି ଭାଇ
ଆଗ ପଛ କଥା କିଛି ବାରେ ଚିନ୍ତା ନାହିଁ ।

ମୋହନବଂଶୀ ହେଉଛି ଓଡ଼ିଆ ଭାଷାରେ ରଚିତ ମାତ୍ର ତିନିଅଣା ମୂଲ୍ୟର ପ୍ରଥମ ରାଜନୈତିକ ସଙ୍ଗୀତ ପୁସ୍ତକ । ଏହାର ରଚନା ଓ ମୁଦ୍ରଣ ଯେପରି ଆକସ୍ମିକ କେବଳ ଗଞ୍ଜାମରେ ତିନି ହଜାର ପୁସ୍ତକ ବିକ୍ରୟ ସହ ଓଡ଼ିଶା ସାରା କିଣିବା ପାଇଁ ଗ୍ରାହକମାନଙ୍କର ସେହପରି ଆଗ୍ରହ ଥିଲା ଆଶ୍ଚର୍ଯ୍ୟଜନକ । ବୀରକିଶୋରଙ୍କ ଭାଷାରେ- ଖୁବ୍ କମ ଦିନରେ ବହିତକ ବିକ୍ରି ହୋଇଗଲା । ତାହାପରେ ବହୁତ ଖୋଳତାଡ଼ ହେଲା । ଗୋଟାଏ ଘର ଖାନ୍‌ତଲାସ ହେଲା ଲେଖକଙ୍କୁ ଧରିବା ପାଇଁ । କିନ୍ତୁ କି ପ୍ରମାଣ ଅଛି ଯେ କିଏ ମୋତେ ଧରିବ ? ଅବଶ୍ୟ ସମସ୍ତେ ଜାଣି ଯାଉଥାନ୍ତି ଯେ ମୁଁ ଲେଖିଛି । ସରକାର ଚେଷ୍ଟା କଲେ ମକଦ୍ଦମା କରିବା ପାଇଁ । ଯେଉଁ ବହିଟି ମଧୁବାବୁଙ୍କୁ ଉତ୍ସର୍ଗ କରାଯାଇଛି, ପୁଣି ବ୍ରଜସୁନ୍ଦର ବାବୁଙ୍କ ପ୍ରେସରେ ଛପା ଯାଇଛି ତା ବିରୁଦ୍ଧରେ ମକଦ୍ଦମା ହୁଅନ୍ତା ବା କିପରି ? ଏ ଦୁଇଜଣଙ୍କ ଉପରେ ବ୍ରିଟିଶ୍ ସରକାରଙ୍କର ଖୁବ୍ ବିଶ୍ୱାସ ଥାଏ । ଏତିକି କଲେ ଯେ ବହିଟିକୁ ବେଆଇନ୍ କରି ଦିଆଗଲା ଓ କଟକଣା ଜାରି କରାଗଲା ଯେ ଏ ବହିର ପ୍ରଚାର ଆଉ ହୋଇ ପାରିବନାହିଁ । ହେଲେ ସେତେବେଳକୁ ବହିତକ ବିକ୍ରି ସରିଛି । ସବୁକଥା ଚାପି ଦିଆଗଲା ସିନା, ମୁଁ କିନ୍ତୁ ଦାଗୀ ହୋଇଗଲି, ବିପ୍ଳବୀଙ୍କ ତାଲିକାରେ ରହିଗଲି । ମୋହନବଂଶୀ କାବ୍ୟଟିର ସଫଳତା ଓ ବହୁଳ ପ୍ରଚାର ପ୍ରସାର ଫଳରେ ବୀରକିଶୋରଙ୍କ ଲାଗି ପ୍ରଥମତଃ ଜାତୀୟ ଆନ୍ଦୋଳରେ ଯୋଗଦାନ ନିମନ୍ତେ ପଥ ଉନ୍ମୋଚିତ ହୋଇଗଲା ଏବଂ ଦ୍ୱିତୀୟରେ ଦାସେ ଆପଣଙ୍କ ସହ ବି ପରିଚିତ ହୋଇଗଲେ । ଉତ୍କଳମଣି ଗୋପବନ୍ଧୁ ସେତେବେଳର ଜଣେ ଅଗ୍ରଗଣ୍ୟ ଜାତୀୟବାଦୀ କବି ଭାବରେ ଲୋକପ୍ରିୟତା ଅର୍ଜନ କରିଥାନ୍ତି । ମୋହନବଂଶୀ କାବ୍ୟଟିର କବିତା ପଢ଼ି ସେ ଅଭିଭୂତ ହେବା ସହ ଯୁବକ ବୀରକିଶୋରଙ୍କ ପ୍ରତି ସମ୍ବେଦନଶୀଳ ହୋଇ ତାଙ୍କୁ ଆମନ୍ତ୍ରଣ କଲେ । ସେ ମୋହନବଂଶୀର ଅନ୍ୟ ଏକ କବିତା ଉତ୍କଳ ଜନନୀଟିକୁ ଆବୃତ୍ତି ସହ ବୀରକିଶୋରଙ୍କ ନିଜ ମୁହଁରୁ ଶୁଣିବାକୁ ଇଛା ପ୍ରକାଶ କଲେ ।

ଏଥିସହିତ ଉତ୍କଳମଣି ବୀରକିଶୋରଙ୍କୁ ସରକାରୀ ଚାକିରି ପରିହାର କରି ଜାତୀୟବାଦୀ ଆନ୍ଦୋଳନରେ ଯୋଗଦାନ ନିମନ୍ତେ ପ୍ରସ୍ତାବ ଦେଇଥିଲେ । ଶେଷରେ ସବୁ କଳ୍ପନାଜଳ୍ପନା ଆଶା ଭରସାକୁ ପରିସମାପ୍ତି ଘଟାଇ ସ୍ୱାଧୀନଚେତା କବି ବୀରକିଶୋରଙ୍କୁ ୧୯୨୨ ମସିହାରେ ସରକାରୀ ଚାକିରି ପରିତ୍ୟାଗ କରି ଆନ୍ଦୋଳନରେ ସକ୍ରିୟ ଅଂଶ ଗ୍ରହଣ ପାଇଁ ବାଧ କଲା । ମୋହନବଂଶୀ ପୁସ୍ତକ ପଠନ ଓ ବିତରଣ ହେବା ଯୋଗୁଁ ଓଡ଼ିଆମାନଙ୍କ ମଧ୍ୟରେ ଜାତି ପ୍ରେମର ବହ୍ନି ତେଜି ଉଠୁଥାଏ । ୧୯୩୦ ମସିହା ଏପ୍ରିଲ ୬ ତାରିଖରେ ଓଡ଼ିଶାରେ ଆଇନ ଅମାନ୍ୟ ଆନ୍ଦୋଳନର ଶୁଭାରମ୍ଭ ହେବା ସହ ଲବଣ ସତ୍ୟାଗ୍ରହ ଯୁଗ ଆରମ୍ଭ ହେଲା । ସେହିଦିନଠାରୁ ୧୯୪୭ ମସିହା ଅଗଷ୍ଟ ୧୫ ତାରିଖ ପର୍ଯ୍ୟନ୍ତ ଯେଉଁ ସ୍ୱାଧୀନତା ସଂଗ୍ରାମ ଚାଲିଲା ସେଥିରେ ବୀରକିଶୋର ନିଜକୁ ସମ୍ପୂର୍ଣ୍ଣ ଭାବରେ ସମର୍ପଣ କରି ଦେଇଥିଲେ । ଏହି ସତର ବର୍ଷ ଅବଧି ମଧ୍ୟରେ ସେ କେତେ ଯେ ବିପ୍ଳବ ସଙ୍ଗୀତ ବା ବିପ୍ଳବ କବିତା ରଚନା କରିଥିଲେ ତାହାର ହିସାବନାହିଁ । ଏହି ଯୁଗ ତାଙ୍କୁ ଜଣେ ଜାତୀୟ କବି ଭାବେ ପ୍ରତିଷ୍ଠା ଆଣିଦେବା ସଙ୍ଗେ ସଙ୍ଗେ ତାଙ୍କ ରଚିତ ଉଗ୍ର ଜାତୀୟତାବାଦୀ ତଥା ବିପ୍ଳବାତ୍ମକ କବିତାମାନ ସ୍ୱାଧୀନତା ସଂଗ୍ରାମର ବିଗୁଲ ବଜାଇବାରେ ସହାୟକ ହୋଇଥିଲା ।

ରାଶି ରାଶି ଜାତୀୟବାଦୀ ସଙ୍ଗୀତ ରଚନା କରି ସଂଗ୍ରାମୀମାନଙ୍କ ଭିତରେ ଦେଶ-ଭକ୍ତିମୂଳକ ଜାଗରଣ ସୃଷ୍ଟି କରିବାରେ ସେ ଥିଲେ ସଫଳ ବିଧାଣୀ । ସେଥିପାଇଁ ବୀର କିଶୋର କେତେ ଯେ ଘାତ ପ୍ରତିଘାତର ଶରବ୍ୟ ହୋଇଥିଲେ ଏବଂ ଏପରିକି

ବିଦେଶୀ ଶାସନକମାନଙ୍କ ଚକ୍ରବ୍ୟୂହର ଶିକାର ହୋଇ ବହୁବାର କାରାବରଣ କରିଥିଲେ, ତାହାର ଇୟତା ନାହିଁ । ଏସବୁ ସତ୍ତ୍ୱେ ନିଜେ ଅଟଳ ଅବଦମିତ ରହି କବିଟିଏ ହେବାର ଉତ୍କଣ୍ଠାରେ ସମସ୍ତ ପ୍ରକାର ପ୍ରତିକୂଳ ପରିସ୍ଥିତିରୁ ଅନୁକୂଳ ପରିବେଶ ଅନ୍ୱେଷଣ କରିବାରେ ସେ ଥିଲେ ଜଣେ ସମର୍ଥ ସାରଥୀ। ତେଣୁ ସେ ସମର ଯୁଗର ଅମର ସଙ୍ଗୀତ ପୁସ୍ତକର ମୁଖବନ୍ଧରେ ଲେଖିଥିଲେ– 'ମୁଁ କବିତାକୁ ଭଲ ପାଏ, କବିତା ମୋତେ ଭଲ ପାଏ। ରଷ୍ୟଶୃଙ୍ଗ ମୁନିକୁ ଜରତା ଛଡ଼ାଇ ଆଣିଲା ପରି ସ୍ୱାଧୀନତାକୁ ମର୍ମେ ମର୍ମେ ଅନୁଭବ କରିଥିଲି ଏବଂ ସ୍ୱାଧୀନତା ସଂଗ୍ରାମର ପବିତ୍ର ବହ୍ନିରେ ଝାସ ଦେଇଥିଲି। ଏହି କବିତା ଲାଗି ଥରକୁ ଥର ଗଲି ତଥାପି କବିତା ଆଉ ମୋ ଭିତରେ ଯେଉଁ ନିବିଡ଼ ସମ୍ପର୍କ ସେ ତୁଟିଲା ନାହିଁ ବରଂ ଅଧିକ ଶକ୍ତ ହୋଇଛି ।'

ହୀନବୀର୍ଯ୍ୟ, ସୁପ୍ତ ଜନତା ପ୍ରାଣରେ ଜାତୀୟତାର ଉନ୍ମାଦନା, ମହାସଂଗ୍ରାମର ଉତ୍ତେଜନା ଭରିଦେବା ପାଇଁ ବୀରକିଶୋର ଥିଲେ ଅନନ୍ୟ ଓ ଅସାଧାରଣ । ତାଙ୍କର ମୋହନବଂଶୀ ପ୍ରକାଶିତ ହେବାପରେ ମୁକ୍ତି ସଂଗ୍ରାମର ସଜୀବ ସ୍ୱାକ୍ଷର ବହନ କରି 'ରଣ ଦୁନ୍ଦୁଭି' ଓ 'ରଣଭେରୀ' ନାମରେ ଆଉ ଦୁଇଟି ଯୁଗାନ୍ତକାରୀ କବିତା ପୁସ୍ତକ ପ୍ରକାଶ ଲାଭ କରିଥିଲା । ରଣଦୁନ୍ଦୁଭିର ଗୀତଗୁଡ଼ିକ ଲବଣ ସତ୍ୟାଗ୍ରହୀମାନେ ବୋଲି ବୋଲି ଲୁଣ ମାରିବାକୁ ଯାଉଥିଲେ ଏବଂ ଗିରଫ ହେଉଥିଲେ । ସତ୍ୟାଗ୍ରହୀମାନଙ୍କ ହୃଦୟରେ ଅଗ୍ନି ସଂଯୋଗ ପୂର୍ବକ ସେମାନଙ୍କୁ ବିଦେଶୀ ଶାସନ ବିରୋଧରେ ରକ୍ତମୁଖା କରିବା ପାଇଁ ବୀରକିଶୋର ଥିଲେ ସଙ୍କଳ୍ପବଦ୍ଧ । ସେ ଲେଖିଥିଲେ–

ଭାଇ ହେ, ରଣ ସମୟରେ ବହି ଧରିବାକୁ
ମୋତେ ଆଉ ତମେ କୁହନା
ଛାତିରେ ରକତ ତାତି ଉଠେ ମୋର
ବାଜି ଉଠେ ଯୁଦ୍ଧ ବାଜଣା।

୧୯୩୧ ମସିହାରେ ଗୋଲଟେବୁଲ ବୈଠକ ବିଫଳ ହେବା ପରେ ମହାତ୍ମା ଗାନ୍ଧୀଙ୍କୁ ବନ୍ଦୀ କରାଗଲା । ଦେଶରେ ଇଂରେଜମାନଙ୍କ ଦମନ ଲୀଳା ଚାଲିଲା। ସେତିକିବେଳେ ଇଂରେଜମାନଙ୍କୁ ସହଯୋଗ କରୁଥିବା ସ୍ୱାର୍ଥାନ୍ଧ, ଦେଶଦ୍ରୋହୀ ଗୋଷ୍ଠୀଙ୍କର ମୁଖା ଖୋଲିବା ନିମନ୍ତେ ପ୍ରକାଶ ପାଇଲା ରଣଭେରୀ କବିତା ପୁସ୍ତକ। ଏହି ପୁସ୍ତକର କବିତାଗୁଡିକର ସ୍ୱର, ଲୟ ଓ ତାଳ ଏପରି ଥିଲା ଯେ ପିଲାଠାରୁ ବୁଢ଼ା ପର୍ଯ୍ୟନ୍ତ ସମସ୍ତେ ଏହାକୁ ଉତ୍ସାହର ସହ ଆକର୍ଷଣୀୟ ହେବା ଭଳି ଗାଇ ପାରୁଥିଲେ ଏବଂ ଶୋଭାଯାତ୍ରାରେ ଯାଉଥିଲା ବେଳେ ଏହାକୁ ଶୁଣିବା ପାଇଁ ହଜାର ହଜାର ଲୋକ ପଥକଡ଼ରେ ଉତ୍ସୁକତାର ସହ ଅପେକ୍ଷାରତ ରହୁଥିଲେ। ଦୃଷ୍ଟାନ୍ତ ସ୍ୱରୂପ–

ସାରା ବିଲାତରେ ହା–ହା– କାର ଆମେ ପକାଇ ଦେବୁ
ଗୋରା ବେପାରୀଙ୍କୁ ଏପାରି ସେପାରି ନଚାଇ ଦେବୁ
ଆମେ ଦରିଆରୁ ମାରିବୁ ଲୁଣ
ଗୋରା ବେପାରୀଙ୍କ ଭାଙ୍ଗିବୁ ଟାଣ
ତାଙ୍କ ବୁଦ୍ଧିବଳ ହଜାଇ ଦେବୁ ହଜାଇ ଦେବୁ ।

'ରଣଭେରୀ'ର ବୈପ୍ଳବିକ ଚିନ୍ତାଧାରା ସାଧାରଣ ଜନତାଙ୍କ ମଧ୍ୟରେ ଯେଉଁ ଇନ୍ଧନ ଯୋଗାଉ ଥିଲା, ସେଥିରେ ଉତ୍‌କ୍ଷୀପ୍ତ ଇଂରେଜ ଶାସକ ତାଙ୍କୁ ଦୁଇବର୍ଷ ପାଇଁ ଜେଲ୍ ଦଣ୍ଡରେ ଦଣ୍ଡିତ କରିଥିଲେ। ତାଙ୍କର କାବ୍ୟ ସାଧନା ଆତ୍ମପ୍ରୌଢ଼ି କିମ୍ବା ସାରସ୍ୱତ ସିଦ୍ଧିଲାଭ ଉଦ୍ଦେଶ୍ୟରେ ଅଭିପ୍ରେତ ନଥିଲା, ଦେଶ ଓ ଜାତିର ସମୂହ ସ୍ୱାର୍ଥ ସାଧନ ଦିଗରେ ଉଦ୍ଦିଷ୍ଟ ଥିଲା । ସେ ବ୍ରିଟିଶ୍ ସରକାରଙ୍କ କୋପ ଦୃଷ୍ଟିକୁ ଖାତିର ନକରି ବିଦ୍ରୋହୀ ବୀଣା (୧୯୩୦) ଅରି ଫେରି ନାହିଁ ଯୁଦ୍ଧ ସରି ନାହିଁ, (୧୯୩୧) ଫୁଲଚନ୍ଦନ (୧୯୩୧), ବିଜୟୀ ବୀଣା, ସବୁଜସାଥୀ, ସ୍ମୃତି କଣିକା, ମୋହନବେଣୁ . ସାତଦୀପ ଓ ଶାନ୍ତିଦୂତ, ମୋହନ କି କଲ ମୋହନ ଓ ସମର ଯୁଗର ଅମର ସଙ୍ଗୀତ(୧୯୭୨) ଆଦିଗ୍ରନ୍ଥ କବିତା ଅପୂର୍ବ ଉଦ୍ଦୀପନାମୟ ସଙ୍ଗୀତକୁ ପାଥେୟ କରି ରଚନା କରିଥିଲେ। କବିଙ୍କର କବିତା ରାଜିରେ ଜାତୀୟତା, ବିପ୍ଳବର ସ୍ୱର, ସମତାର ମହାମନ୍ତ୍ର ସେବାମୟ ହୃଦୟର ନୈସର୍ଗିକ ଚେତନାରେ ସରଳ, ସୁନ୍ଦର ଓ ବୋଧଗମ୍ୟ ହେଲାଭଳି ଶାଣିତ ଶବ୍ଦ– ବ୍ୟଞ୍ଜନରେ ଆଳଙ୍କରିକ ରୂପରେ ସୁସଜିତ ହୋଇଛି । ତାଙ୍କ ଲେଖନୀରୁ ଫୁଟି ଉଠିଛି –

ମୁଁ ଯେ ବିଦ୍ରୋହୀ, ଚିର ବିଦ୍ରୋହୀ
ଚିର ରଣଜୟୀ ରଣ ବିଦ୍ରୋହୀ
ରଣ ମାନବ , ରଣ ଦାନବ, ରଣ ରକ୍ତ ମୁଖରୁ
ମୁକ୍ତ କରିବି ମୋର ମହୀ। ( ବିଦ୍ରୋହୀ ବୀଣା )

୧୯୩୧ ମସିହା ମାର୍ଚ୍ଚ ୫ ତାରିଖରେ ଦ୍ୱିତୀୟ ଗୋଲଟେବୁଲ ବୈଠକରେ ଭାରତୀୟ କଂଗ୍ରେସ ତରଫରୁ ମହାତ୍ମା ଗାନ୍ଧୀ ଓ ବ୍ରିଟିଶ ସରକାରଙ୍କ ପକ୍ଷରୁ ବଡ଼ଲାଟ ଲର୍ଡ୍ ଇରଉଇନ୍‌ଙ୍କ ଭିତରେ ଏକ ସନ୍ଧିପତ୍ର ସ୍ୱାକ୍ଷରିତ ହେଲା । ଓଡ଼ିଶାର ସ୍ୱାଧୀନତା ସଂଗ୍ରାମୀମାନେ ବିହାରର ହଜାରୀବାଗ ଓ ପାଟନାର କ୍ୟାମ୍ପ ଜେଲରୁ ମୁକ୍ତିଲାଭ କରି କଟକଠାରେ ଏକ ସମ୍ବର୍ଦ୍ଧନା ଶୋଭାଯାତ୍ରାର

ଆୟୋଜନ କଲେ। ଆଚାର୍ଯ୍ୟ ହରିହରଙ୍କ ସଭାପତିତ୍ୱରେ ଏହି ସଭାଟି ଏକ ବିଶାଳ ଜନସମୁଦ୍ର ପାଲଟି ଯାଇଥିଲା ଏବଂ ଏହି ସଭାଟିରେ ଜାତୀୟ କବିଙ୍କ ସଦ୍ୟ ରଚିତ କବିତା ଆବୃତ୍ତି କରାଯାଇ ଆରମ୍ଭ ହୋଇଥିଲା । ସେହି କବିତାଟିରେ ଦେଶପ୍ରେମ ଦେଶସେବାରେ ସମର୍ପିତ କବିଙ୍କୁ ଭୟ କିମ୍ବା ଦଣ୍ଡାଦେଶର ଶଙ୍କା ଏବଂ ମରଣର କାତରତା ସ୍ପର୍ଶ କରି ନଥିଲା, ତାହାହିଁ ପ୍ରତିଫଳିତ ହୋଇଥିଲା । ସେ ଲେଖିଥିଲେ-

ମରଣକୁ ଯେବେ ବରଣ କରିବା
ଡର ଆଉ ତେବେ କାହାକୁ ?

x x x

ଅରି ଫେରି ନାହିଁ, ଯୁଦ୍ଧ ସରିନାହିଁ
ଆସ ମୋ ଶିବିରେ ଆସ ଭାଇ
ହିମାଚଳ ଶିରେ ଶବ୍ଦ ଶୁଭଇ
ଡର ନାହିଁ ଆଉ ଡେରି ନାହିଁ ।

୧୯୩୧ ମସିହା ଅଗଷ୍ଟ ଆଠ ଓ ନଅ ତାରିଖ ଏହି ଦୁଇଦିନ ଥିଲା ସେହି ବର୍ଷ ସଂଗ୍ରାମର ସବୁଠାରୁ ଜଘନ୍ୟ ଅତ୍ୟାଚାରର ଦୃଷ୍ଟାନ୍ତ ଦିବସ । ଗୋରା ଫଉଜ ସ୍ୱରାଜ୍ୟ ଆଶ୍ରମକୁ ସମ୍ପୂର୍ଣ୍ଣ ଅଧିକାର କରି ଥିବାରୁ ତାକୁ ଦଖଲ ନିମନ୍ତେ ସଂଗ୍ରାମୀମାନେ ଶପଥ ନେଲେ । ସତ୍ୟାଗ୍ରହୀମାନେ ଆଶ୍ରମ ମଧ୍ୟକୁ ପ୍ରବେଶ କରୁ କରୁ ଗୋରା ପୁଲିସ୍‌ଙ୍କ ମାଡ଼ରେ ରକ୍ତର ସୁଅ ଛୁଟିଲା ଏବଂ ଆଶ୍ରମ ବାହାରେ ମଧ୍ୟ ହଜାର ହଜାର ଲୋକ ପୁଲିସ୍‌ର ନିର୍ମମ ଲାଠି ମାଡ଼ରେ ନାଳ ଭିତରେ ପଡ଼ି ପାଣିର ରଙ୍ଗକୁ ରକ୍ତ ରଞ୍ଜିତ କରିଦେଲେ । ବୀରକିଶୋର ଏହି ମର୍ମନ୍ତୁଦ ଘଟଣା ଦେଖି ରଚନା କରିଥିଲେ-

ଭାଇ ମରିବା ତ ଦିନେ ମରିବା
ଛେଳିମେଣ୍ଢା ପରି ପାଞ୍ଚଣକୁ ଡରି
ଏଠି ଘୁଷୁରି ପରି କି ଚରିବା
ମରିବା ତ ଦିନେ ମରିବା ।
ଜାତୀୟ ପତକା ଜାତିର ଜୀବନ
ତାକୁ ଭାଙ୍ଗି ଚିରି ଦେଲେ ଅପମାନ
ସ୍ୱରାଜ ଆଶ୍ରମ
କଲେ ବେଦଖଲ
କିପରି ଏହାକୁ ସହିବା
ମରିବାତ ଦିନେ ମରିବା ।

କବି ଦେଶର ମୁକ୍ତି ପାଇଁ ପାଗଳ ସାଜି ଥିଲେ । ସ୍ୱରଚିତ ଗୋଟାକ ପରେ ଗୋଟିଏ କବିତା ଲେଖି ସଂଗ୍ରାମର ହେମାନଳକୁ ଘୃତ ସମ ଇନ୍ଧନ ଯୋଗାଇବାର ସୂତ୍ରଧର ସାଜି ପ୍ରତି ପଦରେ ସେ ଯେପରି ସ୍ୱର୍ଗସୁଖ ଅନ୍ୱେଷଣ ପଥର ପଥିକ ତଥା ଦେଶ ମାତୃକାର ବିଜୟ ଉଲ୍ଲାସରେ ଉଲ୍ଲସିତ ହେଉଥିଲେ, ତାହାର ପଟାନ୍ତର ନାହିଁ । ସେତେବେଳେ ଶହେ ଜଣଙ୍କର ଭାଷଣ ଲୋକମାନଙ୍କ ଭିତରେ ଯାହା ଉଜ୍ଜୀବିତ କରିପାରୁନଥିଲା , ବୀରକିଶୋରଙ୍କ ଗୋଟିଏ ଦେଶ ପ୍ରେମ ଜନିତ କବିତା ସାଧାରଣ ଜନତା ତଥା ସତ୍ୟାଗ୍ରହୀମାନଙ୍କୁ ଏପରି ମନ୍ତ୍ରମୁଗ୍ଧ କରି ଦେଉଥିଲା ଯେ ସେମାନେ ଜୀବନକୁ ପାଣି ଛଡ଼ାଇ ଆନ୍ଦୋଳନରେ ଯୋଗ ଦେଉଥିଲେ ଶହ ଶହ ସଂଖ୍ୟାରେ । ଏହି ବିପ୍ଳବାତ୍ମକ ଜାଗରଣ ସୃଷ୍ଟି କରୁଥିବା କବିଙ୍କ ଖବର ପାଇ ବ୍ରିଟିଶ୍ ଶାସକ ଗୋଷ୍ଠୀ ତାଙ୍କୁ ଯେ କେତେବାର ଲାଠି ପ୍ରହାର ଓ ଜେଲରେ କାରାରୁଦ୍ଧ କରି ସଂଗ୍ରାମର ନିଆଁକୁ ନିର୍ବାପିତ କରିବାର ଅପଚେଷ୍ଟା କରିଥିଲେ ମଧ୍ୟ ଜେଲ ଭିତରୁ କବି ବୀରକିଶୋର ସଂଗ୍ରାମୀମାନଙ୍କ ପାଇଁ ଯାହାପରେ ଯେମିତି ଦରକାର କବିତା ଓ ଜାତୀୟ ସଙ୍ଗୀତମାନ ଲେଖି ପ୍ରେରଣ କରିବାରେ ଅବହେଳା କରି ନାହାନ୍ତି । ସେହି ଦୃଷ୍ଟିରୁ ତାଙ୍କୁ ୧୯୪୨ ମସିହାରେ ହଜାରୀବାଗ ଜେଲ ଓ ୧୯୪୨ ମସିହାରେ ଭାରତ ଛାଡ଼ ଆନ୍ଦୋଳନ ବେଳେ ଦୀର୍ଘ ୩ ବର୍ଷ ଜେଲ ବରଣ କରିବାକୁ ପଡ଼ିଥିଲା ଏବଂ ୧୭ ଥର ଘର ଖାନ୍‌ତଲାସ୍ ହୋଇଥିଲା ।

ଜାତିର ପିତା ମହାତ୍ମା ଗାନ୍ଧୀଙ୍କ ଆହ୍ୱାନରେ ଜାତୀୟ ଚେତନାରେ ଉଦ୍‌ବୁଦ୍ଧ ହୋଇ ୧୯୨୨ ମସିହାରେ ସରକାରୀ ଚାକିରି ସଙ୍କୀର୍ଣ୍ଣତା ଭିତରେ ସୀମିତ ରହିବାକୁ ସେ ଆଉ ଇଚ୍ଛା ପ୍ରକଟ କଲେ ନାହିଁ । କଂଗ୍ରେସରେ ଯୋଗଦାନ କରି ଲକ୍ଷ୍ୟହୀନ ଭାବେ ଥଳକୂଳ ନଥିବା ମହାସମୁଦ୍ର ବୁକୁରେ ଭାସି ଭାସି କୂଳରେ ପହଞ୍ଚିବା ସହ ଦେଶବାସୀଙ୍କ ଦାସତ୍ୱ ଶୃଙ୍ଖଳରୁ ମୁକ୍ତ କରିବାରେ ଯେଉଁ ପ୍ରୟାସ ତାଙ୍କୁ ଉଦ୍‌ବେଳିତ କରୁଥିଲା, ତାହା ତାଙ୍କୁ ଚାକିରି କଣ ଘର ସଂସାରର ପାରିବାରିକ ଜୀବନ ମଧ୍ୟରେ ବି ବାନ୍ଧି ରଖିପାରିଲା ନାହିଁ । ପୁତ୍ରକୁ ଏଥିରୁ ନିବୃତ୍ତ କରାଇବା ଉଦ୍ଦେଶ୍ୟ ରଖି ତାଙ୍କୁ ପିତା ବିବାହ ସୂତ୍ରରେ ଆବଦ୍ଧ କରିଥିଲେ ମଧ୍ୟ ଦେଶ ପ୍ରୀତି ଜନିତ ସ୍ୱାର୍ଥରେ ଉନ୍ମାଦ ବୀରକିଶୋର ନିଜ ଗତିପଥରୁ ବିଚ୍ୟୁତ ହୋଇ ନଥିଲେ । ତାଙ୍କ ପାଇଁ ସାମାଜିକ ଅର୍ଥରେ ସଂସାର ଜୀବନଠାରୁ ସାମୂହିକ ସାଧନାମୟ ଜୀବନର ମୋହ ଥିଲା ଶତଗୁଣେ ସୁଖପ୍ରଦ । ଦୁଇପୁତ୍ର ଓ ଚାରୋଟି କନ୍ୟା ସନ୍ତାନର ଦାୟିତ୍ୱ କବି ପତ୍ନୀଙ୍କ ଉପରେ ନ୍ୟସ୍ତ କରି ସଂସାରର ମାୟା

ବନ୍ଧନକୁ ଛିନ୍ନ କରିବା ସହ ମହାସଂଗ୍ରାମର ଦାବାନଳ ଭିତରେ ଝାସ ଦେଇଥିଲେ ସେ ଜନନୀ ଜନ୍ମଭୂମି ପାଇଁ–

ମାଗୋ, ସବୁରି ବନ୍ଧନ ତୁଟାଇ ଆସିଛି
ଏକା ତୁମରି ବନ୍ଧନେ ଚାହିଁକି
ନବତଳ ବାସ ତଳେ ଲୋଟାଇଛି
ତୁମ କୁଟୀର ରଚନା ପାଇଁକି
ପାଶୋରି ଆସିଲି ଶିଶୁର କ୍ରନ୍ଦନ
ଉପେକ୍ଷି ଆସିଛି ଯୁବତୀ ଯୌବନ
ପର୍ଶୁରାମ ପରି ମାତାଙ୍କୁ ତେଜିଛି
ସତ୍ୟ ଗଉରବ ପାଇଁକି ...।

ଦେଶ ସ୍ୱାଧୀନତା ହାସଲ କଲାପରେ ସ୍ୱାଧୀନତା ସଂଗ୍ରାମୀମାନଙ୍କର ସ୍ୱପ୍ନର ମାଦକତା କ୍ରମଶଃ ଶୀଥିଳ ହେବାକୁ ଲାଗିଲା । ମାତ୍ର ବୀରକିଶୋରଙ୍କ ଲେଖନୀ ପୂର୍ବବତ ଚଳଚଞ୍ଚଳ ରହିଲା । କେବଳ କବିତା ମାଧ୍ୟମରେ ବିପ୍ଳବର ମହାମନ୍ତ୍ର ଉଚ୍ଚାରଣ କରିବା ପରିବର୍ତ୍ତେ ସେ ସାମ୍ବାଦିକତାକୁ ମହାସଂଗ୍ରାମର ଅନ୍ୟ ଏକ ଅସ୍ତ୍ର ରୂପେ ଉଦ୍‌ଘୋଷଣା ପୂର୍ବକ ୧୯୨୩ ମସିହାରେ ଡକ୍ଟର ମହତାବଙ୍କ ସମ୍ପାଦନାରେ ପ୍ରକାଶ ଲାଭ କରିଥିବା ସାପ୍ତାହିକ ପ୍ରଜାତନ୍ତ୍ରର ପ୍ରକାଶନ ଦାୟିତ୍ୱ (ମୁଦ୍ରାକର) ବହନ କଲେ। ସ୍ୱାଧୀନତା ପ୍ରାପ୍ତି ପରେ ମହାତ୍ମା ଗାନ୍ଧୀଙ୍କ ମହାପ୍ରୟାଣ ପରିକଳ୍ପିତ ରାମରାଜ୍ୟ ପ୍ରତିଷ୍ଠାର ଆଶାକୁ କୁଆଡ଼େ ମାଟିରେ ମିଶାଇ ଦେଲା ଏବଂ କବି କିୟତ୍‌କାଳ ପାଇଁ ଭଗ୍ନ ମନୋରଥ ହୋଇ ମୂକପରି ନିରବ ରହିଲେ। ତାଙ୍କ ଶେଷ ଅର୍ଘ୍ୟ ସମର ଯୁଗର ଅମର ସଙ୍ଗୀତ ଯାହାକି ୧୯୭୨ ମସିହାରେ ପ୍ରକାଶ ଲାଭ କରିଥିଲା, ସେହି କବିତାରେ ଅସହାୟତାର ପରିଚୟ ଦେଇ ହୃଦ– ଗହ୍ୱରର ସତ୍ୟତାକୁ ଦୁର୍ଯ୍ୟୋଧନ ପରି ପରିପ୍ରକାଶ କରି ଲେଖିଛନ୍ତି–

ଯାହା ଲେଖିବାର ଲେଖି ସାରିଛି ମୁଁ
ଆଉ ପାରୁନାହିଁ କିଛି ମୁଁ ଲେଖି
ଦେଖିବାର ଯାହା ଦେଖି ସାରିଛି ମୁଁ
ଆଉ ପାରୁ ନାହିଁ କିଛି ମୁଁ ଦେଖି
ଜୀବନଟା ଯାକ ଅନୁଭବ କଲି
ସାରା ଦୁନିଆଟା କେବଳ ଫାଙ୍କି

ଯେଉଁ କଲମରୁ ବିପ୍ଳବର ସ୍ରୋତସ୍ୱିନୀ ପ୍ରବାହମାନ ଧାରାରେ ବାଧାବିଘ୍ନ ନ ମାନି ସଙ୍ଗୀତର ନିର୍ଘୋଷ ଜାତି ପ୍ରାଣରେ କମ୍ପନ କରୁଥିଲା। ପରବର୍ତ୍ତୀ କାଳରେ ଦେଶର କୋମଳମତି ଶିଶୁମାନଙ୍କ ପାଇଁ ଫେରି ଆସିବା ସମସ୍ତଙ୍କୁ ବିସ୍ମୟ ଆଣି ଦେଲା। ବ୍ରହ୍ମପୁର ଜେଲ୍‌ରେ ଥିବାବେଳେ କବିଙ୍କ ସମ୍ପାଦନାରେ ବୈଜୟନ୍ତ ନାମକ ଏକ ହାତ ଲେଖା ସାହିତ୍ୟ ପତ୍ରିକା ଯୁବକ ତଥା ଅଟକବନ୍ଦୀ ରାମପ୍ରସାଦ ମହାନ୍ତିଙ୍କ ସହଯୋଗ କ୍ରମେ ପ୍ରକାଶ ଲାଭ କରିଥିଲା। ସେହି ସ୍ୱପ୍ନକୁ ସାକାର କରିବା ନିମନ୍ତେ ମୋ ଦେଶ ନାମରେ ଏକ ମାସିକ ଶିଶୁ ପତ୍ରିକା ପ୍ରକାଶ କଲେ। ସ୍ୱର୍ଗତ ବିଜୁ ପଟ୍ଟନାୟକ ଓ ଓଡ଼ିଶା ସରକାରଙ୍କ ପୃଷ୍ଠପୋଷକତା ଲାଭ କରି ପତ୍ରିକାଟି ବହୁଦିନ ଧରି ଅର୍ଥାତ କବିଙ୍କ ଜୀବନର ଶେଷ ପର୍ଯ୍ୟନ୍ତ ପ୍ରକାଶ ପାଇଲା ଏବଂ ଶେଷରେ ଏହି ପତ୍ରିକାଟିର ସମ୍ପାଦନା ଦାୟିତ୍ୱ ତାଙ୍କର ଜେଲ ଭିତରୁ ତାଲିମ ପ୍ରାପ୍ତ ପଟ୍ଟଶିଷ୍ୟ ରାମପ୍ରସାଦ ମହାନ୍ତିଙ୍କୁ ପ୍ରଦାନ କରିଥିଲେ। ଦେଶ ସ୍ୱାଧୀନ ହେବାପରେ ୧୯୫୯ ମସହାରେ ଓଡ଼ିଶା ବିଧାନସଭାର ସଦସ୍ୟ , ୧୯୬୨ ମସିହାରେ ପୁସ୍ତକ ଜାତୀୟ କରଣ କମିଟିର ସମ୍ପାଦକ ଏବଂ କଟକ ଲୋକାଲ ବୋର୍ଡ଼ର ଚେୟାରମ୍ୟାନ ପଦବୀରେ ସେ ବହୁକାଳ କାର୍ଯ୍ୟକରି ସମାଜ ସେବାର ଯେଉଁ ମହାନ୍ ମନ୍ତ୍ର ସୃଷ୍ଟି କରି ଯାଇଛନ୍ତି, ତାହା ତାଙ୍କ ମହାପ୍ରୟାଣ ଦିବସ ୧୯୭୩ ଏପ୍ରିଲ୍‌ରେ ନିଷ୍ପ୍ରଭ ନହୋଇ ଜାଜ୍ଜଲ୍ୟମାନ ହୋଇ ରହିଛି।

ଜାତୀୟ କବି ବୀରକିଶୋର ଥିଲେ ଯଥାର୍ଥରେ ଜଣେ ଉଗ୍ର ଦେଶପ୍ରେମୀ। ଜଣେ ସଚ୍ଚା ଦେଶସେବକ ଭାବେ ସେ ଜୀବନକୁ କିପରି କଷଟି ପଥରରେ କଷି ମହାସଂଗ୍ରାମରେ ଅଗ୍ରଦୂତ ସାଜି ସ୍ୱାଧୀନତା ସଂଗ୍ରାମୀ, ବିପ୍ଳବୀ ତଥା ଲୋକ ପ୍ରତିନିଧି ଭାବେ ସମାଜ ସେବାକୁ ଆବୋରି ନେଇଥିଲେ, ତାହା ଆଜିର ସମାଜ ପାଇଁ ବଡ଼ କଥା ନ ହେଲେ ହେଁ ସ୍ୱାଧୀନତା ଆନ୍ଦୋଳନକୁ ଇନ୍ଧନ ଯୋଗାଇ ଗତିଶୀଳ କରାଇବାରେ ତାଙ୍କ ଖଣ୍ଡାଧାର ସଦୃଶ ତୀକ୍ଷ୍ଣ ଓ ଶାଣିତ– ଜାତି ପ୍ରୀତି ଉଦ୍ରେକମୂଳକ ସଙ୍ଗୀତ ତାଙ୍କୁ କାଳ କାଳ ଧରି ଅମର କରି ରଖିବ, ଏଥିରେ ଦ୍ୱିମତ ନାହିଁ ।

ବାଙ୍କିସାହି
ତେଲେଙ୍ଗା ବଜାର, କଟକ

❖ ❖ ❖

# ମଧ୍ୟଦେଶ: ଓଡ଼ିଶାର ପ୍ରାଚୀନତମ ପରିଚୟ

**ଅଖିଳ କୁମାର ସାହୁ**

ପୁରାଣ ବର୍ଣ୍ଣିତ ମଧ୍ୟଦେଶ, ଭାରତୀୟ ଆର୍ଯ୍ୟ ସଭ୍ୟତାର ପ୍ରାଣଭୂମି, ସଂସ୍କୃତିର ସ୍ୱର୍ଣ୍ଣପିଣ୍ଡ, ଆର୍ଯ୍ୟବର୍ତ୍ତାଧୀନ ଏକ ସମୃଦ୍ଧିବନ୍ତ, ଋଦ୍ଧିମନ୍ତ, ଶ୍ଳୋକକ୍ଷେତ୍ର ଥିଲା ।

ଉଭୟ ରାମାୟଣ ଓ ମହାଭାରତ ଏହି ପୁଣ୍ୟ କ୍ଷେତ୍ରର ସମୁଦ୍ର ତଟବର୍ତ୍ତୀ ଅଞ୍ଚଳରେ ସଙ୍ଗଠିତ ହେବା ସଙ୍ଗେ ସଙ୍ଗେ ବୌଦ୍ଧ ସାହିତ୍ୟରେ ଏହାକୁ ବୁଦ୍ଧକ୍ଷେତ୍ର ବୋଲି ମଧ୍ୟ ସ୍ପଷ୍ଟ କରିଦିଆଯାଇଛି । ଏହି ସିଦ୍ଧକ୍ଷେତ୍ର, ସମସ୍ତ ବୁଦ୍ଧଙ୍କ ଜନ୍ମକ୍ଷେତ୍ର, ଜ୍ଞାନକ୍ଷେତ୍ର ଓ ନିର୍ବାଣ କ୍ଷେତ୍ର ଯୋଗୁଁ ଏହାର ପୁଣ୍ୟତାକୁ ଶାସ୍ତ୍ରୀୟ ମର୍ଯ୍ୟାଦା ପ୍ରାପ୍ତ ହୋଇଛି ।

ପୁରାଣରେ ଏହାକୁ ମଧ୍ୟଭୁବନ ବୋଲି ଦର୍ଶାଯାଇଥିବା ସ୍ଥଳେ, ସାରଳା ଦାସ ଏହାକୁ ମଧ୍ୟପୁର ବୋଲି ବର୍ଣ୍ଣନା କରିଛନ୍ତି ।

ନନ୍ଦ ଦୋଷ ନାହିଁ ଦଣ୍ଡ ଦେଲୁ ତୁ ଝିଙ୍ଘାସି,
ଏ ମଧ୍ୟପୁରେ ଅପୂଜ୍ୟ ହୋଇଥାଅ ବସି ।

(ସାରଳା ଦାସ, ଉଦ୍ୟୋଗ ପର୍ବ)

ମାତା ଗର୍ଭେ ଯେତେବେଳେ ମୋତେ ଦୁଇ ମାସେ,
ମଧ୍ୟପୁରକୁ ଆଇଲେ ପିତା ବାୟୁ ଶିଷ୍ୟେ...

ତେଣୁ ମୋତେ ସୁମରଣ କଲେ ପିତା ମୋର,
ସେଥିପାଇଁ ଆସିଅଛି ମୁହିଁ ମଧ୍ୟପୁର ।

(ସାରଳା ଦାସ)

ଶ୍ରୀମଦ୍ ଭଗବତ ଗୀତାରେ ମଧ୍ୟଦେଶକୁ ଶ୍ରେଷ୍ଠ ବୋଲି ଦର୍ଶାଯାଇ କୁହାଯାଇଛି ଯେ, 'ଦେଶ ମଧ୍ୟେ ମଧ୍ୟଦେଶ, ଫଳ ମଧ୍ୟେ ଚ୍ୟୁତ' । ପ୍ରତ୍ୟେକ ପୁରାଣରେ ଏହି ପୁଣ୍ୟଦେଶ ମାଟିର ଜୟଗାନ ଦେଖିବାକୁ ମିଳେ ।

ମଧ୍ୟପୁରରେ 'ବ୍ରହ୍ମା' ଅପୂଜ୍ୟ ହେବା କାରଣ ହେଲା 'ବୁଦ୍ଧଙ୍କ ଜନ୍ମକ୍ଷେତ୍ର' ପାଇଁ ।

ଏହି କ୍ଷେତ୍ରରେ ଆର୍ଯ୍ୟ ସଭ୍ୟତାର ଅଙ୍କୁରୋଦ୍‌ଗମ୍ ହୋଇଥିବା କାରଣରୁ ଭାରତୀୟ ସଭ୍ୟତାର ସୃଜନୀ ଶକ୍ତିରେ ସୃଷ୍ଟ ସମସ୍ତ କାବ୍ୟ, କବିତା, ଦର୍ଶନ, ପୁରାଣ ଆଦି ଶାସ୍ତ୍ର ଏହି ସ୍ଥାନରେ ବସବାସ କରୁଥିବା ମୁନି, ଋଷି, ତପସ୍ୱୀ ଏବଂ ସିଦ୍ଧାନ୍ତାଚାର୍ଯ୍ୟମାନଙ୍କ ଦ୍ୱାରା ପ୍ରଣୀତ ହୋଇଥିବା କଥା ଶାସ୍ତ୍ରରେ ଉଲ୍ଲେଖ ରହିଛି ।

'ମଧ୍ୟଦେଶକୁ' ଇଂରାଜୀ ପାଶ୍ଚାତ୍ୟ ଐତିହାସିକମାନେ ଅନୁବାଦ କଲା ସମୟରେ ଏହାକୁ 'ସେଣ୍ଟ୍ରାଲ ଇଣ୍ଡିଆ', 'ମିଡିଲ୍ କଣ୍ଟ୍ରି', 'ମିଡିଲ୍–ଡିଷ୍ଟ୍ରିକ୍ଟ', 'ମିଡ୍–ଇଣ୍ଡିଆ', 'ମିଡିଲ୍–ଲ୍ୟାଣ୍ଡ' ପ୍ରଭୃତି ଶବ୍ଦ ବ୍ୟବହାର କରିଛନ୍ତି, ଯାହା ଆଦୌ ଠିକ୍ ନୁହେଁ । ଯଦିଓ ଅର୍ଥଗତ ତ୍ରୁଟି ପରିଲକ୍ଷିତ ହୁଏ ନାହିଁ, ମାତ୍ର, 'ମିଡ୍–ଇଣ୍ଡିଆ' ଶବ୍ଦଟି ଅତ୍ୟନ୍ତ ଦୋଷାବହ ବୋଲି ମନେହେଲା ଯେତେବେଳେ ଏହା ପ୍ରମାଦପୂର୍ଣ୍ଣ, ଭ୍ରମପୂର୍ଣ୍ଣ ଓ ଏହାର ଐତିହାସିକ ତ୍ରୁଟି ସମସ୍ତ ପ୍ରାଚୀନ ବିଭବକୁ ନଷ୍ଟ କରି ଇତିହାସ ପୃଷ୍ଠାକୁ ପର୍ଯ୍ୟାୟକ୍ରମେ ଆସିଲା । ପାଲିରେ ଏହି ମଧ୍ୟଦେଶକୁ ମଜ୍ଝିମାଦେଶ କୁହାଯାଇଥାଏ ।

ବୌଦ୍ଧ ସାହିତ୍ୟରେ 'ମଧ୍ୟଦେଶ'ର ଭୌଗଳିକ ସୀମାରେଖା ସ୍ପଷ୍ଟ କରାଯାଇଛି, ଯାହା ଭାରତୀୟ ପୁରାଣ ଶାସ୍ତ୍ରରେ ଦେଖିବାକୁ ମିଳେ ନାହିଁ । ଏହାର ପୂର୍ବରେ କାଜଙ୍ଗଳ ଏବଂ କାଜଙ୍ଗଳ ପରେ ମହାଶାଳାର ସ୍ଥିତିକୁ ସୂଚା ଯାଇଛି । ଦକ୍ଷିଣ–ପୂର୍ବରେ ସାଲବତୀ ନଦୀ ଏବଂ ଦକ୍ଷିଣ–ପଶ୍ଚିମରେ ସାତକର୍ଣ୍ଣ ଥିବା ଦର୍ଶାଯାଇଛି । ପଶ୍ଚିମରେ ଥୁଣ (ନ) ଓ ଉପଥୁଣ (ନ)

ନାମକ ଦୁଇଟି ବ୍ରାହ୍ମଣ ଗ୍ରାମ ଥିବା କଥା କୁହାଯାଇଥିବା ସମୟରେ ଉତ୍ତରରେ ଉଷିଧରାଜ ପର୍ବତର ସ୍ଥିତିକୁ ଦର୍ଶାଯାଇଛି ।

କିଛି ବୌଦ୍ଧ ଶାସ୍ତ୍ରରେ ସାତକର୍ଣ୍ଣକୁ 'ମଧ୍ୟଦେଶ'ର ଦକ୍ଷିଣ ଦିଗର ଭୌଗଳିକ ସୀମାରେ ସ୍ଥାପନା କରିଛନ୍ତି ଏବଂ କାମ୍ପିଲ୍ୟକୁ ପୂର୍ବ ଦିଗରେ ଦର୍ଶାଇଛନ୍ତି । କପିଳବସ୍ତୁ 'ମଧ୍ୟଦେଶ'ର ଗୋଟିଏ ସୁନାମଧନ୍ୟ ସ୍ଥାନ ଭାବରେ ପରିଗଣିତ ହେଉଥିଲା, ଯାହା ପ୍ରଥମେ କୋଶଳ ଅଧୀନରେ ଥିଲା ଏବଂ ପରବର୍ତ୍ତୀ ସମୟରେ ଏହାକୁ ମଗଧରେ ଥିବା ଦର୍ଶାଯାଇଛି । ଅନ୍ୟ ଗୋଟିଏ ବିବରଣୀ ଅନୁଯାୟୀ ପୁଣ୍ଡ୍ରବର୍ଦ୍ଧନ ଏବଂ ପୁଣ୍ଡରାକ୍ଷ ପର୍ବତ 'ମଧ୍ୟଦେଶ'ର ପୂର୍ବ ଦିଗରେ ଅବସ୍ଥିତ ଥିଲା ଏବଂ ଏହା ଜମ୍ବୁଦ୍ୱୀପ ଅଧୀନସ୍ଥ ବୋଲି କୁହାଯାଇଛି । ସେହିପରି ସରାବତୀ ନଗର ଏବଂ ସରାବତୀ ନଦୀ ଏବଂ ଶୋଭାବତୀ ସହର ଏହାର ଦକ୍ଷିଣରେ ଥିବା ମଧ୍ୟ ଉଲ୍ଲେଖ ରହିଛି ।

ବୌଦ୍ଧଶାସ୍ତ୍ର ଅନୁଯାୟୀ 'ମଧ୍ୟଦେଶ'ରେ ଷୋଳଟି ମହାଜନପଦ ମଧ୍ୟରୁ ଚଉଦଟି ମହାଜନପଦ ଥିବା ଜଣାପଡେ । କାଶୀ, କୋଶଳ, ଅଙ୍ଗ, ମଗଧ, ଭାଜି, ମଲ୍ଲ, ଚେଦି ବଂଶ, କୁରୁ, ପାଞ୍ଚାଳ, ମାଚ୍ଛ, ସୁରସେନ, ଅସକ, ଅବନ୍ତୀ, ଗାନ୍ଧାର ଏବଂ କମ୍ବୋଜ ଆଦି ମହାଜନପଦଗୁଡିକ ମଧ୍ୟଦେଶ ଅନ୍ତର୍ଭୁକ୍ତ । ଆଶ୍ଚର୍ଯ୍ୟଜନକ ଭାବେ ଏଥିରେ କଳିଙ୍ଗ ମହାଜନପଦଟି ସ୍ଥାନିତ ହୋଇନାହିଁ । ଯେଉଁ ଶାସ୍ତ୍ରରେ କଳିଙ୍ଗ ମହାଜନପଦକୁ 'ମଧ୍ୟଦେଶ' ଅନ୍ତର୍ଭୁକ୍ତ ବୋଲି କୁହାଯାଇଛି, ସେଥିରେ ଗାନ୍ଧାର ପରିବର୍ତ୍ତେ ୟୋନକ (ଯବନ) ବୋଲି ନାମରେ ଉଲ୍ଲେଖ କରାଯାଇଛି । ଜୈନ ଭଗବତୀ ଶାସ୍ତ୍ରରେ ଯେଉଁ ଜନପଦଗୁଡିକୁ 'ମଧ୍ୟଦେଶ'ର ବୋଲି ଦର୍ଶାଯାଇଛି, ଯଦିଓ ସେସବୁ ଉଚ୍ଚାରଣଗତ କାରଣରୁ ଭିନ୍ନ ଜଣାପଡନ୍ତି ତଥାପି ତାହା ଏତେ ଗୁରୁତର ପାର୍ଥକ୍ୟ ସୃଷ୍ଟି କରୁନାହିଁ ।

ଚୀନ ପରିବ୍ରାଜକମାନଙ୍କ ଭାରତ ପରିଦର୍ଶନ ବିବରଣୀକୁ ଅନୁବାଦ କଲା ସମୟରେ, ଏହି 'ମଧ୍ୟଦେଶ'କୁ ଚିହ୍ନଟ କରିବାରେ ପାଶ୍ଚାତ୍ୟ ପଣ୍ଡିତ ଐତିହାସିକମାନେ ଅତ୍ୟନ୍ତ ଶୋଚନୀୟଭାବେ ବିଫଳ ହୋଇଛନ୍ତି । ପଞ୍ଚମ ଶତାବ୍ଦୀର ଚୀନ ପରିବ୍ରାଜକ ଫାୟିଆନ ଅତି ସ୍ପଷ୍ଟ ଭାବରେ ତାଙ୍କ ବିବରଣୀରେ ଉଲ୍ଲେଖ କରିଛନ୍ତି ଯେ ସେ 'ମଧ୍ୟଦେଶ'ରେ ଛ'ବର୍ଷ ଅବସ୍ଥାନ କରିଥିଲେ । ମାତ୍ର ତାଙ୍କ ଗସ୍ତ ସ୍ଥାନମାନଙ୍କୁ ଚିହ୍ନଟ କଲା ସମୟରେ, ପ୍ରଥମରୁ 'ମଧ୍ୟଦେଶ'ର ଚିହ୍ନଟ ହୋଇ ନପାରିଥିବା କାରଣରୁ ସେ ସମସ୍ତ ସ୍ଥାନର ଭୌଗଳିକ ସ୍ଥିତି ଅଜ୍ଞତାବଶତଃ ଅନ୍ୟତ୍ର ସ୍ଥାନିତ ହେବା ଦ୍ୱାରା ଓଡ଼ିଶାର ପ୍ରାଚୀନ ଇତିହାସ ଯେଉଁ ଐତିହାସିକ ବିଫଳତାର ଶିକାର ହୋଇ ଶ୍ରୀହୀନ ହୋଇଛି, ତାହା ଜଣେ ଆଜି କଳନା କରିପାରିବ ନାହିଁ ।

ବୌଦ୍ଧଭିକ୍ଷୁ ହିସାବରେ ଫାହିୟାନ, ହୁଏନଂସା, ସଙ୍ଗ-ୟୁନ ଓ ଇ-ଚିଙ୍ଗ୍, ବୁଦ୍ଧଙ୍କ ଜୀବନ ସହିତ ସଂଶ୍ଳିଷ୍ଟ ସମସ୍ତ କ୍ଷେତ୍ର ପରିଦର୍ଶନ କରିବା ଏକ ସ୍ୱଭାବିକ ଘଟଣା । ମାତ୍ର ସେମାନଙ୍କ ବିବରଣୀର ଅନୁବାଦ ଏବଂ ସ୍ଥାନ ଚିହ୍ନଟ କୌଣସି ସ୍ଥଳରେ ବି ବୁଦ୍ଧଙ୍କ ଜୀବନୀ ସହିତ ସମ୍ପର୍କ ରକ୍ଷା ନକରିବା ଏକ ଆଶ୍ଚର୍ଯ୍ୟଜନକ ଘଟଣା । ଆଜି ପର୍ଯ୍ୟନ୍ତ ବୁଦ୍ଧଙ୍କର ଏକ ପୂର୍ଣ୍ଣାଙ୍ଗ ଜୀବନୀ-ଗ୍ରନ୍ଥ ପ୍ରକାଶ ନହେବା ଓଡ଼ିଶାର ପ୍ରାଚୀନ ଇତିହାସ ପାଇଁ ଅତ୍ୟନ୍ତ କ୍ଷତିକାରକ ହୋଇଛି । ଏହା ହିଁ ପାଶ୍ଚାତ ଐତିହାସିକମାନଙ୍କ ଦ୍ୱାରା ରଚିତ ପ୍ରାଚୀନ ଭାରତର ଇତିହାସ ଗ୍ରନ୍ଥଗୁଡିକରେ ବିଶୃଙ୍ଖଳା ସୃଷ୍ଟି କରିଛି । ଆମମାନଙ୍କ ଦ୍ୱାରା ପଠିତ କ୍ଲାସ୍-ରୁମ୍ ଇତିହାସ ପୁସ୍ତକରେ ଯେଉଁସବୁ ଐତିହାସିକ ତଥା ଓଡ଼ିଶା ଉପରେ ପ୍ରକାଶ ପାଇଛି, ତାହା ଏକ ବିଦ୍ରୂପମୟ ସ୍ତରରେ ରହିଛି ଯେହେତୁ ବୌଦ୍ଧସାହିତ୍ୟ, ଆଲେକ୍‌ଜାଣ୍ଡାରଙ୍କ ଭାରତ ଆକ୍ରମଣ, ଅଶୋକଙ୍କ ଶିଳାଲିପିର ତଥ୍ୟ, ଟଲେମୀଙ୍କ ଭୂଗୋଳ, ପାଣିନୀଙ୍କ ବ୍ୟାକରଣ, ଚୀନ ପରିବ୍ରାଜକମାନଙ୍କ ବିବରଣୀ, ଆରବୀୟ ବଣିକମାନଙ୍କ ଟିପ୍ପଣୀ ଏବଂ ଆଲବରୁଣୀଙ୍କ ପରିଦର୍ଶନର କାହାଣୀ ସହିତ ଶ୍ରୀଲଙ୍କା ବଂଶଗାଥାର କୌଣସି ତଥ୍ୟସହ ତାଳମେଳ ରକ୍ଷା କରୁନାହିଁ ।

ଗଣତାନ୍ତ୍ରିକ ଭାରତୀୟ ମାନଚିତ୍ରର ମଧ୍ୟଭାଗରେ ଦୁଇଟି ସମାନ୍ତରାଳ ରେଖା ଅଙ୍କନ କରି ତନ୍ମଧ୍ୟରେ ଥିବା ସମସ୍ତ ସ୍ଥାନଗୁଡ଼ିକୁ ମଝିମାଦେଶ ବା ମଧ୍ୟଦେଶ ଅନ୍ତର୍ଗତ ବୋଲି ଇତିହାସ ପୃଷ୍ଠାରେ ଦର୍ଶାଗଲା, ଯଦିଓ ମଧ୍ୟଦେଶ ଗୋଟିଏ ନାମ-ବାଚକ ବିଶେଷ୍ୟ ଏବଂ ଏହାର ଅନୁବାଦ ବ୍ୟାକରଣ ନିୟମ ଅନୁସାରେ ଠିକ୍ ମନେ ହୁଏ ନାହିଁ ।

ଫାୟିଆନ୍ ଉଡିୟାନ୍‌ରେ ପ୍ରବେଶ କରିବା ସମୟରେ ମଧ୍ୟଦେଶର ନାମ ଉଚ୍ଚାରଣ କରିଛନ୍ତି । ଉଡିୟାନ୍‌ରୁ ସେ ସଦାନଗର ଏବଂ ପରେ ସେ ଗାନ୍ଧାର ଯାତ୍ରା କରିବା କଥା ତାଙ୍କ ବିବରଣୀରେ ଉଲ୍ଲେଖ ରହିଛି । ବିଲ୍‌ଙ୍କ ଅନୁବାଦ ପୁସ୍ତକରେ କୁହାଯାଇଛି ଯେ ଫାୟିଆନ୍ ମଥୁରାରୁ ମଧ୍ୟଦେଶ ଯାତ୍ରା କଲେ ଏବଂ ମଧ୍ୟଦେଶରୁ ସଙ୍କଶକୁ ଯାଇଥିଲେ ।

ଗୟା, ପାଟଳୀପୁତ୍ର ଯାତ୍ରା କରିବା ସମୟରେ ଏହି ଚୀନ ପରିବ୍ରାଜକ ମଧ୍ୟଦେଶର ନାମ ଦେଇଛନ୍ତି । ପାଟଳୀପୁତ୍ରରୁ ସେ ଚମ୍ପା ଏବଂ ସେଠାରୁ ସେ ତାମ୍ରଲିପ୍ତ ଯିବା କଥା ତାଙ୍କ ବିବରଣୀରୁ ଜଣାପଡେ ।

ମାତ୍ର, ସାମୁଏଲ୍ ବିଲ୍ ତାଙ୍କ ଅନୁବାଦକ ପୁସ୍ତକରେ ମିଡ୍ ଇଣ୍ଡିଆ ଏବଂ ମଝିମାଦେଶକୁ ଦୁଇ ପୃଥକ ସ୍ଥାନ ହିସାବରେ ଗ୍ରହଣ କରିଛନ୍ତି । ଅର୍ଥାତ୍ ମଝିମାଦେଶ ବା ମଧ୍ୟଦେଶ ଯେଉଁଠି ଚଉଦଟି ମହାଜନପଦ ଥିବା କଥା ବୌଦ୍ଧଶାସ୍ତ୍ର ଉଲ୍ଲେଖ କରିଛି । ତାକୁ ଗୋଟିଏ ମହାଜନପଦ ହିସାବରେ ଅନୁବାଦ ପୁସ୍ତକରେ ଗ୍ରହଣ କରିବା ଦ୍ୱାରା ସମ୍ପୂର୍ଣ୍ଣ ଭାବେ ଅନୁବାଦ ପୁସ୍ତକଟି ଭ୍ରମରନ୍ଧ୍ରରେ ନିପତିତ ହୋଇଛି କହିଲେ ଆଦୌ ଭୁଲ୍ ହେବ ନାହିଁ ।

ପଞ୍ଚମ ଶତାବ୍ଦୀର ଏହି ଚୀନ୍ ପରିବ୍ରାଜକ ମଧ୍ୟଦେଶରେ ଛ'ବର୍ଷ ରହିବା ସମୟରେ ଯେଉଁସବୁ ସ୍ଥାନ ପରିଦର୍ଶନ କରିଥିଲେ, ସେସବୁଗୁଡିକ ହେଲା: ଖୋଟାନ୍, ଗୋମତି, କି–ପିନ୍, ସିଉ–ହୋ, ୟୁ–ହୁଇ, କି–ସା, ଟୋ–ଲି, ଉ–ଚାଙ୍ଗ, ସୁ–ହୋ–ଟୋ, ଗାନ୍ଧାର, ତକ୍ଷଶିଳା, ପୁରୁଷପୁର, ୟୁ–ଚି, ନା–କି, ହିଦା, ଲୋଇ, ବନା, ପିଟୁ, ମଥୁରା, ସଙ୍କଶ, କିଜୋଳ, ସକେତ, କୋଶଳ, ସେ–ୱେଇ, ପେଦେୟ, ନାପିକା, କପିଳବସ୍ତୁ, ଲୁମ୍ବିନ୍, ରାମଗ୍ରାମ, କୁଶିନଗର, ହିରଣ୍ୟବତୀ, ଲିଚାଭିସ୍, ବୈଶାଳୀ, ଆନନ୍ଦଙ୍କ ସମାଧୀ, ପାଟଳୀପୁତ୍ର, ରାଧାସ୍ୱାମୀ, ନିଲି, ନାଲୋ, ରାଜଗୃହ, ଗିରିଧରକୁଟ, କାଳାଣ୍ଡକବେଣୁବନ, ଚହଟା ବା ଚେଟି, ଗୟା, କାଶି, କୋଶାମ୍ବି, ଦକ୍ଷିଣ, ତାମ୍ରଲିପ୍ତ ଏବଂ ସିଂହଳ ପ୍ରଭୃତି ସ୍ଥାନ ।

ସପ୍ତମ ଶତାବ୍ଦୀର ଚୀନ ପରିବ୍ରାଜକ ହୁଏନଂସା ସେହିପରି ପୁସ୍କରାବତୀ ଏବଂ ଗାନ୍ଧାର ପରିଦର୍ଶନ ସମୟରେ 'ମଧ୍ୟଦେଶ'ର ନାମ ନେଇଛନ୍ତି । ସେ ଫାୟିଆନ୍‌ଙ୍କ ପରି ପୁଷ୍କରାବତୀରୁ ଓଡଖଣ୍ଡକୁ ଯାତ୍ରା ମଧ୍ୟ କରିଛନ୍ତି । ଏସବୁ ସ୍ଥାନ ପରିଭ୍ରମଣ କଲା ସମୟରେ ଚୀନ ପରିବ୍ରାଜକ 'ମଧ୍ୟଦେଶ'ର ନାମ ନେବା ଐତିହାସିକ ନୁହେଁ ବରଂ ଭୌଗଳିକ ଦୃଷ୍ଟିକୋଣରୁ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ଯାହାକୁ ଅନୁବାଦକ ପାଶ୍ଚାତ୍ୟ ପଣ୍ଡିତମାନେ ଭିନ୍ନ ମତବାଦ ହେଉ କିମ୍ବା ସ୍ଥାନ ଚିହ୍ନଟ ଭଳି ପ୍ରମାଦପୂର୍ଣ୍ଣ ଅଜ୍ଞତାବଶତଃ ଏଡେଇ ଦେଇଛନ୍ତି ।

ଓଡ଼ଖଣ୍ଡରୁ ହୁଏନଂସାଙ୍କ ଉଡିୟାନ୍ ଯାତ୍ରା ଏବଂ ସେଠାରେ 'ମଧ୍ୟଦେଶ'ର ନାମ ନେବା ଏବଂ ତତ୍‌ପରବର୍ତ୍ତୀ ସ୍ଥାନ ଯଥା କାଶ୍ମୀର, ଜଳନ୍ଧର, ମାଟିପୁର ପରିଦର୍ଶନ ସମୟରେ କ୍ରମାନ୍ୱୟରେ ସେ ଗୋଟିଏ ଭୌଗଳିକ ଖଣ୍ଡରେ ଯାତ୍ରା କରିବା ଘଟଣାକୁ ଐତିହାସିକମାନେ ଗୁରୁତ୍ୱାରୋପ କରିନାହାଁନ୍ତି ।

ଏଚ୍.ଏ.ଗାଇଲ୍ ତାଙ୍କ ରଚିତ ପୁସ୍ତକରେ ଅତି ସ୍ପଷ୍ଟ ଭାଷାରେ ଯେ ରେମୁଷାଟ୍, ବିଲ୍ ଏବଂ ଲେଗି, ଚୀନ ପରିବ୍ରାଜକମାନଙ୍କ ରିପୋର୍ଟକୁ ଯେଉଁପରି ଭାବରେ ଭିନ୍ନ ଭିନ୍ନ ଅଧ୍ୟାୟରେ ସନିବେଶିତ କରିଛନ୍ତି, ତାହା ସମ୍ପୂର୍ଣ୍ଣ ଭୁଲ୍ । କାରଣ ଚୀନ୍ ପରିବ୍ରାଜକମାନଙ୍କ ଦର୍ଶନ ସ୍ଥାନ 'Continious', ଅର୍ଥାତ କ୍ରମାଗତ ଥିଲା, ଗୋଟିଏ ସ୍ଥାନ ପରବର୍ତ୍ତୀ ସ୍ଥାନଠାରୁ ଦୂରତ୍ୱରେ ନଥିଲା । ଗାଇଲ୍‌ଙ୍କ ଏହି ଶବ୍ଦକୁ ପରବର୍ତ୍ତୀ ଐତିହାସିକମାନେ ଗୁରୁତ୍ୱ ଦେଲେ ନାହିଁ ।

ସେହିପରି ଥୋମାସ୍ ୱାଟରସ୍ ପୁସ୍ତକରେ ମୁଖବନ୍ଧରେ ଟି.ଡି.ବ୍ଲୁ ରିସ୍‌ଡାଭିଡସ୍ ଲେଖିଛନ୍ତି ଯେ ବିଲ୍‌ଙ୍କ ଅନୁବାଦକ ପୁସ୍ତକରେ ଅନେକ ଭୁଲ୍ ରହିଛି । ମାତ୍ର, ଏସବୁକୁ ଆମର ଐତିହାସିକମାନେ ଏଡାଇ ଦେଇ ପ୍ରାଚୀନ ଭାରତର ଇତିହାସର ବିପର୍ଯ୍ୟୟ ସ୍ତରକୁ ଆଦୌ ଦୃଷ୍ଟି ଦେଇନାହାନ୍ତି ।

ଯେତେବେଳେ ହୁଏନଂସା ପୁଣ୍ଡ୍ରବର୍ଦ୍ଧନ ଗସ୍ତ କଲେ, ସେଠାରେ ଅନୁବାଦକ ଏହି ଗ୍ରାମଟି ଯେ ମଧ୍ୟଦେଶ ଅନ୍ତର୍ଗତ ଏବଂ ମଧ୍ୟଦେଶର ଗୋଟିଏ ଭୌଗଳିକ ସୀମାରେଖାକୁ ଚିହ୍ନଟ କରୁଛି, ତାହା ପ୍ରକାଶ କଲେ ନାହିଁ । ଏଥିରୁ ସ୍ପଷ୍ଟ ହେଉଛି ଯେ ପାଶ୍ଚାତ୍ ପଣ୍ଡିତମାନଙ୍କୁ ମଧ୍ୟଦେଶର ଭୌଗଳିକ ସ୍ଥିତି ଏବଂ ଏହାର ଭୌଗଳିକ ସୀମାରେଖା ଉପରେ କୌଣସି ତଥ୍ୟ ଜଣା ନଥିଲା କିମ୍ବା ଗ୍ରାମଗୁଡିକ ଚିହ୍ନଟ ନହେବା କାରଣରୁ ବ୍ୟତିକ୍ରମକୁ ଏଡାଇ ଦେବା ଉଦ୍ଦେଶ୍ୟରେ ସେସବୁ ସ୍ଥାନର ସ୍ୱତନ୍ତ୍ର ପରିଚୟକୁ ଇତିହାସ ପୃଷ୍ଠାରୁ ବାଦ୍ ଦେଇଛନ୍ତି ।

ହୁଏନଂସା ପୁଣ୍ଡ୍ରବର୍ଦ୍ଧନରୁ କାମରୂପ ଏବଂ ସମତାତ ପରିଦର୍ଶନ ସାରି ତାମ୍ରଲିପ୍ତ ଯାଇଥିଲେ । ଫାୟିଆନ୍‌ଙ୍କ ରିପୋର୍ଟ ଅନୁଯାୟୀ ତାମ୍ରଲିପ୍ତ 'ମଧ୍ୟଦେଶ'ର ଅନ୍ତର୍ଗତ । ତାମ୍ରଲିପ୍ତ ଗସ୍ତ ପରେ ଉଡ୍ର ଏବଂ କନ୍ୟୋଧ ପରିଦର୍ଶନ ସମୟରେ ଏହି ପରିବ୍ରାଜକ ପୁନର୍ବାର ମଧ୍ୟଦେଶର ନାମ ନେଇଛନ୍ତି । ତେଣୁ ଏ ସମସ୍ତ ସ୍ଥାନ ମଧ୍ୟଦେଶ ଅନ୍ତର୍ଗତ, କିନ୍ତୁ ଇତିହାସ ଏହାକୁ ଚିହ୍ନଟ ନହେବା କାରଣରୁ ଏମାନଙ୍କୁ ସେମାନଙ୍କ ପ୍ରକୃତ ପରିଚୟରୁ ପୃଥକ କରିଛି ।

କୋଶଳକୁ ଗଲାବେଳେ ହୁଏନଂସା କଳିଙ୍ଗ ପରିଦର୍ଶନ କରିଥିଲେ । ମାତ୍ର ଏଠାରେ କଳିଙ୍ଗକୁ ଏକ ମହାଜନପଦ ନୁହେଁ, ଏକ ସାଧାରଣ ସ୍ଥାନ ହିସାବରେ ଗ୍ରହଣ କରାଯାଇଛି । ସେଥିପାଇଁ ଆଉ କିଛି ଐତିହାସିକ ଏହା 'କଳିଙ୍ଗ' ନୁହେଁ, ବରଂ 'କୁଳିଙ୍ଗ' ହେବ ଏବଂ ଏହି 'କୁଳିଙ୍ଗ' ପଞ୍ଜାବରେ ହୋଇଥାଇ ପାରେ ବୋଲି କହିବାକୁ କୁଣ୍ଠାବୋଧ କରିନାହାଁନ୍ତି ।

ହୁଏନ୍‌ସାଙ୍ଗ ପରବର୍ତ୍ତୀ ଗସ୍ତ ସମୟରେ ଆନ୍ଧ୍ର, ଦ୍ରାବିଡ, ଅତ୍ୟନବକୁଳ, ପିଟାଶାଳ ଏବଂ ବର୍ଣ୍ଣ ପ୍ରଭୃତି ସ୍ଥାନ ଯାହା ଅନୁବାଦିତ ବିବରଣୀରେ ଦର୍ଶାଯାଇଛି, ତାହା 'ମଧ୍ୟଦେଶ' ଅନ୍ତର୍ଗତ ହେଲେ ମଧ୍ୟ କିପରି ଚୀନ ଭାଷାରୁ ଅନୁବାଦ କଲା ସମୟରେ ଇଂରାଜୀରେ ଏକ ବିକୃତକରଣର ଶୀକାର ହୋଇଛି, ତାହା ବିଜ୍ଞ ପାଠକମାନଙ୍କ ଦୃଷ୍ଟିକୁ ଭିନ୍ନ ଏକ ସ୍ତରରେ ଦର୍ଶାଇବାକୁ ପ୍ରୟାସ କରିବି ।

'ମଧ୍ୟଦେଶ'ର ଉତ୍ତର ଦିଗରେ ଉଷିଧରାଜ ପର୍ବତ ଥିବା କଥା ବୌଦ୍ଧ ସାହିତ୍ୟ ସ୍ୱୀକାର କରିଛି । ଏହି ଉଷିଧରାଜ ଉପରେ ଯଦି ବାସ୍ତବରେ ଇତିହାସ ସମ୍ମତ ମତକୁ ଉଦ୍ଧାର କରାଯାଇ ପ୍ରକାଶ କରାଯାଏ, ବୋଧହୁଏ ତାହା ହିଁ ଓଡ଼ିଶାର ପ୍ରାଚୀନତମ ଇତିହାସର ମହକକୁ ଏକାକୀ ପ୍ରଜ୍ଜ୍ୱଳିତ କରିବାରେ ଯଥେଷ୍ଟ ସହାୟକ ହେବ ।

ପ୍ରାଚୀ ମହାତ୍ମ୍ୟ ସାରଳା ମହାଭାରତ ପରି ଏକ ସ୍ଥାନୀୟ ପୁରାଣ, ଯାହାର ପ୍ରକୃଷ୍ଟ ବୈଶିଷ୍ଟ୍ୟ ଏବେ ବି ଅନାଲୋଚିତ ଅବସ୍ଥାରେ ରହିଛି । ଏଥିରେ ପ୍ରାଚୀ ନଦୀର ଅବବାହିକାରେ ଥିବା ସମସ୍ତ ସ୍ଥାନର ଐତିହାସିକ ବିବରଣୀ କାବ୍ୟଛଳରେ ପ୍ରକାଶ ପାଇଛି । ଅଷ୍ଟ ଏବଂ ଦ୍ୱାଦଶ ଶମ୍ଭୁଙ୍କ ସହିତ ମାଧବ ପୀଠମାନଙ୍କ ନାମ ମଧ୍ୟ ଉଲ୍ଲେଖ ରହିଛି । ଏଥିରେ ଥିବା ଦୁଇଟି ନାମକୁ ମାତ୍ର ଉଦ୍ଧାର କରିବା ଉଚିତ ହେବ । ଶୋଭନେଶ୍ୱର ମହାଦେବ ଏବଂ ଉଷିଆଁ ଗ୍ରାମର ଐତିହାସିକ ସ୍ଥିତି । ଗୋଟିଏ ପ୍ରାଚୀ ନଦୀ କୂଳରେ ଏବଂ ଅନ୍ୟଟି ଦେବୀ ନଦୀ କୂଳରେ ।

ଏହି ଉଷିଆଁ ଗ୍ରାମଟି ହେଉଛି ଉଷିଧରାଜ ପର୍ବତର ସଙ୍କେତ ଏବଂ ଶୋଭନେଶ୍ୱର ମହାଦେବ ହେଉଛନ୍ତି ଶୋଭାବତୀ ନଗରର ପୀଠଦେବତା ।

ଅଡଶପୁର ନିକଟବର୍ତ୍ତୀ ତୁନ୍ଦା ଓ ଉତ୍ତରଣ ଗ୍ରାମଦ୍ୱୟ ଯଥାକ୍ରମେ ଥୁଣ ଏବଂ ଉପଥୁଣ ଗ୍ରାମର ପ୍ରାଚୀନ ପରିଚୟକୁ ଏବେ ବି ଅକ୍ଷୁଣ୍ଣ ରଖିଛନ୍ତି ଏବଂ କାକଟପୁର ନିକଟବର୍ତ୍ତୀ କଜଳପାତିଆ ଗ୍ରାମଟି ପୂର୍ବର କାଜଙ୍ଗଳ ଗ୍ରାମ ଇତିହାସକୁ ଆଜି ବି ନିଜ ବକ୍ଷରେ ସାଇତି ରଖିଛି ।

ଶ୍ରୀଲଙ୍କାର ବଂଶଗାଥାରେ ଥିବା ତଥ୍ୟ ଅନୁଯାୟୀ ମଝିମାଦେଶର ଦକ୍ଷିଣରେ ମାଲ୍ଲରାଜ୍ୟ ଏବଂ ଉତ୍ତରକୁରୁ ରାଜ୍ୟ ଥିଲା । ଏହି ସାମାନ୍ୟ ତଥ୍ୟ କିପରି ଆମର ପୌରାଣିକ ତଥ୍ୟ ସହ ସମତ ରକ୍ଷା କରିଛି, ତାହା ବେଶ୍ ଗୁରୁତ୍ୱପୂର୍ଣ୍ଣ ଏବଂ ଆମର ପ୍ରାଚୀନ ଇତିହାସ ପାଇଁ ଅମୂଲ୍ୟ ସମ୍ପଦ ।

ଶ୍ରୀଲଙ୍କାର ବଂଶଗାଥା ଅନୁଯାୟୀ ସେଠାରେ ଅନୁରାଧାପୁରକୁ ମଝିମାଦେଶର ଏକ ଅଂଶ ବୋଲି ଦର୍ଶାଯାଇଛି । ଏହି ଲେଖାର ଐତିହାସିକ ତାତ୍ପର୍ଯ୍ୟ ହେଲା ଯେତେବେଳେ ବୁଦ୍ଧଙ୍କ ଦନ୍ତଧାତୁ କଳିଙ୍ଗରୁ ଯାଇ ସେଠାରେ ଅବସ୍ଥାପନା କରାଗଲା, ତାହା ଇତିହାସରେ ଏବଂ ବୌଦ୍ଧ ଶାସ୍ତ୍ରରେ ଏକ ପବିତ୍ର ସ୍ଥାନ ରୂପେ ପରିଗଣିତ ହେଲା । ଯେଉଁଥି ପାଇଁ ଅନୁରାଧାପୁରକୁ ମଝିମାଦେଶ ଅନ୍ତର୍ଗତ ବୋଲି ଦର୍ଶାଯାଇଛି । ମଧ୍ୟଦେଶର ଅନ୍ୟାନ୍ୟ ପବିତ୍ର ସ୍ଥାନଗୁଡିକ ସହ ସମତାରକ୍ଷା କାରଣ ଯୋଗୁଁ, ଏଭଳି ଶାସ୍ତ୍ରୀୟ ମାନ୍ୟତା ଅନୁରାଧାପୁରକୁ ଦିଆଯାଇଛି । ଏଠାରେ ମଧ୍ୟଦେଶର ଭୌଗଳିକ ସୀମାରେଖା ସହିତ କୌଣସି ସମ୍ପର୍କ ନାହିଁ । ଏହା ଏକ ପରବର୍ତ୍ତୀ ଘଟଣା ।

ପୂର୍ବେ ଭାରତୀୟମାନେ ଗଙ୍ଗା ନଦୀର ଅବବାହିକାକୁ ମଧ୍ୟଦେଶ ବୋଲି କହୁଥିଲେ । ଏଥିରେ ପାଞ୍ଚଣ ନାମକ ଏକ ନଦୀ ପ୍ରବାହିତ ହେଉଥିଲା ଏବଂ ଏଥିରେ ମଥୁରା ନାମକ ଏକ ରାଜ୍ୟ ମଧ୍ୟ ଥିଲା । ଏହି ପାଞ୍ଚଣ ନଦୀ ଏବଂ ସିନ୍ଧୁ ନଦୀର ଦକ୍ଷିଣକୁ ଥିବା ସମସ୍ତ ରାଜ୍ୟ ମଧ୍ୟଦେଶର ଅନ୍ତର୍ଗତ ଥିଲା ଏବଂ ଏହି ଭୌଗଳିକ ପୀଠରେ ସୁମେରୁ ପର୍ବତ ଏବଂ ଗନ୍ଧମାର୍ଦ୍ଦନ ପର୍ବତ ମଧ୍ୟ ଥିଲା । ଏ ସ୍ଥାନକୁ ପୃଥିବୀର ଅନ୍ୟାନ୍ୟ କ୍ଷେତ୍ରରୁ ବହୁଳ ପର୍ଯ୍ୟଟକଙ୍କ ଆଗମନ ଥିଲା । ସୁମେରୁ ପର୍ବତର ତେଜମୟ ଦୀପ୍ତି ସମସ୍ତଙ୍କୁ ଆହ୍ୱାନ କରିଥିଲା । ବୁଦ୍ଧଙ୍କ ଜନ୍ମକ୍ଷେତ୍ର ରୂପେ ଏହାର ସ୍ୱର୍ଗୀୟ ସୁଷମା କାହିଁ କେଉଁଠୁ ପର୍ଯ୍ୟଟକମାନଙ୍କୁ ଏଠାକୁ ଆକୃଷ୍ଟ କରିଥିଲା । ଆଲେକ୍‌ଜାଣ୍ଡାରଙ୍କଠାରୁ ଆରମ୍ଭ କରି ଆଲବରୁଣୀଙ୍କ ପର୍ଯ୍ୟନ୍ତ ସମସ୍ତେ ମଧ୍ୟଦେଶକୁ ହିଁ ଆସିଥିଲେ, ଅନ୍ୟତ୍ର ନୁହେଁ । ସରସ୍ୱତୀ ନଦୀ ଥିଲା ଏହି ଐତିହାସିକ ପବିତ୍ର ଭୂଖଣ୍ଡର ଅନ୍ୟ ଏକ ପରିଚୟ, ଯାହାକୁ ଐତିହାସିକମାନେ ତପ୍ତ ବାଲୁକା ଶଯ୍ୟାରେ ମରିଗଲା, ହଜିଗଲା ବୋଲି ଦର୍ଶାଇ ପ୍ରାଚୀ–ସରସ୍ୱତୀକୁ ଆଖି ଆଗରେ ଦେଖି ମଧ୍ୟ ଏହାର ଇତିହାସକୁ ସରସ୍ୱତୀ ନଦୀର ଇତିହାସ ସହିତ ଯୋଡିବାକୁ ଯତ୍‌କିଞ୍ଚିତ ପ୍ରୟାସ ମଧ୍ୟ କଲେ ନାହିଁ କିମ୍ବା ପ୍ରାଚୀ ମହାତ୍ମ୍ୟର ଐତିହାସିକ ତଥ୍ୟକୁ ଗ୍ରହଣ ମଧ୍ୟ କଲେ ନାହିଁ ।

ମନୁଙ୍କର ବ୍ରହ୍ମବର୍ତ୍ତ, ବ୍ରହ୍ମର୍ଷିଦେଶ ଓ ବ୍ରହ୍ମବସ୍ତୁ, ମଧ୍ୟଦେଶ ଏବଂ ଆର୍ଯ୍ୟାବର୍ତ୍ତର ସଠିକ୍ ନିରୂପଣ ମଧ୍ୟ ଐତିହାସିକମାନେ କରିପାରି ନାହାଁନ୍ତି । ବୁଦ୍ଧଙ୍କ ଚଲାବୁଲା ରାସ୍ତାର କିଛି ମେଢ଼୍‌କାର ତଥ୍ୟ ଶ୍ରୀଲଙ୍କାର ବଂଶଗାଥାରେ ମହଜୁଦ୍ ଥିବାବେଳେ, ଏହାକୁ ଚୀନ ପରିବ୍ରାଜକମାନଙ୍କ ବିବରଣୀ ଅନୁବାଦରେ ସ୍ଥାନିତ କରାଗଲା ନାହିଁ । ଗୋଟିଏ ସ୍ଥାନର ଦୂରତାକୁ ଅନ୍ୟ ଗୋଟିଏ ସ୍ଥାନର ଦୂରତା ସହ ଯୋଡିବା ବା ମାପିବା ବେଳେ ବୌଦ୍ଧ

ସାହିତ୍ୟରେ ଥିବା ଏହି ଦୁଇ ସ୍ଥାନର ଦୂରତାକୁ ହିସାବକୁ ବା ଇତିହାସ ପୃଷ୍ଠାକୁ ନିଆଗଲା ନାହିଁ ।

ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ହେଲା ଟଲେମୀଙ୍କ ଭୂଗୋଳ ଏବଂ ଆଲ୍‌ବରୁଣୀଙ୍କ ବିବରଣୀକୁ ମିଳାଇ ମିଶାଇ ମଧ୍ୟଦେଶର ଐତିହାସିକ ସ୍ଥିତିକୁ ଏବଂ ଭୌଗଳିକ ସୀମାରେଖାକୁ ଚିହ୍ନଟ କରିବାର ପ୍ରୟାସ । ଏଇ ଦୁଇ ପର୍ଯ୍ୟଟକଙ୍କ ଭାରତ ବିବରଣୀରେ ସନ୍ନିହିତ ତଥ୍ୟାବଳୀ ଯେଉଁ ରହସ୍ୟ ଉନ୍ମୋଚିତ କରିବ, ତାହା ହିଁ ହେଉଛି ଓଡ଼ିଶାର ପ୍ରାଚୀନତମ ଇତିହାସ, ଯାହା ଆଜି ପର୍ଯ୍ୟନ୍ତ ଆମ ଇତିହାସ ପୃଷ୍ଠାକୁ ଆସିପାରି ନାହିଁ ।

ଭାରତ ଓ ମଧ୍ୟଦେଶ ଉପରେ ଟଲେମୀ କିଛି ମାନଚିତ୍ର ଅଙ୍କନ କରିଛନ୍ତି ଏବଂ ସେଥିରେ ସେ ଲଙ୍ଗିଚୁଡ୍ ଏବଂ ଲାଟିଚୁଡ୍‌ର ସାହାଯ୍ୟ ନେଇ ସ୍ଥାନଟିର ଚିହ୍ନଟ କରିବାର ଏକ ସୂକ୍ଷ୍ମ ପ୍ରକ୍ରିୟା ଦର୍ଶାଇଛନ୍ତି । ତାଙ୍କର ସମସ୍ତ ମାନଚିତ୍ର ଏବଂ ଏହାର ଡିଗ୍ରୀ ପାଶ୍ଚାତ୍ୟ ପଣ୍ଡିତମାନଙ୍କ ଅବଗତିକୁ ସ୍ପର୍ଶ କରିପାରିଲା ନାହିଁ । ଯାହା ଫଳରେ ଟଲେମୀଙ୍କ ଭୂଗୋଳକୁ ଭୂୟସୀ ପ୍ରଶଂସା କରି ତାଙ୍କୁ ପୃଥିବୀର ପ୍ରଥମ ଭୌଗଳିକ ଉପାଧିରେ ମଣ୍ଡନ କରିଥିବା ନେତୃସ୍ଥାନୀୟ ପାଶ୍ଚାତ୍ୟ ଐତିହାସିକମାନେ ଯେ ତାଙ୍କର ଭୂଗୋଳକୁ ପ୍ରତ୍ୟକ୍ଷଭାବେ ପ୍ରତ୍ୟାଖ୍ୟାନ କରିଛନ୍ତି, ଏ ଟିପ୍ପଣୀ ଇତିହାସ ପୃଷ୍ଠାକୁ ସଠିକ୍‌ଭାବେ ଆସିପାରି ନାହିଁ ।

ଆଲବରୁଣୀଙ୍କ ଭାଷାରେ କନୋଜକୁ ଘେରି ରହିଥିବା ରାଜ୍ୟ ସମୂହ ହେଉଛି ଭାରତର ମଧ୍ୟସ୍ଥାନ । ଯାହାକୁ ମଧ୍ୟଦେଶ କୁହାଯାଏ । ଏହା ଭାରତର ମଧ୍ୟସ୍ଥଳ ମଧ୍ୟ । ଏହା ସମୁଦ୍ର ଏବଂ ପର୍ବତମାନଙ୍କଠାରୁ ସମାନ ଦୂରତାରେ ଅବସ୍ଥିତ । ଶୀତଳ ଏବଂ ଉଷ୍ଣକ୍ଷେତ୍ରମାନଙ୍କର ମଧ୍ୟଭାଗରେ ଅବସ୍ଥିତ ଏବଂ ପୂର୍ବ ଏବଂ ପଶ୍ଚିମ ସୀମାର ମଧ୍ୟବର୍ତ୍ତୀ ସ୍ଥାନ । ଏହା ଭାରତର ରାଜନ୍ୟବର୍ଗ ଓ ପଣ୍ଡିତ ଏବଂ ଯୋଦ୍ଧାମାନଙ୍କର ପବିତ୍ର ରାଜନୈତିକ ପୀଠ । ଆଲବରୁଣୀ ଏହିପରି ଭାବେ ମଧ୍ୟଦେଶର ସଂଜ୍ଞା ପ୍ରଦାନ କରିଥିବା ସମୟରେ ଏହାର ଯେଉଁ ମାନଚିତ୍ରଟି ତାଙ୍କ ଟିପ୍ପଣୀରେ ପ୍ରକାଶ କରିଛନ୍ତି, ତାହା ଅତ୍ୟନ୍ତ ଉତ୍ସାହଜନକ ।

| | | |
|---|---|---|
| ନାଗଦ୍ୱୀପ | ଦକ୍ଷିଣ<br>ଗବରମତୀ | ତାମ୍ରବର୍ଣ୍ଣ |
| ପଶ୍ଚିମ/ସୌମ୍ୟ | ଇନ୍ଦ୍ରଦ୍ୱୀପ<br>ବା ମଧ୍ୟଦେଶ | କଶେରୁମତୀ/ପୂର୍ବ |
| ଗାନ୍ଧାର | ଉତ୍ତର | ନଗରସମବୃତ୍ତି |

ଆଲବରୁଣୀଙ୍କର ଏହି ମାନଚିତ୍ରକୁ ଟଲେମୀଙ୍କ ମାନଚିତ୍ର ସହ କାହିଁ କେଉଁଠି ତୁଳନା କରାଯାଇଥିବା ଦୃଷ୍ଟିକୁ ଆସେ ନାହିଁ । ମାତ୍ର, ସେମାନଙ୍କ ଉଭୟ ସମ୍ପୂର୍ଣ୍ଣ ନିର୍ଭୁଲ ଏବଂ ସମାନ ।

ଏହା ହିଁ ହେଉଛି ଓଡ଼ିଶାର ପ୍ରାଚୀନତମ ଭୌଗଳିକ ସ୍ୱରୂପ, ଯାହା ଅନାଲୋଚିତ ହୋଇ ଏଯାବତ ଆମର ଇତିହାସ ପୃଷ୍ଠାକୁ ଆସିପାରି ନହିଁ ।

ପୂର୍ବତନ ବିଭାଗୀୟ ମୁଖ୍ୟ, ବୁଦ୍ଧିଷ୍ଟ ଷ୍ଟଡିଜ୍
ଜି.ଇ–୩, ଭି.ଏସ୍.ଏସ୍.ନଗର
ଭୁବନେଶ୍ୱର–୭

❖ ❖ ❖

# ମୁଣ୍ଡା ସମ୍ପ୍ରଦାୟର ମହାପର୍ବ ସାରହୁଲ

**ବେଣୁଧର ଦାସ**

ପୃଥିବୀ ପୃଷ୍ଠରେ ଆଦିମ ମାନବମାନଙ୍କର ଆବିର୍ଭାବ କେବେ ହୋଇଅଛି, ତା'ର ସଠିକ୍ ବିବରଣୀ ପ୍ରଦାନ କରିବା ସାମ୍ପ୍ରତିକ ସମୟରେ ଅସମ୍ଭବ । ବୈଜ୍ଞାନିକମାନଙ୍କ ଗବେଷଣାରୁ ପ୍ରତୀୟମାନ ହୁଏ ଯେ ଲକ୍ଷ ଲକ୍ଷ ବର୍ଷ ପୂର୍ବରୁ ଆଦିମାନବର ଜନ୍ମ । ପୁରାତନ ପ୍ରସ୍ତର ଯୁଗ ଏବଂ ନୂତନ ପ୍ରସ୍ତର ଯୁଗ ଅତିବାହିତ ହେବାପରେ କ୍ରମ ବିବର୍ତ୍ତନବାଦରେ ଶିକ୍ଷା, ସଂସ୍କୃତି ଓ ଭାଷାର ବିକାଶ ଏବଂ ସମାଜ ଗଠନ ହୋଇପାରିଛି । ଆଦିମବାସୀମାନେ ସୂର୍ଯ୍ୟଙ୍କୁ ପରମ ପିତା ଏବଂ ପୃଥିବୀକୁ ମାତା ରୂପେ ପୂଜା ଆରାଧନା କରନ୍ତି । ସୂର୍ଯ୍ୟଙ୍କ କିରଣ ପୃଥିବୀ ପୃଷ୍ଠରେ ବିଛୁରୀତ ହେବାପରେ ସେମାନେ ଦଳ ଦଳ ହୋଇ ଖାଦ୍ୟ ଅନ୍ୱେଷଣରେ ଭିନ୍ନ ଭିନ୍ନ ଜଙ୍ଗଲ, ପାହାଡ, ଝରଣା, ନଦୀ କୂଳକୁ ଯାଆନ୍ତି । ସୂର୍ଯ୍ୟ ଅସ୍ତଗାମୀ ହେବା ପୂର୍ବରୁ ନିଜ ନିଜ କୁଡିଆକୁ ଫେରିଆସନ୍ତି । ଏହାହିଁ ଥିଲା ଆଦିମ ମାନବଙ୍କର ନିତ୍ୟନୈମିତିକ କାର୍ଯ୍ୟ । ଆଦିମାନବ ପ୍ରଥମେ ଠାର ବା ସଙ୍କେତ, ତା'ପରେ ଧ୍ୱନି ବା ସ୍ୱର ଦ୍ୱାରା ନିଜର କାର୍ଯ୍ୟ ହାସଲ କରିପାରିଲା ।

ଆଦିମାନବ ତା'ର ସ୍ୱରଦ୍ୱାରା ନିଜର ହୃଦ୍‌ଗତ ଚିନ୍ତା ଓ ଚେତନାରୁ ଭାଷା ଆବିଷ୍କାର କଲା । ଏହି ସ୍ୱର ଭିନ୍ନ ଭିନ୍ନ ପକ୍ଷୀମାନଙ୍କର ରାବକୁ ଅନୁକରଣ ଓ ସଙ୍କେତକୁ ଅଭିବ୍ୟକ୍ତ କରି ଶବ୍ଦଦ୍ୱାରା ଏକ ଭାଷା ସୃଷ୍ଟି କଲା । ଦୀର୍ଘଦିନ ଅତିବାହିତ ହେବାପରେ ସଙ୍କେତ ଓ ସ୍ୱରରୁ ଭାଷାକୁ ଚିତ୍ର ମାଧ୍ୟମରେ ପରସ୍ପର ମଧ୍ୟରେ ଭାବ ବିନିମୟର ଆଦାନ ପ୍ରଦାନ ହେଲା । ଆଦିମାନବର ହୃଦଗତ ଭାବକୁ ତିନିଗୋଟି ଭାଗରେ ବିଭକ୍ତ କରାଯାଇଛି । ପ୍ରଥମେ ସଙ୍କେତ, ଶବ୍ଦ ଓ ଲିପି ଦ୍ୱାରା ପରିପ୍ରକାଶ ହୋଇଛି । ମାନବ ସମାଜର ଜ୍ଞାନ ଅଭିବୃଦ୍ଧି ନିମନ୍ତେ ଏହି ତିନୋଟି ଧାରାକୁ ବିଭିନ୍ନ ରୂପରେ ରୂପାୟିତ କରି ସଭ୍ୟ ଜଗତ ସୃଷ୍ଟି ହେଲା । ମଣିଷର ଅଭିବ୍ୟକ୍ତକୁ ନେଇ ସଂକେତରୁ ନୃତ୍ୟ, ଶବ୍ଦରୁ ଭାଷା, ସଂଗୀତ ଏବଂ ଲିପିରୁ ଚିତ୍ରକଳା ଆବିଷ୍କାର ହେଲା ।

ଆଦିମ ମାନବମାନଙ୍କର ନୃତ୍ୟକଳା ଉତ୍ପତ୍ତି ସମ୍ପର୍କରେ ଅଦ୍ୟାବଧି ବିଭିନ୍ନ ମତ ଅଛି । ସେଥିମଧ୍ୟରୁ ପ୍ରଥମେ ଅଙ୍ଗଭଙ୍ଗୀ । ଏହା କେତେକାଂଶରେ ଆଦିମାନବଙ୍କ ଦୈନନ୍ଦିନ କର୍ମ ଓ କଳାରୁ ପ୍ରତୀୟମାନ ହୁଏ । ଯାହାକି ମାଲକାନଗିରି ଜିଲ୍ଲାର ବଣ୍ଡା ବଂଶୋଦ୍ଭବ ଏବଂ ଛୋଟନାଗପୁର ଅଞ୍ଚଳର ସରଣ୍ଡା, ସିଂହଭୂମ, ସାନ୍ତାଳ ପ୍ରଗଣା ଅଞ୍ଚଳରେ ଘଞ୍ଚଜଙ୍ଗଲ, ପାହାଡ ଘେରା ଅଞ୍ଚଳରେ ବସବାସ କରୁଥିବା ହୋ, ବିହ୍ଲୋର, ସାନ୍ତାଳ, ମୁଣ୍ଡା ଆଦିଙ୍କୁ ଅନୁଧ୍ୟାନ କଲେ ପ୍ରାଚୀନ କିମ୍ବଦନ୍ତୀ ପ୍ରତୀୟମାନ ହୁଏ ।

ଗବେଷକମାନଙ୍କ ମତରେ ଭୂପୃଷ୍ଠରେ ଯେତେବେଳେ ମାନବ ସଭ୍ୟତା ପ୍ରକାଶ ପାଇଲା କେବଳ ଜୀବନ ଧାରଣ ନିମନ୍ତେ ପଶୁ, ପକ୍ଷୀ ଆଦି ଶିକାର କରି ଜଙ୍ଗଲରୁ ଫଳମୂଳ ସଂଗ୍ରହ କରି ନିଜର କ୍ଷୁଧା ନିବାରଣ କଲେ । ଦୀର୍ଘଦିନ ସଂଘବଦ୍ଧ ଭାବେ ଜୀବନଯାପନ ଖାଦ୍ୟ ଅନ୍ୱେଷଣ ସମୟରେ ହିଂସ୍ର ଜନ୍ତୁମାନଙ୍କ ଆକ୍ରମଣର ସମ୍ମୁଖୀନ ହେଉଥିଲେ । ହିଂସ୍ର ଜନ୍ତୁମାନେ ନିଜ ଜୀବନର ସୁରକ୍ଷା ନିମନ୍ତେ ପ୍ରତି ଆକ୍ରମଣ କଲେ । ଅନ୍ଧକାର ମଧ୍ୟରେ ମନୁଷ୍ୟ ନିଜ ଜୀବନକୁ ଏକାକୀ ସୁରକ୍ଷା ରଖି ନପାରି ସଂଘବଦ୍ଧ ଭାବରେ ଜୀବନଯାପନ କରିବାକୁ ଶ୍ରେୟ ମଣିଲେ । ନିରାପଦରେ ବସବାସ ନିମନ୍ତେ ଅଗ୍ନି ଓ ଶବ୍ଦ ବ୍ୟବହାର କରି ହିଂସ୍ର ଜନ୍ତୁମାନଙ୍କୁ ଘଉଡାଇ ପାରିଲେ । କାଳକ୍ରମେ ରାତ୍ରିରେ ଉଜାଗରରେ ଅତିଷ୍ଠ ହେବାରୁ, ଖରା, ବର୍ଷା, ଶୀତକାକରରୁ ରକ୍ଷା ପାଇବା ନିମନ୍ତେ ପାହାଡର ଗୁମ୍ଫା, ପତ୍ରର କୁଡିଆ, ଗଛ ଉପରେ ମଞ୍ଚା ପ୍ରସ୍ତୁତ କରି ପାରିବାରିକ ଓ ସଂଘବଦ୍ଧ ଜୀବନ ଅତିବାହିତ କରିବାକୁ ଲାଗିଲେ । ହଜାର ହଜାର ବର୍ଷ ପୂର୍ବରୁ ଆଦିମାନବ

ବିଭିନ୍ନ ଅଞ୍ଚଳକୁ ଯାଇ ପ୍ରଥମେ ଯାଯାବର ରୂପେ ପରେ ସ୍ଥାୟୀ ବାସିନ୍ଦାଭାବେ ବସବାସ କରିବାକୁ ପସନ୍ଦ କଲେ । ସେମାନଙ୍କ ମଧ୍ୟରୁ ବିଭିନ୍ନ ଦଳରେ ବିଭକ୍ତ ହୋଇ ଭିନ୍ନ ଭିନ୍ନ ଦିଗକୁ ଗତି କଲେ । ପରବର୍ତ୍ତୀ ସମୟରେ ଗୋଷ୍ଠୀର ସୂତ୍ରପାତ ହେଲା । ଛୋଟନାଗପୁର ଅଞ୍ଚଳରେ ମୁଣ୍ଡାମାନଙ୍କ ବଂଶୋଦ୍ଭବଙ୍କ ବିଷୟ ଏଠାରେ ଚର୍ଚ୍ଚା କରାଯାଉ ।

ମୁଣ୍ଡା ସମ୍ପ୍ରଦାୟର ଲୋକମାନେ ତିନି ଭାଗରେ ବିଭକ୍ତ ଯଥା: ଆଷ୍ଟିକ, ମୁଣ୍ଡା ଓ କୋହ୍ଲ । ଏମାନଙ୍କ ମଧ୍ୟରେ ଭାଷାଗତ, ସଂସ୍କୃତିଗତ ଓ ଭାବଗତ ଜୀବନ ପ୍ରାଣାଳୀ ବା ବୈବାହିକ ସମ୍ପର୍କ ପ୍ରାୟତଃ ସମାନ ପରିଲକ୍ଷିତ ହୁଏ । ଆଦିମ ଅଧିବାସୀମାନଙ୍କର ଜନପ୍ରବାହ କେବଳ ଭାରତରେ କାହିଁକି ଇଣ୍ଡୋନେସିଆ, ଚୀନ, ତିବ୍ବତ, ବ୍ରହ୍ମଦେଶ, ମାଳୟ, ଆଣ୍ଡାମାନ ନିକୋବର, ପଲିନେସିଆ ଓ ଅଷ୍ଟ୍ରେଲିଆ ଆଦି ଦେଶ ଏବଂ ବିଭିନ୍ନ ମହାଦେଶରେ ମଧ୍ୟ ଦେଖିବାକୁ ମିଳେ । ଏମାନଙ୍କର ଭାଷାର ବୋଲି ବା ଉଚ୍ଚାରଣ ସ୍ଥାନ ବିଶେଷରେ ପୃଥକ ଥିବାର ପରିଲକ୍ଷିତ ହୁଏ । ମୁଣ୍ଡା ସମ୍ପ୍ରଦାୟର ପୂର୍ବ ପୁରୁଷମାନେ ଭାରତର ପଶ୍ଚିମାଞ୍ଚଳ ଖାଇବର ଗିରିପଥ ଅତିକ୍ରମ କରି ଭାରତ ମଧ୍ୟରେ ପ୍ରବେଶ କରିଥିବାର ବିଶିଷ୍ଟ ଐତିହାସିକ ଏସ୍.ସି. ରାୟ, ରାମଦାସ ଚାନ୍ଦ, ପ୍ରଫେସର ଆର୍.ସି. ମଜୁମଦାର ଆଦି ତାଙ୍କର ପୁସ୍ତକଗୁଡିକରେ ବର୍ଣ୍ଣନା କରିଛନ୍ତି । ମୁଣ୍ଡାମାନେ ପ୍ରଥମେ ମହେଞ୍ଜୋଦାରୋ, ହରପ୍ପା ଅଞ୍ଚଳରେ ବସତି ସ୍ଥାପନ କରିଥିଲେ । ପ୍ରାୟତଃ ୬୦୦ବର୍ଷରୁ ଅଧିକ ସେଠାରେ ଅବସ୍ଥାନ କରି ବଂଶ ବୃଦ୍ଧି ହେତୁ ସିନ୍ଧୁ ଓ ଗାଙ୍ଗେୟ ସମତଳ ଅଞ୍ଚଳ ମଧ୍ୟରେ ଯାଯାବର ରୂପେ ବସବାସ କରି ଭାରତର ବିଭିନ୍ନ ଅଞ୍ଚଳରେ ଚାରଣଭୂମି ଅନ୍ୱେଷଣ କରି ବସବାସ କଲେ । କାଳକ୍ରମେ ଆର୍ଯ୍ୟ ଓ ଦ୍ରାବିଡମାନଙ୍କର ଆକ୍ରମଣରୁ ନିଜକୁ ନିବୃତ୍ତ ରଖିବା ପାଇଁ ଉତ୍ତରାଞ୍ଚଳରେ ଥିବା ବିନ୍ଧ୍ୟାଞ୍ଚଳ ଓ ଛୋଟନାଗପୁର ନିବିଡ ଜଙ୍ଗଲକୁ ଫେରିଗଲେ । ସୁନ୍ଦରଗଡ ଜିଲ୍ଲାର ବୀରମିତ୍ରପୁର, ନୂଆଗାଁ, ସଲଙ୍ଗାବାହାଲ ସୋରଡା, ଲୁଆରାମ ଏବଂ ଝାଡଖଣ୍ଡର ସିମଡେଗା, ରାଞ୍ଚି, ଲୋହର ଡେଗା, ବିରୁ ବୋନୋ ଆଦି ଅଞ୍ଚଳରେ ବସବାସ କରୁଥିବା ପୁରୁଣା ଶିକ୍ଷିତ ଆଦିବାସୀ ତଥା ପଥର ଚଟାଣରେ ଖୋଜା ହୋଇଥିବା କିମ୍ବଦନ୍ତୀରୁ ଏହା ସଂଗ୍ରହ କରାଯାଇଅଛି ।

ଆଦିମ ଅଧିବାସୀଙ୍କ ସହିତ ଆର୍ଯ୍ୟ ଓ ଦ୍ରାବିଡମାନଙ୍କ ସଂଘର୍ଷ ହେବାରୁ ଆଦିବାସୀମାନେ ନିଜ ଭିଟାମାଟିକୁ ପରିତ୍ୟାଗ କରି ଖ୍ରୀଷ୍ଟପୂର୍ବ ୩୦୮୦ରେ ବିନ୍ଧ୍ୟ ପର୍ବତମାଳା ଓ ଛୋଟନାଗପୁର ଘଞ୍ଚ ଜଙ୍ଗଲ, ପାହାଡ ଅଞ୍ଚଳକୁ ନିରାପଦ ମଣି ବସତି ସ୍ଥାପନ କଲେ ।

ଖ୍ରୀଷ୍ଟୀୟ ୬୦ ମସିହାରେ ମୁଣ୍ଡା ସମ୍ପ୍ରଦାୟର ଶେଷରାଜା 'ମାଦ୍ରାମୁଣ୍ଡା' ଛୋଟନାଗପୁର ଅଞ୍ଚଳକୁ ଶାସନ କରୁଥିଲେ । ଏହାର ରାଜଧାନୀ ରାଞ୍ଚିଠାରୁ ୨୫ ମାଇଲ ଦକ୍ଷିଣ-ପୂର୍ବରେ ଅବସ୍ଥିତ 'ସତ୍ୟଆମ୍ବା' ନାମରେ ପରିଚିତ ବୋଲି ନୂଆଗାଁ ବ୍ଲକ ଅନ୍ତର୍ଗତ ତାଇନ୍ଦା ଗ୍ରାମର ଶ୍ରୀ ପାତ୍ରାସମୁଣ୍ଡା ତାଙ୍କର ହିନ୍ଦୀ ଅକ୍ଷରରେ ଓ ମୁଣ୍ଡା ଭାଷାର ପୁସ୍ତକରେ ମୁଣ୍ଡାମାନଙ୍କର ଐତିହାସିକ ବିବରଣୀଗୁଡିକୁ ଉଲ୍ଲେଖ କରିଛନ୍ତି ।

ଆଷ୍ଟିକ ମୁଣ୍ଡାମାନେ ଯଥା: ହୋ ମୁଣ୍ଡା, ସାନ୍ତାଳୀ । ଏହି ବଂଶୀୟ ସାନ୍ତାଳୀମାନେ ରାଜ୍ୟର ପୂର୍ବ ଦିଗରେ ପ୍ରଥମେ ବସତି ସ୍ଥାପନ କଲେ ତା'ର ନାମ ସାନ୍ତାଳ ପ୍ରଗଣା ନାମରେ ନାମିତ କରାଯାଇଅଛି । ହୋ ଜାତିର ଲୋକମାନେ ରାଞ୍ଚିର ପୂର୍ବ ଦକ୍ଷିଣ ଦିଗକୁ ଗତି କରିଥିଲେ । ଯାହାକି ତାର ନାମ ସିଂହଭୂମି, ମାନଭୂମି, ଧଳଭୂମ, ମୟୂରଭଞ୍ଜ, କେଉଁଝର ଆଦି ନାମରେ ନାମିତ ହୋଇଥିଲା । ବିଶେଷକରି ମୁଣ୍ଡା ସମ୍ପ୍ରଦାୟର ଲୋକମାନେ ରାଞ୍ଚି, ଲୋହରଡେଗା, ସିମଡେଗା, ସୁନ୍ଦରଗଡ, ରାୟଗଡ ଆଦି ଅଞ୍ଚଳରେ ବସବାସ କରି ସ୍ଥାୟୀ ରୂପେ ରହିଲେ । ଭୂୟାଁ ପିଢିରୁ ପ୍ରତୀୟମାନ ହୁଏ ଯେ ସୁନ୍ଦରଗଡ, ରାୟଗଡ ଆଦି ଅଞ୍ଚଳକୁ ମୁଣ୍ଡା ସମ୍ପ୍ରଦାୟର ଲୋକମାନେ ଆସିବା ପୂର୍ବରୁ ଭୂୟାଁମାନେ ବସତି ସ୍ଥାପନ ଓ ଚାଷ ଆଦିକୁ ବେଉଷା ରୂପେ ଗ୍ରହଣ କରି ପରିବାର ପ୍ରତିପୋଷଣ କରୁଥିଲେ ।

ମୁଣ୍ଡାମାନଙ୍କର ସଂସ୍କୃତି, ପର୍ବପର୍ବାଣି ଗୁଡିକୁ ତର୍ଜମା କଲେ ପ୍ରତୀୟମାନ ହୁଏ ଯେ ଖୁଟିର ଦକ୍ଷିଣରେ ଥିବା ବଳିଗାଁ ଓ ନିବାସୀ 'ମେନୁଓଡେୟା' ତାଙ୍କ ବହିରେ ଉଲ୍ଲେଖ କରିଛନ୍ତି । କଥାରେ ଅଛି ବର୍ଷକ ବାରମାସରେ ତେରପର୍ବ । ମୁଣ୍ଡାମାନେ ବର୍ଷର ପ୍ରତ୍ୟେକ ମାସରେ ପୂନେଇ ପର୍ବକୁ ପାଳନ କରନ୍ତି । ପର୍ବଗୁଡିକ ମଧ୍ୟରେ ବାହା ପର୍ବ ବା ସାରହୁଲ ପର୍ବ ଅନ୍ୟତମ । ଏହି ଦିନଠାରୁ ମୁଣ୍ଡା ସମ୍ପ୍ରଦାୟର ବର୍ଷ ଓ ମାସର ପ୍ରଥମ ଦିନ ରୂପେ ଗଣନା କରନ୍ତି । ବସନ୍ତ ଋତୁରେ ଗଛରୁ ନୂତନ ପତ୍ର କଅଁଳେ, କଳିକାରୁ ନାନା କିସମର ଫୁଲଫୁଟେ । ବସନ୍ତ ଋତୁ ଆଗମନରେ ଜୀବଜନ୍ତୁମାନଙ୍କଠାରୁ ଗଛଲତା ପର୍ଯ୍ୟନ୍ତ ସକଳ ପ୍ରାଣୀମାନଙ୍କର ନୂତନ ପରଶ ପାଇ ମନ ପୁଲକିତ ହୁଏ । କୋଇଲିର କୁହୁକୁହୁ ସ୍ୱନ ଜନମାନସକୁ ବିମୋହିତ କରେ, ମନରେ ଭରିଦିଏ ଅଫୁରନ୍ତ ଆନନ୍ଦ, ବେସୁରା ରାଗିଣୀରେ ପ୍ରାଣୀ ହୁଏ ଆତ୍ମହରା । ବଣରେ

ନାନା ଜାତିର ଫୁଲ ଫୁଟେ । ସେଗୁଡିକ ଆଦିମ ମଣିଷ ତୋଳି ଆଣି ନୂତନ ବର୍ଷରେ ଅର୍ଘ୍ୟ ଢାଳେ । ମୁଣ୍ଡ ଓ ଗଳାରେ ଫୁଲ ମାଳଗୁଛି ଲମ୍ବାଇ ଦିଏ । ମାଦଳର ତାଳେ ତାଳେ ନାଚି, ଗୀତ ଗାଇ ନିଜକୁ ହଜାଇ ଦିଏ, ଅନ୍ଧାର ରାତ୍ରିର ମଶାଲ ଜାଳି ପରସ୍ପର ନିବିଡ ଆଲିଙ୍ଗନରେ ମାତିଯାଏ ।



ଶାଳଗଛର ଫୁଲ ମହକରେ ଚତୁପାର୍ଶ୍ୱ ଜନମନକୁ ବିମୋହିତ କରେ । ଗଛର ପତ୍ରଗୁଡିକ ଶିରିଶିରି ପବନରେ ପ୍ରକୃତି ସହିତ ଲୁଚକାଳି ଖେଳ ଖେଳେ । ଗଛ ଡାଳରେ ଗହଳ ପତ୍ର, ତା'ଉପରେ ଫୁଲର ଛେଡ (ଡେମ୍ଫ) ଦ୍ୱାରା ଛୋଟ ଛୋଟ ଧଳାଫୁଲ ଆଚ୍ଛାଦିତ ହୋଇଥିବାରୁ ଗଛଗୁଡିକ ସୁନ୍ଦରରେ ମଣ୍ଡିତ ହୋଇଥାଏ । ଏହି ଶାଳ ଗଛକୁ ଛୋଟନାଗପୁର ଅଞ୍ଚଳର ଲୋକମାନେ ସରେଇ ଗଛ ଓ ଫୁଲକୁ ସରେଇ ଫୁଲ ବୋଲି କହନ୍ତି ।

ବସନ୍ତ ଋତୁ ଆସିଲେ ମହୁଲ ଗଛର ପତ୍ରଗୁଡିକ ଝଡିଯାଇ ଟାଙ୍ଗରା ଦେଖାଯାଏ । କେବଳ ସେଇ ଟାଙ୍ଗରା ଡାଳରୁ ମହୁଲ ଫୁଲ ଶୋଭାପାଏ । ଫୁଲଗୁଡିକ ଡାଳରୁ ଝଡିଯିବା ପରେ ପତ୍ର କଅଁଳେ । ମହୁଲ ଫୁଲକୁ ଖରାରେ ଶୁଖାଇ ଖାଦ୍ୟ ରୂପେ ବ୍ୟବହାର କରାଯାଏ । ଶାଳଫୁଲ ଓ ମହୁଲ ଫୁଲ ଦ୍ୱାରା (ସାରହୁଲ) ବା ବାହା ପରବରେ ଦେବତାମାନଙ୍କୁ ପୂଜାର୍ଚ୍ଚନା କରାଯାଏ ।

ଆଦିମ ଅଧିବାସୀମାନଙ୍କର ପର୍ବପର୍ବାଣି ମଧ୍ୟରେ ବାହାପରବ(ସାରହୁଲ) ହାପଡୋକଓ୍ୱା ପରବ (ପର୍ବ) ବାଣଭଳି ପରବ (ଶିକାର ପରବ), ହେରା ପରବ (ଧାନବୁଣା) କଲମ୍‌ସିଂ ପରବ (ଧାନ ଅମଳ) ଜମଲମା ପରବ (ନୂଆଖାଇ) ମାଗେ ପରବ (ଖୁଟକାଟ) ଫାଗୁ ପରବ (ଫଗୁଣ) ଟୁଙ୍ଗୁ ପରବ (ମାଘ ମାସରେ ଚାକରକୁ ବିଦା କରିବା ପର୍ବ) ଆଦି ଅନ୍ୟତମ । ଏହି ପର୍ବଗୁଡିକ କେବଳ ମୁଣ୍ଡା ସମ୍ପ୍ରଦାୟ ହୋଇଥିଲେ ହେଁ ଅନ୍ୟ ଆଦିମ ସମ୍ପ୍ରଦାୟରେ ତାକୁ ସେମାନଙ୍କର ପିଲାଟିଏ ଜନ୍ମ ହେଲେ ତାର ନାମକରଣ କରାଯାଏ ଏବଂ ଭିନ୍ନ ଓଷା ବ୍ରତରେ ମଧ୍ୟ ଗୀତର ଲହର ଭିନ୍ନ ଥାଏ । ପାହାନ (ପୂଜକ) ଆସି ଘର ଅଗଣାରେ ରହି ଘରର ଦେବାଦେବୀ ଓ ଗ୍ରାମଦେବତୀଙ୍କୁ ପୂଜାର୍ଚ୍ଚନା କରିଥାଏ । ପ୍ରତ୍ୟେକ ପୂଜା, ଓଷାବ୍ରତ ଓ ଦେହର ରୋଗ ବୈରାଗ ନିମନ୍ତେ ପାହାନର ଆବଶ୍ୟକତା ଜରୁରୀ ମନେ କରନ୍ତି ।

ସାରହୁଲ ପର୍ବ ଆଦିମ ଅଧିବାସୀମାନଙ୍କର ମୁଖ୍ୟ ପର୍ବ ଅଟେ। ସେମାନେ ଶାଳଫୁଲ, ମହୁଲ ଫୁଲକୁ ଗଛରୁ ତୋଳିଆଣି ପୂଜା କରନ୍ତି । ପୂଜା ଶେଷ ହେଲେ ଘରକୁ ଘର ବୁଲି ପରସ୍ପର ମଧ୍ୟରେ ଭାବର ଆଦାନପ୍ରଦାନ କରନ୍ତି । ଏହା ସେମାନଙ୍କର ପୁରୁଷାନୁକ୍ରମେ ପାରମ୍ପରିକ ପ୍ରଥା/ମୁଣ୍ଡାମାନଙ୍କର ସାରହୁଲ ପର୍ବର ତାତ୍ପର୍ଯ୍ୟ ଏହି ଯେ, ଆବାଳ ବୃଦ୍ଧବନିତା ଉତ୍ସାହର ସହିତ ନୂତନ ବର୍ଷକୁ ସ୍ୱାଗତ ଜଣାଇ ଗୀତ ଲହରୀରୁ ମାଦଳ ତାର ତାଳ ବଦଳାଇ ଦେଖଣାହାରୀ ତଥା ଦର୍ଶକମାନଙ୍କ ମନକୁ ବିମୋହିତ କରିଥାଏ ।

ସାରହୁଲ୍ ପର୍ବ ଚୈତ୍ର ମାସ ପୂର୍ଣ୍ଣମୀ ତିଥିରେ ପାଳନ କରାଯାଏ । ଦିନକ ପୂର୍ବରୁ ପାହାନ ନୂତନ ତିନୋଟି କଳସରେ ଜଳପୂର୍ଣ୍ଣ କରି ଶାଳଗଛ ମୂଳରେ ଥୋଇ ନୂଆ ଧଳା ସୂତାରେ ଗଛ ସହିତ ଜଳପୂର୍ଣ୍ଣ କଳସକୁ ସାତଥର ଗୁଡାଇ ବାନ୍ଧିଦିଏ । ପୂଜା ସାମଗ୍ରୀ ଭାବରେ ହଳଦୀଗୁଣ୍ଡ, ଅରୁଆ ଚାଉଳ ଗୁଣ୍ଡ, ଫୁଲ, ଧୂପ, ଦୀପ, ଝୁଣା, ସିନ୍ଦୂର, ନଡିଆ, ଗୁଡ ରଖି ପୂଜା ଆରମ୍ଭ ହୁଏ । ଏହାବ୍ୟତୀତ ପୂର୍ବ କାଳରେ ବାରଯୋଡା ଅଣ୍ଡିରା କୁକୁଡା ଏଠାରେ ପୂଜା ହୁଏ । ବର୍ତ୍ତମାନ କେବଳ ବିଧିରକ୍ଷା ନିମନ୍ତେ 'ଛ'ଯୋଡା ଚିଆଁ (କୁକୁଡାଛୁଆ)କୁ ପୂଜା କରାଯାଉଅଛି । ଗଛମୂଳରେ ଥିବା କଳସକୁ ପାହାନ ସେମାନଙ୍କ ସହଯୋଗୀମାନଙ୍କ ସହିତ ତିନିଥର ପୂଜା କରେ ଶେଷଦିନ କଳସ ସହିତ ଫୁଲକୁ ପାହାନ ନିଜର ରଖି ପୂଜାକରେ କିମ୍ବା ଗ୍ରାମ ମୁଖିଆ ବା ଗ୍ରାମ

ଦେବତୀଙ୍କ ପୀଠରେ କଳସ ରଖି ପୂର୍ବର ୯ଟି ଖମ୍ବରେ ଗଢା ଛାମୁଣ୍ଡିଆର ମଝି ଖମ୍ବ ତଳେ ରଖି ପୂଜାର୍ଚ୍ଚନା କରେ । ପୂଜା ଶେଷ ହେବା ପରେ ପ୍ରତିପଦ ଦିନ ସହଯୋଗୀମାନଙ୍କ ସହିତ ପାହାନ ଘରକୁ ଘର ଯାଇ ଶାଳଫୁଲ ଓ ମହୁଲ ଫୁଲକୁ ଚାଳରେ ଖୋସି ଦିଅନ୍ତି । ଘର ମାଲିକ ସେମାନଙ୍କୁ ଚାଉଳ ବା ଧାନ କିମ୍ବା ଟଙ୍କା ପ୍ରଦାନ କରନ୍ତି ।

ପୂଜାର ପ୍ରଥମ ଦିନରୁ ଗାଁଦାଣ୍ଡ ଛାମୁଣ୍ଡିଆ ତଳେ କିମ୍ବା ଟଙ୍କା ଗଛ ତଳେ ମସାଲ ଜାଳି ମାଦଲ ବଜାଇ ଭଜନ, କୀର୍ତ୍ତନ କରନ୍ତି । ଏହି ଗୀତ ଓ ନାଚ ସେମାନଙ୍କର ଜନ୍ମଗତ । ମାଦଳର ତାଳେ ତାଳେ ହାତକୁ ହାତ ଛନ୍ଦି ସ୍ତ୍ରୀ ପୁରୁଷ ଉଭୟେ ପାଦକୁ ପାଦ ସଙ୍ଗେ ମିଳାଇ ଗୋଡ଼କୁ ଆଗପଛକରି ଗୀତଲହରୀ ସଙ୍ଗେ ମିଶାଇ ନାଚନ୍ତି । ସେମାନଙ୍କ ମଧ୍ୟରେ ନଥାଏ ଉଚ୍ଚ, ନୀଚର ଭେଦଭାବ କିମ୍ବା ମନର ଆବିଳତା ।

ଆଦିମ ଅଧିବାସୀଙ୍କ ରମଣୀ ସୁଠାମ, ସୁଠଳ, ସୁନ୍ଦର, ହସ, ହସ ବଦନ, ମମତାମୟୀ, ପ୍ରେମମୟୀ, ଅତିଥିପରାୟଣ, କର୍ମପ୍ରବିଣା, ସଙ୍ଗୀତ ମୁଖରା, ନୃତ୍ୟରତା ଓ ଧରିତ୍ରୀ ଭଳି କଷ୍ଟ ସହିଷ୍ଣୁ । ତା' ଜୀବନରେ ବିପଦ ଯାଏ-ଆସେ, କିନ୍ତୁ ସେ ଆତ୍ମହରା ହୁଏନି, ହୃଦୟରେ ଦମ୍ଭ ରଖି ଏଡାଇ ଯାଏ ଜୀବନର ଝଡ ଝଞ୍ଜା । ସେ ଜାଣେ ବର୍ଷକୁ ଥରେ ବସନ୍ତ ଆସେ, ସେ ଧରଣୀକୁ ନାନାରଙ୍ଗ ବେରଙ୍ଗରେ ସଜାଇ ଦିଏ । ମଗମଲ ଶାଢୀରେ ସଜାଇ ହୁଏ ପଳାଶ, ନାଲି ଓଢଣାଟାଣି ଦର ଆଉଜା କବାଟ ଫାଙ୍କରେ ଉଭାହୁଏ, ଧୂଓ୍ୱେଇ ବଉଳପାଟପିନ୍ଧି ଧରଣୀ ବକ୍ଷରେ ଉଭା ହୋଇଥାଏ ଆମ୍ବ, ଶାଳ, ମହୁଲ, ଚମ୍ପା, ମଲ୍ଲୀ, ମଧୁମାଳତୀ, ପୁଟକଲ, ସଜନା ଆଜି ଭଳିକି ଭଳି ଗଛ ଲତାରେ ଭରିଯାଏ ଅନେକ ଫୁଲ । ଧରଣୀ ରାଣୀର ବେଶ ଦେଖି ମୁଣ୍ଡା ରମଣୀ ଆତ୍ମହରା ହୁଏ, ଜାତି ଜାତିକା ଫୁଲ ତୋଳି ମାଳ ଗୁନ୍ଥେ, ନିଜ ଦେହକୁ ସଜାଇ ଦିଏ ବଣ ଫୁଲ, ପତ୍ରରେ, ମନ ଆନନ୍ଦରେ ଗୁଣୁଗୁଣୁ ହୋଇ ଗୀତଗାଏ । ଏଥର ସାରହୁଲ ଆସିଛି ମର୍ତ୍ତ୍ୟକୁ, ଚାଲରେ ଚାଲ ସଭିଏଁ ମିଶି ଗୀତ ଗାଇ ଗାଇ ନାଚିବା ମୁଣ୍ଡା ସମ୍ପ୍ରଦାୟର ଝିଅ, ବୋହୂ, ସ୍ତ୍ରୀ, ପୁରୁଷ ସଭିଏଁ ମିଶି ଗୀତ ଗାଇ ହାତ ଧରାଧରି ହୋଇ ନାଚନ୍ତି । ମୁଣ୍ଡା ଭାଷାର ଗୀତ:

'ବାହା ନାଇଁ ବାହାନାଇଁ ଆଟାଲେ ବାହା
ଆୟୁମୁ ଆଗୁ ଲେଡେମ ହେଲେ, ସାରଜୁମ ବାହା...
ବାହା ନେକୋମେନ୍ତେ ଗୋଡେ, ନାୟମୁ ନାଗୋ
ଇଂଆଉଲେଡେ, ସାରଜୁମ ବାହା...
ମଧୁକମ ବାହା...

ଅର୍ଥ: ଅଟାଲ (ପୁଟକଲ) ଫୁଲ ଗଛର ପେଛା ପେଛା ଫୁଲ ଫୁଟିଛି, ସେଇ ଫୁଲକୁ ଆଣି ହାର ଗୁନ୍ଥିଛି ଏବଂ ଶାଳ ଗଛର ଫୁଲକୁ ଆଣିଛି, ଶୁଣିଲି ଏହି ଫୁଲରେ ହାର ତିଆରି ହୁଏ । ପୂଜା ନିମନ୍ତେ ଶାଳଫୁଲ ଓ ମହୁଲ ଫୁଲରେ ହାର ଗୁନ୍ଥିଛି ।

ଛୋଟନାଗପୁର ଅଞ୍ଚଳର ବିଶେଷତଃ ନାଗବଂଶୀ ମୁଣ୍ଡାମାନେ ବସବାସ କରୁଥିବା ପ୍ରତୀୟମାନ ହୁଏ । ସେମାନେ ଯେଉଁ ସ୍ଥାନରେ ବସତି ସ୍ଥାପନ କରନ୍ତି, ସେ ଜାଗାଟି ଘୋର ଜଙ୍ଗଲ, ବଣ, ପାହାଡରେ ପରିପୂର୍ଣ୍ଣ ଥାଏ, ତାକୁ ସଫାକରି ସମତଳ ଭୂମି ଦେଖି ପତ୍ର କୁଡିଆ ତିଆରି କରି ରହୁଥିଲେ । ତେଣୁ ସେଇମାନଙ୍କ ଜଙ୍ଗଲ ଝାଡ ସଫାକରି ରହୁଥିବାରୁ ତାଙ୍କୁ ଖୁଟକାଟି ବୋଲି କହନ୍ତି । ଏହି ସାରହୁଲ୍ ପର୍ବକୁ ନାଗବଂଶୀ ମୁଣ୍ଡାମାନେ ପାଳନ କରୁଥିବାରୁ ସେମାନଙ୍କର ଗୀତ, ନାଚ, ଗତିବିଧିରୁ ସ୍ୱତନ୍ତ୍ରତା ପ୍ରତୀୟମାନ ହୁଏ । ଏଠାରେ ନାଗବଂଶୀ ମୁଣ୍ଡାଙ୍କ ଗୀତକୁ ଉଲ୍ଲେଖ କରାଗଲା:

'ମୁଣ୍ଡାକୋରେ ମୁଣ୍ଡାକୋ
ନାଗବଂଶୀ ମୁଣ୍ଡାକୋ...
ପାରବକୋ ମାନ୍‌ତିନ ତାନା
ନାଗ ବଂଶୀ ମୁଣ୍ଡାକୋ...
ଖୁଟ୍‌କାଟି ମୁଣ୍ଡା କୋ... ମେନ୍ ।'

ମୁଣ୍ଡାମାନେ ବିଶେଷକରି ନାଗବଂଶୀ ମୁଣ୍ଡାମାନେ ଏହି ପର୍ବକୁ ଆବାହମାନ ସମୟରୁ ପାଳନ କରି ଆସୁଛନ୍ତି ଏବଂ ଖୁଣ୍ଟକାଟି ମୁଣ୍ଡାମାନେ ମଧ୍ୟ ଏହି ସାରହୁଲ୍ ପରବକୁ ମହା ସମାରୋହରେ ପୁରୁଷାନୁକ୍ରମେ ପାଳନ କରି ଆସୁଛନ୍ତି ।

ଶାଳଫୁଲ ଓ ମହୁଲ ଫୁଲକୁ ପୂଜା ସମାପ୍ତି ପରେ ପାହାନ ସହିତ ତା'ର ସାଥୀମାନେ ମିଳିତଭାବେ ପୂଜା ସାମଗ୍ରୀକୁ ଏକତ୍ରକରି ଦିଅନ୍ତି ଏହି ସମୟରେ ଗୀତ ବୋଲାଯାଏ ଯଥା:

'ପାହଣ ବୟର ରାଚାରେ
ପୂଜାର ବୟର ରାଚା....
ଭୟୁ ଆଡାକୁ ଲେଡାରେ
ସାରଜୁମ୍ ବାହା...
ଭୟୁ ଆଡଗୁ ଲେନାରେ
ତିଲେଇଂ ବାହା...
ଭୟୁର ଡରେ ଭୟୁର ଲେନା
ନସରଡରେ ନସରଲେନା

ବାହାୟାକୋ ମେନ୍ତେ ଗୋଡେ
ସାରଜୁମ୍ ବାହା
ବାହାୟାକୋ ମେନ୍ତେ ଗୋଡେ
ଡିଲେଇଂ ବାହା... ।'

ଓଡ଼ିଆରେ ଅର୍ଥ ହେଲା: ପାହାନ ଓ ତା'ର ସାଥୀମାନେ ଆଣିଥିବା ଶାଳଫୁଲ, ମହୁଲ ଫୁଲକୁ ଘର ଅଗଣା ଚାଳରେ ଖୋସି ଦିଆଯାଏ । ପୂଜାର ବ୍ୟବହାର କରାଯାଇଥିବା ଫୁଲକୁ ପାହାଣ ଓ ତାର ସାଥୀମାନଙ୍କ ସହିତ ଯାଇ ଗ୍ରାମର ପ୍ରତ୍ୟେକ ଘରକୁ ଯାଇ ଅଗଣାର ଚାଳରେ ବା ଦରଜା ବନ୍ଧରେ ଖୋସି ଦିଅନ୍ତି ଏବଂ ଘରର ଲୋକମାନଙ୍କ କାନ ଓ ମୁଣ୍ଡରେ ଖୋସି ଦିଅନ୍ତି । ଏହାର ବିଶେଷତ୍ୱ ହେଉଛି ନୂଆ ବରଷ ଆସିଛି ତେଣୁ ପ୍ରତ୍ୟେକ ନୂଆ ରୂପରେ ସଜେଇ ହୁଏ । ଆଗାମୀ ବର୍ଷ ଆନନ୍ଦମୟ ହେଉ, ସୁଖମୟ ହେଉ ଧନ, ଧାନ୍ୟ, ଜନ, ଗୋପ, ଲକ୍ଷ୍ମୀରେ ଘର ପୂରିଉଠୁ । ଏହାହିଁ ସାରହୁଲର ବିଶେଷତ୍ୱ ।

ଦିନ ଯାଇ ରାତି ଆସେ, ଗାଁ ଦାଣ୍ଡରେ ସମସ୍ତେ ରୁଣ୍ଡ ହେଲେଣି, ଚାଲରେ ଚାଲ ଆମ୍ଭେମାନେ ସେଠାରେ ଭାଗନେବା । ନାଚୁଣୀ ଆସିଲେ ନାଚ ଆରମ୍ଭ ହେବ । ବାଜାବାଲାମାନେ କାରିଆ ପିନ୍ଧି, ମୁଣ୍ଡରେ ଠେକା (ପଗଡି) ମାରି, ମାଦଲଧରି ଠିଆହେଲେଣି । ଡେରି କରୁଛୁ କାହିଁକି ? ନାଚୁଣୀ ଆସିଛି, ବାଜାବାଲା, ମହୁରୀଆ ଗୀତର ତାଳେ ତାଳେ ମଜିଗଲେ ନାଚୁଣୀମାନେ । ସମ୍ମୁଖ ଭାଗରେ ଥିବା ନାଚୁଣୀ ଗୀତର ସ୍ୱର ଧରି ନାଚିନାଚି ଆଗେଇ ଚାଲିଛି ଆଗକୁ ।

'ଡୋଡେ ଲେ ଡୋଡେ, ଡୋଡେ ଲୋ ଡୋଡେ
ସୁସୁନ୍ କୋ ସେଟେର ଲେନା, ଆଲାରପେ ସେଟେର ଲେନା
ଆଲାରପେ ଥେବା ଗା...
ସୁସୁନକୋ ସେଟେର ନେନା
ଯାଦୁର କୋ ଥେବା ଲେନା... ।'

ଅର୍ଥ: ନାଚୁଣୀମାନେ କେତେଜଣ ଆସି ଗଲେଣି, ଆଉରି ବି କେତେ ଆସି ନାହାଁନ୍ତି, ସମୟ ହୋଇଗଲା ପ୍ରସ୍ତୁତ ହୋଇଯାଅ, ଏବେ ନାଚ, ଗୀତ ଆରମ୍ଭ ହେବ ।

ଏହିପରି ସାରହୁଲ୍ ରାତିଟିକୁ ନାଚ ଗୀତ ମଧ୍ୟରେ ମାଉଲଦ ତାଳେ ତାଳେ ନିଜକୁ ହଜାଇ ଦିଅନ୍ତି ନାଚୁଣୀମାନେ । ସମସ୍ତେ ଏକ ମନ, ଏକ ପ୍ରାଣ, ଏକ ଲୟରେ ସମଦୁଃଖ, ସମସୁଖରେ ସୁଖୀ ହୋଇ ଜୀବନ ଯାପନ କରନ୍ତି । ଆଦିମବାସୀମାନେ ଜୀବନର କେତେ ଯେ ବସନ୍ତ ବିତିଲାଣି, କେତେଝଡ ଝଞ୍ଜା ବୋହି ଗଲାଣି ତଥାପି ମ୍ରିୟମାଣ ହୁଅନ୍ତିନି ଏଇମାନେ । ହସ ହସ ବଦନରେ ସଂଘବଦ୍ଧ ହୋଇ ବିତେଇ ଦିଅନ୍ତି ଦିନ, ମାସ ଓ ବର୍ଷ, ଏହା ସେମାନଙ୍କର ପାରମ୍ପାରିକ ସଂସ୍କୃତି । ସବୁରି ମୁହଁରେ ହସ । ଆଜି ଫଗୁଣ ଆସିଚିରେ ସାରହୁଲ ଆସିଚି, ନୂଆ ବରଷ ଆସିଛି ନୂଆ ବେଶ ସାଜିଛି, ଆସ ସଭିଏଁ ମିଳି ଗୀତ ଗାଇ ନାଚି, କୁଦି ନୂଆ ଦିନଟିକୁ ବିତାଇବା, ନୂଆ ଫୁଲ କାନେ ଖୋସି, ନୂଆ ବେଶ ସାଜି ଘରକୁ ଘର ବୁଲିବା ।

ଅଧୁନା ମୁଣ୍ଡା ସମ୍ପ୍ରଦାୟର ଲୋକମାନେ ପାଶ୍ଚାତ୍ୟ ସଭ୍ୟତା ଓ ଆଧୁନିକ ଚାକଚକ୍ୟରେ ନିଜକୁ ଆପଣେଇ ନେଲେଣି । ନିଜର ଭାଷା, ସଂସ୍କୃତି ଓ ଐତିହ୍ୟକୁ ଭୁଲିଯିବାକୁ ବସିଲେଣି । ଯଦି ଏଇଭଳି ଭାବରେ ପରିବର୍ତ୍ତନ ଦେଖାଯାଏ, ତେବେ ଆଗାମୀ ପିଢ଼ିକୁ କିଭଳି କିମ୍ବଦନ୍ତୀ ଯୋଗାଇବ ତାହା ଆଜିର ଅନୁଚିନ୍ତା । ସାମ୍ପ୍ରତିକ ସମୟର ଶିକ୍ଷିତ, ଅର୍ଦ୍ଧଶିକ୍ଷିତ ଗୋଷ୍ଠୀ କିମ୍ବା ସମ୍ପ୍ରଦାୟ ଯେ ଯେଉଁ ଭୂମିକାରେ ଥାଉନା କାହିଁକି ସେ ତା'ର କୌଳିକ ପ୍ରଥାକୁ ନଭୁଲି ନିଜ ଜାତିର ପରମ୍ପରା ଓ ଜାତୀୟ ଚେତନାକୁ ଚିରଞ୍ଜୀବି ରଖୁ । ଏହାହିଁ ଆଦିମ ଅଧିବାସୀମାନଙ୍କର ଧେୟହେବା ବାଞ୍ଛନୀୟ । ବେଳହୁଁ ପ୍ରତିକାର ନକଲେ କୌଳିକ ରୀତି, ନୀତିଗୁଡିକ ଅଚିରେ ଧ୍ୱଂସ ପାଇଯିବ । ଆଦିମ ଯୁଗର କଳା, ସଂସ୍କୃତି, ଐକ୍ୟକୁ ଜାହିର ରଖିଲେ ତାହା ଆଗାମୀ ଯୁଗକୁ ଦିଗ୍‌ଦର୍ଶନ ଦେବ ଓ ଏହାହିଁ ହେବ ପୌରାଣିକ ଯୁଗରୁ ନୂତନ ବିଜ୍ଞାନର ଉଦ୍‌ଭାବନ ।

ସଭାପତି
ବୈଶାଖୀ ସାହିତ୍ୟ ସଂସଦ
ରାଉରକେଲା–୧୨

❖ ❖ ❖

# ଋଷିକୂଲ୍ୟାରେ ବାରୁଣୀ ସ୍ନାନ

ସୁରେନ୍ଦ୍ରନାଥ ପଣ୍ଡା

ଭାରତ ଏକ କୃଷିପ୍ରଧାନ ଦେଶ । ଏହି ଦେଶର ପ୍ରାୟ ସତୁରୀ ଭାଗ ଜନସାଧାରଣ ଗ୍ରାମାଞ୍ଚଳରେ ରହି କୃଷି ଉପରେ ନିର୍ଭର କରନ୍ତି । ନିଜ କୃଷିଜାତ ଦ୍ରବ୍ୟକୁ ଆଦାୟ କରି ସର୍ବପ୍ରଥମେ ଦେବାଦେବୀଙ୍କ ନିକଟରେ ପୂଜାର୍ଚ୍ଚନା କରି ପରେ ନିଜ ପାଇଁ ବ୍ୟବହାର କରନ୍ତି । ଦେବପୂଜା ଏବଂ ଠାକୁରଭକ୍ତି ସେମାନଙ୍କୁ ଏକ ସତ୍‌ପଥରେ ଯିବା ପାଇଁ ମାର୍ଗ ଦେଖାଇଥାଏ । କୃଷକମାନେ ଖରିଫ୍ ଏବଂ ରବି ଋତୁରେ ବିଭିନ୍ନ ଫସଲ ଆଦାୟ କରିବା ପରେ ଠାକୁରଙ୍କ ନିକଟରେ ସମର୍ପଣ କରି ଆଗାମୀ ବର୍ଷ ନିମନ୍ତେ ପୁନଃ ସମର୍ପିତ ହେବା ପାଇଁ ବଦ୍ଧ ଶପଥ ନିଅନ୍ତି ।

ଆମ ଓଡ଼ିଆ ସଂସ୍କୃତିରେ ବାର ମାସରେ ତେରପର୍ବ ପାଳିତ ହୁଏ । କୃଷକମାନଙ୍କ ରବି ଋତୁରେ ଆଦାୟ ଫସଲ ବେଳକୁ ଋତୁରାଜ ବସନ୍ତର ଆଗମନ ହୁଏ । ଫାଲ୍‌ଗୁନ୍ ମାସର ଦୋଳଯାତ୍ରା ଓ ଫଗୁଖେଳ ପରେ ଚୈତ୍ରର ଯାତ୍ରା ମହୋତ୍ସବ ଆରମ୍ଭ ହୁଏ । ଆମ ଓଡ଼ିଆ ସଂସ୍କୃତିରେ ଚୈତ୍ର ମାସରେ ଅନେକ ପର୍ବପର୍ବାଣି ପାଳିତ ହୁଏ । ସେମାନଙ୍କ ମଧ୍ୟରେ ହୋଲି, ପଞ୍ଚୁଦୋଳ ଉତ୍ସବ ପାପମୋଚନୀ ଏକାଦଶୀ, ବାରୁଣୀ ସ୍ନାନଯାତ୍ରା, ମହାବିଷୁବ ସଂକ୍ରାନ୍ତି ଇତ୍ୟାଦି ଅନ୍ୟତମ ।

ଆମ ଓଡ଼ିଶାର ଆରାଧ୍ୟ ଦେବ ପ୍ରଭୁ ଜଗନ୍ନାଥ ସମସ୍ତ ଓଡ଼ିଆଙ୍କ ପ୍ରାଣର ଦେବତା ଅଟନ୍ତି । ଆମ୍ଭେମାନେ ପରିବାରର ଯେକୌଣସି କାମ ତାଙ୍କୁ ସ୍ମରଣ କରି ହିଁ ଆରମ୍ଭ କରୁ । ଶ୍ରୀଜଗନ୍ନାଥ ପୁରୀର ମହୋଦଧିରେ ସ୍ନାନ କଲେ ଅଜ୍ଞାତ କୃତ ପାପମୋଚନ ହୁଏ ବୋଲି ଆମର ବିଶ୍ୱାସ ରହିଛି । ଠିକ୍ ସେହିଭଳି ବିଭିନ୍ନ ନିର୍ବାଚିତ ଦିନମାନଙ୍କରେ ବିଭିନ୍ନ ପବିତ୍ର ନଦୀମାନଙ୍କରେ ମଧ୍ୟ ସ୍ନାନ କଲେ ସ୍ୱର୍ଗ ପ୍ରାପ୍ତି ହେବାର ବିଶ୍ୱାସ ରହିଛି । ଏଣୁ ବର୍ଷର ବିଭିନ୍ନ ସମୟରେ ଗୁରୁ ପଞ୍ଚମୀ ବ୍ରତ ସୋମମହତୀ ସ୍ନାନ, ଗୋ ସହସ୍ରୀ ସ୍ନାନ, ସୂର୍ଯ୍ୟ ମହତୀ ସ୍ନାନ, କାର୍ତ୍ତିକ ସ୍ନାନ, ଚନ୍ଦ୍ରଭାଗା ତୀର୍ଥେ ସ୍ନାନ, ସାମାନ୍ୟ ଗୋବିନ୍ଦ ସ୍ନାନ, ବାରୁଣୀ ସ୍ନାନ ଇତ୍ୟାଦି ଆମ ଓଡ଼ିଆ ସଂସ୍କୃତିରେ ଏକ ପ୍ରମୁଖ ବିଷୟ ହୋଇ ରହିଛି । ଏମାନଙ୍କ ମଧ୍ୟରୁ ବାରୁଣୀ ସ୍ନାନ ଅନ୍ୟତମ ।

ଏହି ବାରୁଣୀ ସ୍ନାନ ଚୈତ୍ର କୃଷ୍ଣ ତ୍ରୟୋଦଶୀ ତିଥିରେ ପଡେ । ଏହିଦିନ ଉଭୟ ଶତଭିଷା ନକ୍ଷତ୍ର ଏବଂ ଶନିବାର କିମ୍ବା ମଙ୍ଗଳବାର ପଡିଥିଲେ ତାହାକୁ ମହାବାରୁଣୀ ସ୍ନାନ କୁହାଯାଏ ? ଏହିଦିନ ମହୋଦଧି ଏବଂ ପବିତ୍ର ନଦୀମାନଙ୍କ ମଧ୍ୟରେ ସ୍ନାନ କଲେ ନିର୍ବାଣ ପ୍ରାପ୍ତି ହୁଏ । ଆମ ରାଜ୍ୟ ଓଡ଼ିଶାରେ ପବିତ୍ର ଋଷିକୂଲ୍ୟା, ବୈତରଣୀ ଇତ୍ୟାଦି ନଦୀମାନଙ୍କୁ ପବିତ୍ର ନଦୀର ଆଖ୍ୟା ଦିଆଯାଇଛି । ଋଷିକୂଲ୍ୟା ନଦୀ ଋଷିମାଳ ପର୍ବତରୁ ଉତ୍ପତ୍ତି ହୋଇଛି । ଏହା ସୋରଡାର ଦକ୍ଷିଣ-ପଶ୍ଚିମ କୋଣର ଷାଠିଏ କିଲୋମିଟର ଦୂରରେ ଏବଂ କାଟିଙ୍ଗୀଠାରୁ ଆଠ କିଲୋମିଟର ଦୂରରେ ଅବସ୍ଥିତ ।

ପ୍ରଥମ ମନୁ ସ୍ୱୟଂଭୁବ ସତ୍ୟଯୁଗରେ ମୁନି ଓ ଋଷିମାନଙ୍କ ଗହଣରେ ଋଷିମାଳ ପର୍ବତସ୍ଥିତ ନିଜ ଆଶ୍ରମରେ ଚୈତ୍ରମାସ କୃଷ୍ଣପକ୍ଷ ତ୍ରୟୋଦଶୀ ଶନିବାର ତଥା ଶତଭିଷା ନକ୍ଷତ୍ରରେ ବରୁଣ ଯଜ୍ଞ କରିଥିଲେ ଏବଂ ସେହି ଶୁଭ ମୁହୂର୍ତ୍ତରେ ପବିତ୍ର ଋଷିକୂଲ୍ୟା ନଦୀର ଉତ୍ପତ୍ତି ହୋଇଥିଲା । ଏଣୁ ପ୍ରତିବର୍ଷ ଋଷିକୂଲ୍ୟା ନଦୀର ଜନ୍ମ ନକ୍ଷତ୍ର ଦିବସରେ ବାରୁଣୀ ସ୍ନାନ ଯୋଗ ପାଳନ କରାଯାଏ । ଏହିଦିନ ଋଷିକୁଲ୍ୟା ନଦୀରେ ସ୍ନାନ କଲେ ସମସ୍ତ ଅଜ୍ଞାତ ପାପରୁ ମୁକ୍ତି ମିଳେ ଏବଂ ସ୍ୱର୍ଗାଲୋକରେ ସ୍ଥାନ ମିଳେ ବୋଲି ଆମ୍ଭମାନଙ୍କର ଧର୍ମବିଶ୍ୱାସ ରହିଛି । ଏହି ନଦୀର ସ୍ରୋତ ଯେଉଁଠାରେ ଉତ୍ତରାଭିମୁଖୀ ହୋଇଛି, ସେହି ସ୍ଥାନମାନଙ୍କରେ ପ୍ରବଳ ଜନସମାଗମ ହୋଇ ବାରୁଣୀ ସ୍ନାନ ଜନସାଧାରଣ ପୂର୍ବପୁରୁଷଙ୍କୁ

ପିଣ୍ଡଦାନ କରିଥାନ୍ତି । ଋଷିକୁଲ୍ୟା ନଦୀର ମହାତ୍ମ୍ୟ ବିଭିନ୍ନ ପୁରାଣରେ ବର୍ଣ୍ଣିତ । ନୀଳାଦ୍ରି ମହୋଦୟରେ କୁହାଯାଇଛି ଯେ–

'ଋଷିକୁଲ୍ୟା ସମାସାଦ୍ୟ ଯାବତ ବୈତରଣୀ ନଦୀ
ତାବ୍ତ୍ କ୍ଷେତ୍ରସ୍ୟ ମାହାତ୍ମ୍ୟ ବର୍ତ୍ତତେ ମୁନିପୁଙ୍ଗବ ।'

ଋଷିକୁଲ୍ୟା ନଦୀର ପବିତ୍ରତା ଜନସାଧାରଣ ଉପଲବ୍ଧି କରି ବିଭିନ୍ନ ନିର୍ବାଚିତ ଦିନମାନଙ୍କରେ ସ୍ନାନ କରନ୍ତି । ପବିତ୍ର ମାସ କାର୍ତ୍ତିକ, ମାଘ ଏବଂ ବୈଶାଖ ମାସରେ ଋଷିକୁଲ୍ୟା କୂଳବର୍ତ୍ତୀ ଗାଁମାନଙ୍କର ଜନସାଧାରଣ ଏହି ନଦୀରେ ସ୍ନାନ କରି ନିଜକୁ ଧନ୍ୟ ମନେ କରନ୍ତି ।

ଋଷିକୁଲ୍ୟା, ପ୍ରଥମ ମନୁ ସ୍ୱୟମ୍ଭୁବଙ୍କ ଦ୍ୱାରା ସୃଷ୍ଟି ହୋଇଥିବା ବେଳେ ଗଙ୍ଗାନଦୀ ପରେ ସୃଷ୍ଟି ହୋଇଛି । ଏଣୁ ପବିତ୍ର ଋଷିକୁଲ୍ୟା ଗଙ୍ଗାଠାରୁ ମଧ୍ୟ ବହୁ ପୁରାତନ ।

ଋଷିକୂଲ୍ୟାର ବିଭିନ୍ନ ସ୍ଥାନରେ ବାରୁଣୀ ସ୍ନାନ ପାଳନ କରାଯାଏ । ଆସିକାର ବଡନଦୀ ଏବଂ ପବିତ୍ର ଋଷିକୂଲ୍ୟାର ସଙ୍ଗମ ସ୍ଥଳରେ ଲକ୍ଷାଧିକ ଲୋକ ଯୋଗଦେଇ ବାରୁଣୀ ସ୍ନାନ କରି ପିତୃପୁରୁଷଙ୍କୁ ପିଣ୍ଡଦାନ କରନ୍ତି । ସେହିଭଳି ସୋରଡା, ପିତ୍ତଳ, ପ୍ରତାପପୁର, ପୁରୁଷୋତ୍ତମପୁର ଇତ୍ୟାଦି ସ୍ଥାନମାନଙ୍କରେ ମଧ୍ୟ ବହୁ ଜନସାଧାରଣ ଯୋଗ ଦିଅନ୍ତି । ଆଗକାଳରେ ଯାନବାହାନର ବିଶେଷ ସୁବିଧା ନଥିବା ବେଳେ ଆଜିକାଲି ଗମନାଗମନର ବିଶେଷ ସୁବିଧା ଥିବା ଯୋଗୁଁ ଜନସମାଗମ ଅଧିକ ହୁଏ ।

ଉତ୍ତର ଭାରତର କୁମ୍ଭମେଳା, ରାଜସ୍ଥାନର ପୁଷ୍କର ଯାତ୍ରା, ଦକ୍ଷିଣ ଭାରତର କାବେରୀ କୁମ୍ଭମେଳା ଭଳି ଆସିକାର ବାରୁଣୀ ସ୍ନାନ ଯାତ୍ରା ଏକ ମହତ୍ତ୍ୱପୂର୍ଣ୍ଣ ସ୍ଥାନ ବଜାୟ ରଖିଛି । ଚଳିତବର୍ଷ ଉତ୍ତର ଭାରତର କୁମ୍ଭମେଳାରେ କୋଟି କୋଟି ଜନସାଧାରଣ ଯୋଗଦେଇ ବୁଡ ପକାଇଥିଲେ । ଆମେରିକାର ହାର୍ୱାର୍ଡ ବିଶ୍ୱବିଦ୍ୟାଳୟର ଅନେକ ଗବେଷକ ମଧ୍ୟ ଏହି ଯାତ୍ରାର ମହତ୍ତ୍ୱ ଜାଣିବା ନିମନ୍ତେ ଚଳିତବର୍ଷ କୁମ୍ଭମେଳାକୁ ଆସି ଅନେକ ତଥ୍ୟ ସଂଗ୍ରହ କରିଛନ୍ତି । କୁମ୍ଭମେଳାର ପ୍ରଚାର ଏବଂ ପ୍ରସାର ଭଳି ଆସିକା ବାରୁଣୀ ଯାତ୍ରାର ପ୍ରଚାର ଏବଂ ପ୍ରସାର ହୋଇପାରିଲେ ଏଠାରେ ମଧ୍ୟ ଦେଶ ବିଦେଶର ବହୁ ତୀର୍ଥଯାତ୍ରୀଙ୍କର ସମାଗମ ହୋଇପାରନ୍ତା ।

ଆସିକାର ବାରୁଣୀ ସ୍ନାନକୁ ଶୃଙ୍ଖଳିତ କରିବା ନିମନ୍ତେ ସ୍ଥାନୀୟ ପ୍ରଶାସନ ତରଫରୁ ବିଭିନ୍ନ ପ୍ରକାର ବନ୍ଦୋବସ୍ତ କରାଯାଉଛି । ଜଳ ଯୋଗାଣ, ବିଦ୍ୟୁତ୍ ଯୋଗାଣ, ପୁଲିସ ବ୍ୟବସ୍ଥା ଏବଂ ସ୍ଥାନୀୟ ସ୍ୱେଚ୍ଛାସେବୀ ଅନୁଷ୍ଠାନ ତଥା ଓକିଲ ସଂଘ ତରଫରୁ ଅନେକ ବ୍ୟବସ୍ଥା ଗ୍ରହଣ କରାଯାଉଛି ।

ଏହି ବୁଡକୁ ସାହାଯ୍ୟ ଓ ସହଯୋଗ କରିବା ନିମନ୍ତେ ସ୍ଥାନୀୟ ସ୍ତରରେ ବିଭିନ୍ନ ଶିକ୍ଷାନୁଷ୍ଠାନ, କୋର୍ଟକଚେରୀ ଇତ୍ୟାଦି ମଧ୍ୟ ବନ୍ଦ ରହେ । ଫଳରେ ସ୍ଥାନୀୟ ସମସ୍ତ ଜନସାଧାରଣ, ଛାତ୍ର, ଶିକ୍ଷକ, ବ୍ୟବସାୟୀ ଏବଂ କର୍ମଚାରୀମାନେ ଯୋଗଦେଇ ପବିତ୍ର ବାରୁଣୀ ସ୍ନାନର ସୁଫଳ ନିଅନ୍ତି ।

ସେ ଯାହା ହେଉ ଉତ୍କଳୀୟ ସଂସ୍କୃତିରେ ବାରୁଣୀ ସ୍ନାନ ଏବଂ ପବିତ୍ର ସ୍ନାନ ହୋଇଥିବା ଯୋଗୁଁ ଆସିକାର ଋଷିକୂଲ୍ୟା ଓ ବଡନଦୀର ସଂଗମ ସ୍ଥଳରେ ଜନସାଧାରଣ ବୁଡ ପକାଇ ଶ୍ରୀରାମଙ୍କ ଦ୍ୱାରା ପ୍ରତିଷ୍ଠିତ ପୁତୁଗେଶ୍ୱର ଏବଂ ଭଞ୍ଜ ବଂଶର ଇଷ୍ଟଦେବୀ ତଥା ଆଦିବାସୀଙ୍କ ପ୍ରାଣର ଦେବତା ମା' ଖମ୍ଭେଶ୍ୱରୀଙ୍କ ପୂଜା ତଥା ଦର୍ଶନ କରି ନିଜ ଜୀବନକୁ ସାର୍ଥକ କରନ୍ତି । ଏଣୁ ଆସନ୍ତୁ ଆମେ ସମସ୍ତେ ମିଳିମିଶି ଆମ ସଂସ୍କୃତିର ସୁରକ୍ଷା କରିବା ।

ଆଇନଜୀବୀ
ଆସିକା, ଗଞ୍ଜାମ

❖ ❖ ❖

# ମହା ସଂକୀର୍ତ୍ତନ ପଦଯାତ୍ରା – ମହାର୍ଘ ଅନୁଭୂତି

**ପୁଷ୍ପାଞ୍ଜଳି ପାଇକରାୟ**

ସେସମୟ ପୂରା ଅଲଗା ଥିଲା । ସେତେବେଳେ ଟଙ୍କା ପଛରେ କେହି ଧାଉଁ ନଥିଲେ । କାହିଁକି ନା ଭୋଗବାଦୀ ନଥିଲେ । ବସ୍ତୁ ମୋହ ନ ଥିଲା । ତେଲ–ଲୁଣ ସଂସାର ପାଇଁ ଯେତିକି ଆବଶ୍ୟକ, ସେତିକି ଯେହ୍ନେ–କେହ୍ନେ କମେଇ ଚଳି ଯାଉଥିଲେ । ବରଂ ଆପଣା ସମ୍ବଳରୁ କିଛି କିଛି ସଞ୍ଚି ଧର୍ମ କାମରେ ଲଗାଉ ଥିଲେ । ସୁଖ–ଦୁଃଖର ସେ ହିଁ ତ ଏକା ସାଥି ! ଭାଗ୍ୟ–ଭବିତବ୍ୟ ତାଙ୍କ ହାତରେ ବନ୍ଧା । ଯାହା ତାଙ୍କର ଇଚ୍ଛା, ସେଇଆ ହିଁ ଅବଶ୍ୟ ଘଟିବ । ଏଇ ବିଶ୍ୱାସ ଟିକକକୁ ପାଥେୟ କରି ସମୟ କଟିଯାଉଥିଲା– ଜୀବନ ଗଡ଼ି ଯାଉଥିଲା ସୁଖରେ, ଶାନ୍ତିରେ, ଆଉ ସେ ସୁଖ–ଶାନ୍ତିର ଆଧାର ଥିଲା ହରି ନାମ– ଶ୍ରୀ ହରି ଶରଣଂ ।

କେହି କାହାକୁ ଡ଼ାକନ୍ତିନି, ବାଧ–ବାଧକତା ନାହିଁ । ଆପେ ଆପେ ସମସ୍ତେ ଏକାଠି ହୁଅନ୍ତି । ସଂଧ୍ୟା ହେଲେ ଭାଗବତ ଟୁଙ୍ଗୀରୁ ଭାସି ଆସେ କେତେ ଜଣାଣ, ଭଜନ, 'କାହିଁକି ଆସିଛୁ ମନ କିସ ନେବା ପାଇଁରେ' ପୁଣି 'ଓଲଟ ବୃକ୍ଷେ ଖେଳୁଛି ଲୋଟଣୀ ପାରା' । ପରେ ନବାକ୍ଷରୀ ଓଡ଼ିଆ ଭାଗବତର ରସାନନ୍ଦ ପଦାବଳୀ ଓ ଶେଷରେ ସଂକୀର୍ତ୍ତନ ।

ସେଇ ଗାଁ ଥିଲା ଏ ସହରଠାରୁ ଭିନ୍ନ । ବହୁ କ୍ଷେତ୍ରରେ ଭିନ୍ନ । ବିଶେଷ କରି ଧାର୍ମିକ ଚେତନା, ସରଳ ନିଷ୍କପଟ ଜୀବନ ଶୈଳୀ ସେ ଗାଁର ବିଶେଷତ୍ୱ ଥିଲା । ନିଆରା ଗାଉଁଲୀ ଜୀବନ ଏ ସହରରେ ମିଳେନି । କତିପୟ ସହରୀ–ସଭ୍ୟତା ହୁଏତ ବଞ୍ଚାଇ ରଖିଥିବେ ସେ ଧାର୍ମିକ ପରମ୍ପରାକୁ । ଅନେକ ଗାଁରେ ବି ଆଉ ଦେଖାଯାଉ ନାହିଁ । ସହର ତ ଦୂରର କଥା !

ମୋର ମନେ ଅଛି । ମାଘ ମାସରେ ଅଷ୍ଟପ୍ରହରୀ ନାମ ଯଜ୍ଞ କଥା । ଆଜି ଭଳି ସେଇ ଗାଁ ଦାଣ୍ଡ ପକ୍କା ନ ଥିଲା । କଚ୍ଚା ରାସ୍ତା ଥିଲା, ବେଶ୍ ଭଲ ଥିଲା । ବିରାଟ ଏକ ବଉଳ ଗଛ ନିକଟରେ ରଘୁନାଥଜୀଉଙ୍କ ମଣ୍ଡପ । ପାଖରେ ଭାଗବତ ଘର । ପୌଷ ଶେଷ ସରିକି ବା ମାଘର ପ୍ରଥମ ନତୁବା ଦ୍ୱିତୀୟ ପକ୍ଷ ବେଳକୁ ଆରମ୍ଭ ହୁଏ ଅଷ୍ଟପ୍ରହରୀ ନାମ ଯଜ୍ଞ । ତିନିଦିନ ଧରି ଗାଁରେ ମହୋତ୍ସବ । ପ୍ରଥମ ଦିନ ଅଧିବାସ, ଦ୍ୱିତୀୟ ଦିନ ନାମଯଜ୍ଞ ଓ ଶେଷ ଦିନ ନଗର କୀର୍ତ୍ତନ । ଦର୍ପଣୀ ସଂରକ୍ଷିତ ଜଙ୍ଗଲରୁ ରେଞ୍ଜରଙ୍କ ଅନୁମତି ନେଇ ଶାଳଗଛ ଓ ଅନ୍ୟାନ୍ୟ ଗଛର ଡ଼ାଳ ଆଣି ଛାମୁଡିଆ ତିଆରି କରାଯାଏ । ଆଜିକାଲିର ବିଜୁଳି ଆଲୁଅ, ଟେଣ୍ଟ ହାଉସ୍, ଲିଟୁ–ଲାଇଟ୍ ସେତେବେଳେ ଥିଲା ଦୁଷ୍ପ୍ରାପ୍ୟ । ପେଟ୍ରୋମାକ୍ସ ଲାଇଟ୍‌ରେ ସବୁ ଚଳିଯାଏ । ଗାଁର ପ୍ରତ୍ୟେକ ପରିବାର ଚାନ୍ଦା ଦିଅନ୍ତି । ଧାନ, ଚାଉଳ ବା ଟଙ୍କା ଯିଏ ଯାହା ଦେଲା ଆପତ୍ତି ନାହିଁ । ସମସ୍ତଙ୍କର ସଂପୃକ୍ତି ଯେପରି ରହେ ତାହା ଥିଲା ଲକ୍ଷ୍ୟ । ସମସ୍ତେ ନିଜର ଅଧିକାର ଓ କର୍ତ୍ତବ୍ୟ ବୋଲି ଅନୁଭବ କରିବା ଦରକାର । ସେଦିନର ଓଡ଼ିଶା କୃଷି ଓ ବୈଷୟିକ ବିଶ୍ୱବିଦ୍ୟାଳୟର ସ୍ୱର୍ଣ୍ଣପଦକ ପ୍ରାପ୍ତ ଛାତ୍ର ସମସ୍ତଙ୍କର ପ୍ରିୟ 'ବାବୁଲି' ବାବୁଲି ଦା' ବାବୁଲି–ନା ଗାଁର ଯୁବକମାନଙ୍କୁ ଧରି ଆୟୋଜନ କରନ୍ତି ନାମ ଯଜ୍ଞ । ଖୁସିରେ, ଆନନ୍ଦରେ, ସ୍ୱତଃ ପ୍ରବୃତ୍ତ ଭାବରେ ସମସ୍ତେ ଦାୟିତ୍ୱ ନିଅନ୍ତି । ତିନି ଦିନ ଧରି ଗଗନ ପବନ ପ୍ରକମ୍ପିତ ହୁଏ ହରି ନାମରେ । ଖାଲ୍‌ସା ଭୋଗ ପାଇଁ ଓ ସନ୍ଧ୍ୟାଆଳତୀ ଦେଖିବା ପାଇଁ ତିନିଖଣ୍ଡି ମୌଜାର ସୁଅ ଛୁଟେ । ସନ୍ଧ୍ୟା ସମୟରେ ହରିବୋଲ, ହୁଳହୁଳି, ଘଣ୍ଟ ଶଙ୍ଖ, ଖୋଳ, ତାଳ, ମୃଦଙ୍ଗ ନାଦରେ ଅଷ୍ଟପ୍ରହରୀ ସ୍ଥଳ କମ୍ପିଉଠେ । ସଂକୀର୍ତ୍ତନ ମଣ୍ଡଳୀଙ୍କ ଉଭାଙ୍ଗ ନୃତ୍ୟ, ହରିବୋଲ, ହରିବୋଲ ଧ୍ୱନିରେ ଏକାକାର ହୁଅନ୍ତି ସଭିଏଁ । ଅପୂର୍ବ ଏକ ଦିବ୍ୟ ଶିହରଣରେ, କାହା ଆଖିରୁ ଆପେ ଝରିପଡେ ଲୋତକର ଧାରା ତ କିଏ ସାଷ୍ଟାଙ୍ଗ ପ୍ରଣିପାତ କରେ । କିଏ ପୁଣି ଚେତାଶୂନ୍ୟ ହୋଇଯାଏ । ଅପୂର୍ବ ସେ ଦୃଶ୍ୟ ! ମହାର୍ଘ ସେ ଅନୁଭବ । ବିଭିନ୍ନ ଗାଁରୁ ନିମନ୍ତ୍ରିତ ସଂକୀର୍ତ୍ତନ ମଣ୍ଡଳୀ ଏକାଠି ହୁଅନ୍ତି । ଚନ୍ଦନ, ସିନ୍ଦୂର ଓ କାଠି–ଫୁଲ ମାଳ

ପିନ୍ଧାଇ ସେମାନଙ୍କୁ ସ୍ୱାଗତ କରିବାର ପରମ୍ପରା ଆହୁରି ଆବେଗମୟ । ହରେ କୃଷ୍ଣ–ହରେ ରାମ, ନିତାଇ ଗୌର ରାଧେ ଶ୍ୟାମ । ନାମ ସଂକୀର୍ତ୍ତନର ତାଳ, ଲୟ, ଅଙ୍ଗ, ଭଙ୍ଗୀ, ଗାୟନ ଶୈଳୀକୁ ନେଇ ଏକ ରକମ ପ୍ରତିଯୋଗିତା ହୁଏ । ଶେଷ ଦିନ ଅଭୁଲା ଦଧି–ହାଣ୍ଡି ଭଙ୍ଗା ଓ ନଗର କୀର୍ତ୍ତନ ଏବଂ ମଉଛୁକ । ଏ କାହାଣୀ ନୁହେଁ, ନିରାଟ ସତ କଥା ଅଷ୍ଟ ପ୍ରହରୀ ସରିବାର ପନ୍ଦର ଦିନ ପର୍ଯ୍ୟନ୍ତ ପ୍ରତିଧ୍ୱନିତ ହୁଏ ସଂକୀର୍ତ୍ତନ ଓ ନାମ–ସ୍ୱର । ଆଖିରେ ଝଲ୍‌ସି ଉଠେ ସଂଧ୍ୟା–ଆଳତୀର ଆବେଗଭରା ଦୃଶ୍ୟ ।

ଏ ଭିତରେ ଗାଁରେ ଅନେକ ପରିବର୍ତ୍ତନ ଆସିଲାଣି । ଲୋକଙ୍କର ଚଳଣିରେ ଢ଼େର୍ ଉନ୍ନତି ଘଟିଲାଣି । କିନ୍ତୁ ମାନସିକତାରେ ଉନ୍ନତି ଘଟିଛି, କି ନାହିଁ ଆକଳନ କରିବା କଷ୍ଟ । ପଚିଶି ବର୍ଷ ତଳର ଭାଇଚାରା ଅଛି କି ନାହିଁ ସନ୍ଦେହ । ଏ ସହରକୁ ଆସିଲା ପରେ ଆଜି ବି ମନେ ପଡ଼େ ସେ ଗାଁର ସଂପ୍ରୀତିର କଥା ମହାର୍ଘ ପରମ୍ପରାର ଗାଥା । ଫଗୁ ଦଶମୀ ବା କାର୍ତ୍ତିକ–ପୂର୍ଣ୍ଣିମାରେ ଏଠି ସଂକୀର୍ତ୍ତନ ପରମ୍ପରା ନାହିଁ । ନା ଏଠି, ନା ଏ ସହର ତଳିର ଆଉ ଏକ ଗାଁରେ, ସେଥିପାଇଁ କୁହାଯାଏ 'ନିଜ ଗାଁ ହିଁ ମା' ।

କିଶୋର ବୟସରେ ହାତରେ ଛୋଟ–ଛୋଟ ଗିନି ଧରି ନଗର–କୀର୍ତ୍ତନ କଲାବେଳେ ନାମ–ଜପର ମହାତ୍ମ୍ୟ ଜ୍ଞାତସାରରେ ନଥିଲା । ଥିଲା କେବଳ ନାମ ଜପ ପ୍ରତି ଏକ ଅହେତୁକ ଆକର୍ଷଣ । କିନ୍ତୁ ନାମ–କୀର୍ତ୍ତନ ଭକ୍ତି ଯୋଗର ଏକ ଅନନ୍ୟ ପନ୍ଥା । ମୋକ୍ଷ ପ୍ରାପ୍ତି ହେଉ ବା ନ ହେଉ, ଦିବ୍ୟ–ଜ୍ଞାନ ଲାଭ ହେଉ ବା ନ ହେଉ, ଏ ସୁନ୍ଦର ପୃଥିବୀକୁ ଅନୁଭବ କରିବାର ଶକ୍ତି ଦେଇଥିବାରୁ ଖାଲି କୃତଜ୍ଞତାରେ ଗୁଣ କୀର୍ତ୍ତନ କର, ନାମ ଜପ କର । ଦୁଇ ହାତ ଟେକି ସମର୍ପଣ କରି ଏତିକି କୁହ, ପ୍ରଭୁ, ଆପଣଙ୍କର ସେବା କରିବା ପାଇଁ ମୋତେ ଅମାପ ଶକ୍ତି ଦିଅ । ଈଶ୍ୱରଙ୍କ ନିମିତ୍ତ ସେବା ମଧ୍ୟରୁ ସଂକୀର୍ତ୍ତନ ଏକ ସେବା, ଯେଉଁଥିରେ ନାମ, ଗୁଣ, ରୂପ ଓ ଲୀଳାକୁ ଅନ୍ତର୍ଭୁକ୍ତ କରାଯାଇଛି । ଶ୍ରୀମଦ୍ ଭାଗବତର ସପ୍ତମ ସ୍କନ୍ଦରେ ନବଧା ଭକ୍ତି ସମ୍ପର୍କରେ ଏହିପରି ଉଲ୍ଲେଖ ଅଛି । ହିରଣ୍ୟକଶିପୁ ପୁତ୍ର ପ୍ରହ୍ଲାଦଙ୍କୁ ପଚାରିଲେ, ହେ ପୁତ୍ର, ତୁମ୍ଭେ ଗୁରୁଙ୍କ ନିକଟରେ ଏତେ ଦିନ ଯାଏ କ'ଣ ଅଧ୍ୟୟନ କଲ ? ଉତ୍ତରରେ ପ୍ରହ୍ଲାଦ କହିଥିଲେ–

ଶ୍ରବଣଂ, କୀର୍ତ୍ତନଂ, ବିଷ୍ଣୌ ସ୍ମରଣଂ
ଅର୍ଚ୍ଚନଂ, ବନ୍ଦନଂ, ଦାସ୍ୟଂ ସରବ୍ୟମାତ୍ମନିବେଦନମ୍

ଅର୍ଥାତ୍ ଭଗବାନ୍ ବିଷ୍ଣୁଙ୍କ ନାମ, ରୂପ, ଗୁଣ ଓ ଶ୍ରବଣ, କୀର୍ତ୍ତନ ଏବଂ ସ୍ମରଣ ତଥା ଭଗବାନଙ୍କ ଚରଣ ସେବା, ପୂଜନ, ବନ୍ଦନ ଓ ଭଗବାନଙ୍କଠାରେ ଦାସ ଭାବ, ସଖା ଭାବ ଏବଂ ନିଜକୁ ସମର୍ପଣ କରିବା ଏ ନବଧା–ଭକ୍ତି ଅଟେ । 'ରାମ ଚରିତ ମାନସ'ରେ ମଧ୍ୟ ଭଗବାନ ଶ୍ରୀରାମ ଶବରୀକୁ ଯେଉଁ ନବଧା–ଭକ୍ତି ସମ୍ପର୍କରେ ବୁଝାଇଥିଲେ, ସେଥିରେ କୀର୍ତ୍ତନ ଓ ଭଗବାନଙ୍କ ଗୁଣ ଗାନ ନିରତ ନିରନ୍ତର ସଜ୍ଜନର ଧର୍ମ ଅଟେ ବୋଲି ବର୍ଣ୍ଣନା ଅଛି । ଭଗବାନଙ୍କ ଲୀଳା, କୀର୍ତ୍ତି, ଶକ୍ତି, ମହିମା, ଚରିତ୍ର, ଗୁଣ ଓ ନାମ ଆଦିର ପ୍ରେମ ପୂର୍ବକ କୀର୍ତ୍ତନ କରିବା ହିଁ କୀର୍ତ୍ତନ ଭକ୍ତି ।

ଶ୍ରୀ ରୂପ ଗୋସ୍ୱାମୀ ଭକ୍ତି–ରସାମୃକ–ସିନ୍ଧୁ ନାମକ ଗ୍ରନ୍ଥରେ କୀର୍ତ୍ତନର ଲକ୍ଷଣ ଏହିପରି ଭାବେ ବର୍ଣ୍ଣନା କରିଛନ୍ତି–

ନାମ–ଲୀଳା–ଗୁଣାଦୀନାର ମୁଚ୍ଚୈର୍ଭାଷା ତୁ କୀର୍ତ୍ତନଂ ଅର୍ଥାତ୍, ଭାଗବାନଙ୍କ ନାମ, ଲୀଳା ଗୁଣାଦିର ଉଚ୍ଚ ଭାଷାକୁ କୀର୍ତ୍ତନ କୁହାଯାଏ । ଯଦି ବହୁତ ଲୋକ ଏକ ସଙ୍ଗରେ କୀର୍ତ୍ତନ କରନ୍ତି ତାକୁ ସଂକୀର୍ତ୍ତନ କୁହାଯାଏ । (ବହୁଭିଃ ମିଳିତ୍ୱା ଯତ୍ କୀର୍ତ୍ତନଂ ତତ୍ ସଂକୀର୍ତ୍ତନଂ) ଏହା ହିଁ କୀର୍ତ୍ତନ ଓ ସଂକୀର୍ତ୍ତନ ମଧ୍ୟରେ ପାର୍ଥକ୍ୟ ଅଟେ ।

ପ୍ରଭାସ–ପୁରାଣରେ ସୁନ୍ଦର ଭାବରେ ନାମ–କୀର୍ତ୍ତନ ସମ୍ପର୍କରେ ବ୍ୟାଖ୍ୟା କରାଯାଇଛି ।

ମଧୁର ମଧୁରଂ ଏ ତନ୍ମଙ୍ଗଳଂ ମଙ୍ଗଳାନାଂ
ସକଳ ନିଗମ ବଲ୍ଲୀ ସତ୍‌ଫଳଂ ଚିତ୍ ସ୍ୱରୂପଂ
ସକୃଦପି ପରିଗୀତଂ ଶ୍ରଦ୍ଧୟା ହେଳୟା ବା
ଭୃଗୁବର ନରମାତ୍ରଂ ତାରୟେତ୍ କୃଷ୍ଣ ନାମ ।

ଅର୍ଥାତ୍ ହେ ଭୃଗୁବର ! ଶ୍ରୀକୃଷ୍ଣ ନାମ ସମସ୍ତ ମଧୁର ପଦାର୍ଥ ମଧ୍ୟରେ ମଧୁର । ସମସ୍ତ ବେଦରୂପ କଳ୍ପଲତାର ଉତ୍କୃଷ୍ଟ ଫଳ ଓ ଚିତ୍ (ବ୍ରହ୍ମ) ସ୍ୱରୂପ । ଏହା ଶ୍ରଦ୍ଧାରେ ହେଉ ବା ହେଳାରେ ହେଉ, ଥରେ ମାତ୍ର ଗୃହୀତ ହେଲେ ମନୁଷ୍ୟ ମାତ୍ରକେ ତ୍ରାଣ କରନ୍ତି ।

ଭାଗବତରେ ଲେଖା ଅଛି – ଏ ମନ ଖୋଜୁଥାଇ ଯାହା, କାଳେ ପ୍ରାପତ ହୁଏ ତାହା । ବର୍ଷାଧିକ କାଳ ଯେଉଁ ପରମ୍ପରାକୁ ଖୋଜୁଥିଲି, ତାହାକୁ ଆବିଷ୍କାର କଲି ସୂଚନା ଓ ଲୋକସମ୍ପର୍କ ବିଭାଗରେ । ପ୍ରତିବର୍ଷ ଅକ୍ଷୟ ତୃତୀୟାରେ ଭକ୍ତ କବି ଜୟଦେବଙ୍କ ଜନ୍ମ ତିଥିରେ ସଂସ୍କୃତ ବିଭାଗ ଓ ଜୟଦେବ ଫାଉଣ୍ଡେସନ୍ ଟ୍ରଷ୍ଟ ଏବଂ ଲୋକସମ୍ପର୍କ ବିଭାଗର ମିଳିତ ଆନୁକୂଲ୍ୟରେ ଆୟୋଜିତ ହୁଏ ଜୟଦେବ ଜୟନ୍ତୀ ଓ ମହା ସଂକୀର୍ତ୍ତନ ପଦଯାତ୍ରା । ଭୁବନେଶ୍ୱରରେ ଅନନ୍ତ ବାସୁଦେବ ମନ୍ଦିରଠାରୁ ଆରମ୍ଭ ହୋଇ ପୁରୀରେ ସମାପନ ହୁଏ । ବର୍ଣ୍ଣନା ଅଛି, ଶ୍ରୀଚୈତନ୍ୟ ଓ ପଞ୍ଚସଖା ଦ୍ୱାଦଶ ଶତାବ୍ଦୀ କାଳରେ ପ୍ରତିବର୍ଷ ପୌଷ ପୂର୍ଣ୍ଣମୀ ତିଥିରେ ଏକାମ୍ର କ୍ଷେତ୍ର ଭୁବନେଶ୍ୱରକୁ ଯାଉଥିଲେ । ସେଠାରେ କୃତ୍ତିବାସ ଲିଙ୍ଗରାଜ

(ହରିହର)ଙ୍କୁ ତୁଳସୀ ଓ ବେଲପତ୍ର ପୂଜା କରି ଅନନ୍ତ ବାସୁଦେବ ମନ୍ଦିରରେ କୀର୍ତ୍ତନ କରି ପ୍ରସାଦ ସେବନ କରୁଥିଲେ । ଏଠାରୁ ସେମାନେ ମକର ସଂକ୍ରାନ୍ତିରେ ମକର ମେଳାରେ ଯୋଗ ଦେବା ପାଇଁ ନିଆଳି-ମାଧବ ଯାଉଥିଲେ । ସେଠାରୁ ଜୟଦେବଙ୍କ ଜନ୍ମସ୍ଥାନ କେନ୍ଦୁଲୀ ଶାସନ ଯାଇ କୀର୍ତ୍ତନ କରୁଥିଲେ । ଶ୍ରୀଚୈତିତନ୍ୟ ଓ ପଞ୍ଚସଖାଙ୍କ ପାଇଁ କେନ୍ଦୁଲୀ ଥିଲା ଏକ ତୀର୍ଥ ସ୍ଥାନ । ସେଠାରୁ ଫେରି ଚନ୍ଦ୍ରଭାଗା, କାକଟପୁର ମଙ୍ଗଳା ପରିକ୍ରମା କରି ପୁରୀରେ ପହଞ୍ଚୁ ଥିଲେ । 'ବୈଷ୍ଣବ ଲୀଳାମୃତ' ଗ୍ରନ୍ଥରେ କବି ମାଧବ ପଟ୍ଟନାୟକ ଲେଖିଛନ୍ତି-

ନିଆଳି ମାଧବେ ଗମନ । ପ୍ରାଚୀରେ ଅଙ୍ଗ ପ୍ରଖ୍ୟାଳନ ।
ମାଧବେ ଭକତି ଅର୍ପଣ । କୀର୍ତ୍ତନ ରାସ ପ୍ରସାରଣ ।।
ବହୁତ ଲୋକ ମେଳ ହୋନ୍ତି । ମକର ମେଳା ସେ କରନ୍ତି ।।
ଗୀତଗୋବିନ୍ଦ ନୃତ୍ୟ ରସେ । ଜୟଦେବର ପରଶଂସେ ।।
କେନ୍ଦୁଲୀ ଗ୍ରାମର ମଧେଣ । କୀର୍ତ୍ତନ ରସ ପ୍ରସାରଣ । ।
ତହୁ ଗମନ୍ତି ଚନ୍ଦ୍ରଭାଗା । ପଡ଼ଇ ମୁହଁ ତହିଁ ରଙ୍ଗା ।।

କିଛି ଗବେଷକଙ୍କ ମତ ଅନୁସାରେ କେନ୍ଦୁଲୀ ଗ୍ରାମ ସନ୍ନିକଟ ରାଧାମାଧବ ମଠରେ ପୂଜା ପାଉଥିବା ରାଧାମାଧବ ବିଗ୍ରହ ଜୟଦେବଙ୍କ ଦ୍ୱାରା ପୂଜିତ ହେଉଥିଲେ । ଶ୍ରୀଚୈତନ୍ୟ ଓ ଓଡ଼ିଆ ପଞ୍ଚସଖା ଏହି ରାଧାମାଧବ ପୀଠରେ ସଂକୀର୍ତ୍ତନ କରି ପ୍ରାଚୀ ନଦୀ କୂଳେ କୂଳେ ଅବସ୍ଥାପିତ ଦ୍ୱାଦଶ ଶମ୍ଭୁ ଓ ଦ୍ୱାଦଶ ମାଧବ ପୀଠ ପରିକ୍ରମା କରିବା ସହ ମାଧବ ଗ୍ରାମରେ ମାଧବାନନ୍ଦ ମନ୍ଦିର, ନିଆଳିର ଶୋଭନେଶ୍ୱର ମନ୍ଦିର, ଅଡ଼ଶପୁରରେ ଜୟଦେବଙ୍କ ସାଧନା ପୀଠ, କାକଟପୁର ମା' ମଙ୍ଗଳାଙ୍କ ପୀଠ, ଚନ୍ଦ୍ରଭାଗା, କୋଣାର୍କ ନବଗ୍ରହ, ରାମଚଣ୍ଡି ଓ ତତ୍‌ପରେ ପୁରୀରେ ଶ୍ରୀମନ୍ଦିର ବେଢ଼ାରେ ସଂକୀର୍ତ୍ତନ କରି ରାସ ଶେଷ କରୁଥିଲେ ।

ଅତୀତର ସେହି ସ୍ମୃତିକୁ ଉଜ୍ଜୀବିତ କରି ଏକ ଆଧ୍ୟାତ୍ମିକ ପରିବେଶ ସୃଷ୍ଟି କରିବା ବା ଜଗନ୍ନାଥ, ଜୟଦେବ ଓ ଗୀତଗୋବିନ୍ଦ ସହ ଶ୍ରୀଚୈତନ୍ୟଙ୍କ ଗଭୀର ଧାର୍ମିକ ଚେତନାର ନିବିଡ଼ ସମ୍ପର୍କ ପ୍ରତିପାଦନ କରିବା ପାଇଁ ଗତ ୨୭ ବର୍ଷ ଧରି ଏପରି ଏକ ବିଶାଳ, ବ୍ୟାପ୍ତ ସଂକୀର୍ତ୍ତନ ରାସ ଆୟୋଜନ କରାଯାଉଛି, ଯାହା ନିଶ୍ଚିତ ଭାବେ ଗର୍ବ ଓ ଗୌରବର କଥା ।

ଭୁବନେଶ୍ୱରରୁ ପୁରୀ ପର୍ଯ୍ୟନ୍ତ ୩ ଦିନର ଏହି ଜୟଦେବ ସଂକୀର୍ତ୍ତନ ପଦଯାତ୍ରା ନିଶ୍ଚିତ ଭାବରେ ଆମ ଗାଁର ଅଷ୍ଟପ୍ରହରୀ ନାମ ଯଜ୍ଞ ଓ ନଗରକୀର୍ତ୍ତନଠାରୁ ବିସ୍ତାରିତ ଓ ପ୍ରଭାବଦାୟୀ । ପଥ ପ୍ରାନ୍ତରେ ଗାଁ ଗାଁରେ ତୋରଣ ମାନ ନିର୍ମାଣ କରି ଜଳଛତ୍ର, ପଣା, ଆତିଥ୍ୟ ଦେବା ଏବଂ ସର୍ବୋପରି ପୁଷ୍ପ, ଚନ୍ଦନ ଦେଇ ହୁଳହୁଳି ଓ ଶଙ୍ଖଧ୍ୱନିରେ କୀର୍ତ୍ତନମଣ୍ଡଳୀକୁ ପାଛୋଟି ନେବାର ଆବେଗ କେବଳ ଅନୁଭବୀ ହିଁ ବୁଝନ୍ତି । ବିନା କିଛି ପାରିଶ୍ରମିକରେ ବିଭିନ୍ନ ସ୍ଥାନରୁ ପାଖାପାଖି ୧୮/୨୦ ସଂକୀର୍ତ୍ତନ ଦଳ ଆସନ୍ତି । ସେମାନଙ୍କୁ ତୋଷାଳୀ ସ୍କ୍ୟାଣ୍ଡଠାରେ ସମ୍ବର୍ଦ୍ଧନା ଦିଆଯାଏ, ରାଜନଅରରେ ଗଜପତି ମହାରାଜା ମଧ୍ୟ ସମ୍ବର୍ଦ୍ଧନା ଦିଅନ୍ତି । ଶ୍ରୀଜଗନ୍ନାଥଙ୍କର ପ୍ରତିନିଧି ଗଜପତି ଦିବ୍ୟସିଂହ ଦେବ ଏକ ସ୍ୱତନ୍ତ୍ର ଭୋଗ ଅର୍ପଣ କରନ୍ତି । ବାସ୍ତବିକ ଏ କଳିଯୁଗରେ ଭବସାଗରରୁ ପାରି ହେବା ପାଇଁ କେବଳ ହରି ନାମ ସାହା ଭରସା । କଠୋର ତପସ୍ୟା, ସାଧନା, ସ୍ୱାଧ୍ୟାୟ, ମନ୍ତ୍ର, ଜପ ବା ଜ୍ଞାନ ବିଜ୍ଞାନ ତୁଳନାରେ ଭକ୍ତି ମାର୍ଗ ହିଁ ଶ୍ରେଷ୍ଠ ମାର୍ଗ । ସେଥିପାଇଁ କୁହାଯାଇଛି ଭକ୍ତିର ସହ, ଆବେଗର ସହ, ଆତୁରତାର ସହ ଥରେ ଡ଼ାକିଦିଅ, ଦୁଇ ହାତ ଟେକି ସମର୍ପଣ କରିଦିଅ, ବୈକୁଣ୍ଠ ଧାମରୁ ଓହ୍ଲାଇ ଆସିବେ । ନିଜେ ଭଗବାନ କହିଛନ୍ତି-

ନାହଂ ତିଷ୍ଠାମି ବୈକୁଣ୍ଠେ
ଯୋଗୀନାଂ ହୃଦୟେ ନ ଚ
ମଦ୍‌ଭକ୍ତା ଯତ୍ର ଗାୟନ୍ତେ
ତତ୍ର ତିଷ୍ଠାମି ନାରଦ ।

ଶ୍ରୀଜୟଦେବ ମହା ସଂକୀର୍ତ୍ତନ ପଦଯାତ୍ରା, ଥରଟିଏ ହେଲେ ମଧ୍ୟ ମୋ ମହାର୍ଘ ଅନୁଭୂତିକୁ ଅତି ମହାର୍ଘ କରିପାରିଛି । ଏକାମ୍ରକାନନରୁ ଉଦ୍‌ଘୋଷିତ ନାମ ସଂକୀର୍ତ୍ତନ ଯାତ୍ରା ପ୍ରାଚୀ ନଦୀର କୂଳେ କୂଳେ ଅସ୍ତାଞ୍ଚଳ ସୂର୍ଯ୍ୟଙ୍କର ରକ୍ତିମ ଆଭା ସହ ବିଚ୍ଛୁରିତ ହୁଏ ଲଳିତା,-ମାଧବ, ତ୍ରିବେଣୀ-ମାଧବ ରାଧା-ମାଧବ, ମୁଦ୍‌ଗଲ ମାଧବଙ୍କ ଚୂଡ଼ାମଣିରେ । ପ୍ରାଚୀର ସୂକ୍ଷ୍ମ ବାଲି ରେଣୁ, ତାଳ, ତମାଳ, କଦମ୍ବ, ଜାଈ ଯୂଈ ଓ ହେନାର ସୁଗନ୍ଧରେ ପ୍ରତିଧ୍ୱନିତ ହୁଏ ଗୀତଗୋବିନ୍ଦର ପଦାବଳୀ,

କଂସାରିରପି ସଂସାର ବାସନାବନ୍ଧ ଶୃଙ୍ଖଳାମ୍,
ରାଧାମାଧାୟ ହୃଦୟେ ତତ୍ୟାଜ ବ୍ରଜସୁନ୍ଦରୀ ।।

ଶ୍ରୀକ୍ଷେତ୍ରରେ ସେହି ବିଶାଳ ନାମ ସଂକୀର୍ତ୍ତନ ପଦଯାତ୍ରା ପ୍ରଭୁଂକ ଚରଣାବିନ୍ଦରେ ସମର୍ପିତ ହୁଏ । ଭାଗ୍ୟରେ ଥିଲେ ସେ ସୁଯୋଗ ମିଳେ !

ସୂଚନା ଓ ଲୋକ ସମ୍ପର୍କ ବିଭାଗ,
ଭୁବନେଶ୍ୱର

# କର୍ମ ହିଁ ଯୁଗେ ଯୁଗେ

**କମଳା କୁମାରୀ ମହାନ୍ତି**

'ଯତ୍ର ନାର୍ଯ୍ୟସ୍ତୁ ପୂଜ୍ୟନ୍ତେ ରମନ୍ତେ ତତ୍ର ଦେବତାଃ'

ଅର୍ଥାତ୍ ମନୁଙ୍କ ବଚନ ଅନୁସାରେ ଯେଉଁଠାରେ ନାରୀମାନେ ପୂଜା ପାଆନ୍ତି, ସେଠାରେ ଦେବତାମାନେ ବିଚରଣ କରନ୍ତି । ପ୍ରାଣୀର ଗୁଣ ଓ କର୍ମାନୁସାରେ ନିର୍ଦ୍ଦେଶିତ ଆଶ୍ରମ ୪ଟି ମଧ୍ୟରୁ ଗୃହସ୍ଥାଶ୍ରମ ଅନ୍ୟତମ । ଏହି ଆଶ୍ରମରେ ପୁରୁଷ ଓ ସ୍ତ୍ରୀ ଉଭୟ ଗୋଟିଏ ମୁଦ୍ରାର ଦୁଇଟି ପାର୍ଶ୍ୱତୁଲ୍ୟ । ଉଭୟ ଉଭୟର ପରିପୂରକ । ନାରୀ ଅବଳା ଦୁର୍ବଳା ନ୍ୟାୟରେ ଅପରାଶ୍ରିତା ହେଲେ ମଧ୍ୟ ଅବହେଳିତା ନୁହେଁ । ତାର ପ୍ରମାଣ–ପ୍ରଥମରେ ବ୍ରହ୍ମଚର୍ଯ୍ୟାଶ୍ରମରେ କନ୍ୟା ପିତାମାତାଙ୍କ ଅଧୀନ ହେଲେ ମଧ୍ୟ ସ୍ୱ ବ୍ରହ୍ମଚର୍ଯ୍ୟର ନିଷ୍ଠାରେ ମୂଳଭିତ୍ତିକୁ ହିଁ ପ୍ରସ୍ତୁତ କରିଥାଏ । ଯହିଁରେ ଅପର ୩ଟି ଆଶ୍ରମର ସୌଧ ନିର୍ମାଣ ସୁଲଭ ହୋଇଥାଏ । ସେଥି ନିମିତ୍ତ ଏକ ଉକ୍ତି– 'ବ୍ରହ୍ମଚର୍ଯ୍ୟେଣ କନ୍ୟା ବିନ୍ଦତେ ପତିମ୍' । ପିତୃମାତ୍ରାଧୀନ ହୋଇ ଗୁରୁବାକ୍ୟାନୁସାରେ ଏକନିଷ୍ଠ ହୋଇ ଅଧ୍ୟୟନରତ ହୋଇଥାଏ । ବୟସର ତାରତମ୍ୟ ଅନୁସାରେ ପିତାମାତାଗୁରୁଙ୍କର ଆଜ୍ଞା ଅଙ୍କୁଶରେ ଶାସିତ ହେତୁ ମନର ବିଚଳିତ ଭାବ ପ୍ରକାଶ ପାଇନଥାଏ । ସ୍ୱାଧ୍ୟାୟଦ୍ୱାରା ଶିକ୍ଷା ଅନ୍ତର୍ମୁଖୀ ହୋଇଥାଏ । ଶିକ୍ଷା ଅନ୍ତର୍ମୁଖୀ ହେଲେ ଇନ୍ଦ୍ରିୟଗୁଡିକ ଦାସତ୍ୱ ସ୍ୱୀକାର କରିଥାନ୍ତି । ଯଦ୍ଦ୍ୱାରା ମୂଳଭିତ୍ତି ସୁଦୃଢ ଭାବରେ ସ୍ଥାପିତ ହୋଇପାରେ । ତତ୍ପରେ ଗୃହସ୍ଥାଶ୍ରମରେ ପ୍ରବେଶ କରି ସ୍ୱଶିକ୍ଷାର ପ୍ରଚାର ପ୍ରସାର କରିଥାଏ ନାରୀ । ତାର ଲବ୍ଧଶିକ୍ଷାର ପ୍ରୟୋଗର ସମୟ ଗୃହସ୍ଥାଶ୍ରମ । ପୁରୁଷ ଶିକ୍ଷିତ ହେଲେ ପରିବାରରେ ଜଣେ ବା ଦୁଇଜଣ ଶିକ୍ଷିତ ହୋଇଥାନ୍ତି କିନ୍ତୁ ନାରୀ ଶିକ୍ଷିତ ହେଲେ ସମଗ୍ର ପରିବାର ଶିକ୍ଷିତ ହେବାସହ ଶୃଙ୍ଖଳିତ ମଧ୍ୟ ହୋଇଥାଏ । ଯଦ୍ଦ୍ୱାରା ଗୃହସ୍ଥାଶ୍ରମ ପାଳନ ସୂଚାରୁ ଭାବରେ ହୋଇପାରେ ।

ଗୃହସ୍ଥାଶ୍ରମରେ ପୁରୁଷ ଓ ନାରୀଙ୍କ ଭୂମିକା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ଓ ଅନସ୍ୱୀ କାର୍ଯ୍ୟ । ନାରୀର ଜୀବନଚର୍ଯ୍ୟାର ପୃଷ୍ଠା ଉନ୍ମୋଚନ କଲେ ତାର ଚାରିକାନ୍ଥ ମଧ୍ୟରେ ଥାଇ ସେ ସେବାଦ୍ୱାରା ପରିବାରବର୍ଗଙ୍କୁ ସନ୍ତୁଷ୍ଟ କରିବାର ସ୍ୱକର୍ମ କ୍ଷେତ୍ରରେ ବ୍ୟାପୃତ ରହି ସ୍ୱ କର୍ମକୁ ସୁଚାରୁରୂପେ କରିବାର ଏପରିକି ଶାସନ କ୍ଷେତ୍ରରେ ମଧ୍ୟ ସ୍ୱ ତୀକ୍ଷ୍ଣ ବୁଦ୍ଧିର ପ୍ରୟୋଗରେ ସେ ଶାସନଦଣ୍ଡ ପ୍ରୟୋଗ କରିବାର ଜଣାଯାଇଥାଏ । ତେଣୁ ନାରୀଶିକ୍ଷା ସର୍ବାଦୌ ସ୍ୱୀକରଣୀୟ । ନାରୀ ନୁହେଁ ରବରଷ୍ଟାମ୍ପ ତାକୁ ଯେ କେହି ସ୍ୱାର୍ଥହାସଲ ନିମିତ୍ତ ଯେକୌଣସି ସ୍ଥାନରେ ପ୍ରୟୋଗ କରିଦେଇପାରିବ । ନାରୀ ନୁହେଁ କାଷ୍ଠପିତୁଳା ତାକୁ ଯେ କେହି ସଂସାରର ଯେକୌଣସି ମଞ୍ଚରେ ନଚାଇପାରିବ । ନାରୀ ମାୟାର ଅବତାରିକା ହେଲେ ମଧ୍ୟ ତାର ଧବ ଯେ କି ସ୍ୱାମୀ ଭଗବାନ ମାଧବ, ତାଙ୍କୁ ସେ ସ୍ୱକର୍ମକ୍ଷେତ୍ର ମଧ୍ୟରେ ଏକନିଷ୍ଠ ଭାବରେ ସେବାଦ୍ୱାରା ସନ୍ତୁଷ୍ଟ କରିବାକୁ ସମର୍ଥ ହୋଇପାରେ । ତେଣୁ ସେହି ନାରୀ କେବଳ ଉପଭୋଗର ଯୋଗ୍ୟ ନୁହେଁ । ସେ ଧ୍ୟାନହେଲେ ବା ଇଚ୍ଛାକଲେ ପୁରୁଷକୁ ଧ୍ୱଂସ ମୁଖରୁ ନିବୃତ୍ତ କରିପାରେ । ଭାଗବତବାଣୀ–

'ସେବା କାର୍ପଣ୍ୟ ତପୋବଳେ
କିବା ଅସାଧ୍ୟ ମହୀତଳେ'

ଅର୍ଥାତ୍ ଧରାରେ ନାରୀ ତାର ଚତୁର୍ପାଶ୍ୱସ୍ଥ ଜନଙ୍କୁ ବିଶ୍ରାମ ଅଥବା କର୍ତ୍ତବ୍ୟ କର୍ମରେ ସେବାକରି ସନ୍ତୁଷ୍ଟ କରିପାରିବା ହିଁ ତପସ୍ୟା ଅଟେ । ଯେହେତୁ 'ସ୍ୱଧର୍ମରେ ଅବସ୍ଥାନ କରିବା ଏକ ତପସ୍ୟା' ବୋଲି ମହାଭାରତରେ ପ୍ରମାଣିତ ଉକ୍ତି– 'ସ୍ୱଧର୍ମବର୍ତ୍ତିତ୍ୱଂ ତପଃ' ସେହି ହେତୁ କାୟମନୋବାକ୍ୟରେ ନାରୀ ତାର ସ୍ୱଧର୍ମ ପାଳନ କରିଥାଏ ।

ଆଜିର ପୁରୁଷ ସମାଜ ସ୍ୱାର୍ଥାନ୍ଧ ହୋଇ ଅର୍ଥାନୁଗମନ କରି ସ୍ୱ କୂଟନୀତି ବା ରାଜନୀତି ପ୍ରୟୋଗରେ ପ୍ରବୀଣ । ସେ

ମଧ୍ୟ ନାରୀର ସୌନ୍ଦର୍ଯ୍ୟରେ ବିମୋହିତ ହୋଇ କେବଳ ଦିବାସ୍ୱପ୍ନ ଦେଖି ନାରୀ ଉପରେ ଅତ୍ୟାଚାର କରିବାକୁ ପଶ୍ଚାତ୍‌ପଦ ହେଉନାହିଁ । ନାରୀଠାରେ ଥିବା ଅନ୍ତର୍ନିହିତ ଶକ୍ତିକୁ ପୁନରୁଜ୍ଜୀବିତ କରିବାରେ ପୁରୁଷ ଅଗ୍ରଣୀ ନହେଲେ ନାରୀ ସମାଜ ପ୍ରସ୍ତରଖଣ୍ଡ ସମ ପତିତ ହୋଇ ରହିଥିବ । ଯେହେତୁ ସମାଜରେ ନାରୀ ଓ ପୁରୁଷ ଗୋଟିଏ ମୁଦ୍ରାତୁଲ୍ୟ ସେହି ହେତୁ ନାରୀ ଜାଗରଣରେ ପୁରୁଷ ଧ୍ୟାନ ଦେବା ବିଧେୟ । ନାରୀ ଏକାଧାରରେ ଜାୟାଜନନୀ ଭଗିନୀଭାବରେ ସର୍ବଜନ ବିଦିତ । ଜାୟା ବା ପତ୍ନୀ ଭାବରେ 'ପତନାତ ତ୍ରାୟତେ ଇତି' ବିଗ୍ରହ ଅନୁସାରେ ପୁରୁଷକୁ ବିପଦରୁ ରକ୍ଷା କରିବାକୁ ସମର୍ଥ ହୋଇଥାଏ । ସ୍ୱାମୀର ସୁଖଦୁଃଖର ସାଥୀ ହେବାସହ ଧର୍ମ ଅର୍ଜନରେ ସହାୟକ ହୋଇଥାଏ । ଜନନୀ ଭାବରେ ସନ୍ତାନକୁ ଜନ୍ମ ଦେଇ ତାକୁ ନୈତିକ ଶିକ୍ଷାଦି ପ୍ରଦାନ କରି ସମାଜରେ ପ୍ରତିଷ୍ଠା ଆଣିଦେବା ପାଇଁ ମୂଳଭିତ୍ତି ପ୍ରସ୍ତୁତି କରିଥାଏ । ଭଗିନୀ ଭାବରେ ଭାଇର ସୁରକ୍ଷା ପାଇଁ ମଧ୍ୟ ସତତ ଚେଷ୍ଟିତ ଥାଏ ।

ଆଜିର ନାରୀ ସମାଜ ଶିକ୍ଷା, ଶାସନ, ବିଜ୍ଞାନ ଆଦି କ୍ଷେତ୍ରରେ ଅଗ୍ରଣୀ ହୋଇଛି । ପ୍ରତି ପଦକ୍ଷେପରେ ସ୍ୱବିଦ୍ୟା ବୁଦ୍ଧିବଳରେ ପୁରୁଷର ସମକକ୍ଷ ହେବା ସହ ଦୁଇପାଦ ଆଗରେ ରହିବାକୁ ସମର୍ଥ ହୋଇଛି । ତେଣୁ ନାରୀଠାରେ ଥିବା ସୁପ୍ତବୀଜର ଅଙ୍କୁରୋଦ୍‌ଗମ ପାଇଁ ପୁରୁଷ ସମାଜ ସହଯୋଗର ହସ୍ତ ପ୍ରସାରଣ କରିବା ବିଧେୟ । ନବ୍ୟ ଉଦାରବାଦୀ ସଂସ୍କୃତିରେ ମହିଳାଙ୍କୁ ପଣ୍ୟ ଭାବରେ ବ୍ୟବହାର କରାଯାଉଛି । ସେଥିପ୍ରତି ଜନସମାଜ ସଚେତନ ହେବା ବିଧେୟ । ଏପରିକି ଗୃହ ମଧ୍ୟରୁ ଆରମ୍ଭ କରି ସରକାରଙ୍କ ପର୍ଯ୍ୟନ୍ତ ଦୃଷ୍ଟି ନିକ୍ଷେପ କଲେ ନାରୀ ସୁରକ୍ଷା ସହଜକର ହେବ ଏଥିରେ ସନ୍ଦେହ ନାହିଁ । ସର୍ବସାଧାରଣଙ୍କ ସଚେତନତାରେ ଜାଗରଣ ସୃଷ୍ଟି କରିବା ଉପରେ ଗୁରୁତ୍ୱାରୋପ କରିବା ଉଚିତ୍ ।

ପ୍ରତି ଯୁଗରେ ନାରୀ ହିଁ ଇତିହାସ ସୃଷ୍ଟିକରି ଆସୁଛି । ନାରୀଠାରେ ଥିବା କାମ, ମୋହଶକ୍ତି ପୁରୁଷକୁ ମୋହାନ୍ଧ କରିଦିଏ ଯଦ୍ୱାରା ପୁରୁଷ ଦୁର୍ନୀତିଗ୍ରସ୍ତ ହୋଇ ସମାଜକୁ ଧ୍ୱଂସାଭିମୁଖୀ କରିଥାଏ । ନାରୀର ଉଗ୍ରଶକ୍ତି ସମାଜ ପାଇଁ ନିଶ୍ଚୟ କଳଙ୍କ । ନାରୀର ସଦିଚ୍ଛା ସଦ୍‌ଶିକ୍ଷା ସଦାଚାର ପାଳନ ପରିବାରରୁ ହିଁ ପ୍ରାପ୍ତ ହୋଇଥାଏ । ମୂଳପିଣ୍ଡକୁ ସୁଦୃଢ କରିପାରିଲେ ଶିଶୁକନ୍ୟାର ଜୀବନ ବୃକ୍ଷକୁ ହୃଷ୍ଟପୁଷ୍ଟ କରିବା ନିମିତ୍ତ ଚତୁଃପାର୍ଶ୍ୱରୁ ସହଯୋଗର ହସ୍ତ ସମାଜ ହିଁ ପ୍ରସାରଣ କରିଥାଏ । ନାରୀର ସ୍ୱଭାବ, ଚରିତ୍ର ଗଠନରେ ତାର ଶିକ୍ଷା ଏକାନ୍ତ ଆବଶ୍ୟକ । ଯେଉଁ ଶିକ୍ଷାର ଆଧାର ଆଧ୍ୟାତ୍ମିକ ଶିକ୍ଷା ଅଟେ । 'ଦୃଷ୍ଟି ଅନୁସାରେ ସୃଷ୍ଟି' ନ୍ୟାୟରେ ନାରୀର ଦୃଷ୍ଟିରେ ଆତ୍ମଜ୍ଞାନ ଉଦ୍ରେକ ହେଲେ ସେ ରୂପବତୀ ହୋଇଥିଲେ ମଧ୍ୟ ପୁରୁଷର କାମକୁ ଦମନ କରିବାକୁ ସମର୍ଥ ହୋଇଥାଏ । ପୁରୁଷର ଗର୍ବଗୌରବର ମୂଳଭିତ୍ତି ହିଁ ନାରୀ ବୋଲି ପ୍ରମାଣିତ ହୋଇପାରିଛି । ଯଦ୍ୱାରା ପତିପତ୍ନୀ ଗୃହସ୍ଥ ହେଲେ ମଧ୍ୟ ଆଶ୍ରମ ଜୀବନଯାପନ କରିପାରନ୍ତି । ପତିପତ୍ନୀଙ୍କ ସହବନ୍ଧନ ଏହି ଆଶ୍ରମରେ ଦୃଢ ହେଲେ ଅପରାଶ୍ରମ ଦୁଇଟି ପାଳନ ଅଦୃଷ୍ଟ ଭାବରେ ସୁକର ହୋଇଥାଏ ଯଦ୍ୱାରା ପୂର୍ଣ୍ଣାଙ୍ଗ ଜୀବନଯାପନ ସମ୍ଭବ ହୋଇଥାଏ । 'କର୍ମ ହିଁ ଭଗବାନ' ବୋଲି ନାରୀ ତାର ଜୀବନଚର୍ଯ୍ୟାରେ ପ୍ରମାଣ କରିଦେବା ସହ ପୁରୁଷକୁ ମଧ୍ୟ ସେହି ପଥର ପଥିକ ସଜାଇ ଦେଇଥାଏ । ଓଡ଼ିଆ ସାହିତ୍ୟର କୁନ୍ତଳା କୁମାରୀଙ୍କ ଭାଷାରେ–

'ବଡ ହୁଏ ଯଦି ପୂର୍ଣ୍ଣଚନ୍ଦ୍ର ପରି
ଆଉ ନପାରିବ ବଢି
ଫୁଟିଲା ଫୁଲ କି ଫୁଟେ ଆଉ ଥରେ
ଫୁଟେ ସିନା ଫୁଲ କଢି (ଛୋଟବଡ)

ପ୍ରତିପଦାଠାରୁ ଆରମ୍ଭ କରି ପୂର୍ଣ୍ଣିମା ଚନ୍ଦ୍ରର ଆକୃତି ପରି ଗର୍ଭସ୍ଥଶିଶୁ କନ୍ୟାର ସୁରକ୍ଷା ସମ୍ପୂର୍ଣ୍ଣ ଭାବରେ ପିତାମାତାଙ୍କ ଉପରେ ନ୍ୟସ୍ତ ଯଦ୍ୱାରା ଭୂମିଷ୍ଠ ଶିଶୁ କନ୍ୟା ତାର ପରିବାରରୁ ସଂଯମତା ଶିକ୍ଷା କରି ତାର କର୍ମକଳିକାକୁ ବିକଶିତ କରେ ଯା'ର ସୁବାସ ଚତୁର୍ଦ୍ଦିଗକୁ ପରିବ୍ୟାପ୍ତ ହୋଇଥାଏ । ସେ ପୂର୍ଣ୍ଣଚନ୍ଦ୍ର ତୁଲ୍ୟ ଆଲୋକ ବିତରଣ କରିପାରେ ।

ସମ୍ପ୍ରତି ସମାଜରେ ପରିଦୃଷ୍ଟ ଦୁର୍ନୀତି, ଭ୍ରଷ୍ଟାଚାରାଦି ଗଣଶିକ୍ଷାର ଏକ ଅଂଶ ବିଶେଷ ସମ୍ବାଦପତ୍ରର ପ୍ରଥମ ପୃଷ୍ଠାକୁ ମଣ୍ଡନ କରୁଥିବା ଏବଂ ଗଣଶିକ୍ଷାର ଅପରାଂଶ ଦୂରଦର୍ଶନର ମୁଖ୍ୟ ସମ୍ବାଦଭାବରେ ସ୍ଥାନ ପାଉଥିବା ବିଷୟ ସବୁ ପିତାମାତାଙ୍କ ଅର୍ଥଲୋଭ ହେତୁ କାର୍ଯ୍ୟକଳାପ ଓ ରଙ୍ଗୀନ ଚଷମାଧାରୀ ସନ୍ତାନସନ୍ତତିକି କୃତି ସବୁରେ ସାମାଜିକ ଶିକ୍ଷାର ମେରୁଦଣ୍ଡ ଭଗ୍ନପ୍ରାୟ, ଯା'ର ମୁଖ୍ୟ ଔଷଧ କେବଳ ଆତ୍ମିକ ଶିକ୍ଷା ବ୍ୟତିରିକେ ଅନ୍ୟ କିଛି ନାହିଁ । ଯାହା କି ସତ୍ତ୍ୱ ଗୁଣକୁ ଉଦ୍ରେକ କରାଇ ଦୁର୍ଗୁଣକୁ ବିନାଶ କରିଥାଏ । ଏହି ଶିକ୍ଷା ସାର୍ବଜନୀନ ହେଲେ ଆମର ଆପାଦ ମସ୍ତକ ଶୁଦ୍ଧ ଓ ପୂତ ହେବ, ଏଥିରେ ସନ୍ଦେହ ନାହିଁ ।

ଅଧ୍ୟକ୍ଷା, ସଂସ୍କୃତ ବିଭାଗ
କଖଡି ଜୁନିୟର କଲେଜ
କଖଡି ଚଷାପଡା, କଖଡି, କଟକ

# ପିଲାଙ୍କ ପାଠ୍ୟପୁସ୍ତକର ସ୍ରଷ୍ଟା: ଐତିହାସିକ କେଦାର ନାଥ

ଡକ୍ଟର ଲାବଣ୍ୟଚନ୍ଦ୍ର ସାହୁ

ସ୍ୱର୍ଗୀୟ କେଦାରନାଥ ମହାପାତ୍ର ଥିଲେ ଜଣେ ଇତିହାସର ଛାତ୍ର, ଇତିହାସର ଶିକ୍ଷକ, ଗବେଷକ, ସର୍ବୋପରି ପ୍ରତ୍ନତତ୍ତ୍ୱବିତ୍ । ତାଙ୍କର ଜଣେ ଅନ୍ତରଙ୍ଗ ସାଥୀ ଓ ସହକର୍ମୀ ପଣ୍ଡିତ ନୀଳମଣି ମିଶ୍ରଙ୍କର ଭାଷାରେ କେଦାରନାଥ ଥିଲେ '୧୯୩୦ରୁ ୧୯୮୦' ଯାଏ ଜଣେ ବହୁମୁଖୀ ପ୍ରତିଭାସମ୍ପନ୍ନ ବ୍ୟକ୍ତି । 'ଓଡ଼ିଶା ଓ ଭାରତ ଇତିହାସ'ର ଜଣେ ପ୍ରଗଲଭ ପ୍ରବକ୍ତା, ଦକ୍ଷ ବ୍ୟାଖ୍ୟାକାର ତଥା ପ୍ରବୀଣ ଗବେଷକ । କେଦାରନାଥଙ୍କ ଜନ୍ମ ଏକାମ୍ରସିଦ୍ଧ କ୍ଷେତ୍ର, ପ୍ରାଚୀନ ମନ୍ଦିର ମାଳିନୀ ଭୁବନେଶ୍ୱରରେ ତା ୨୧.୧୦.୧୯୧୧ ଅମାବାସ୍ୟା ତିଥିରେ ଏକ ରାଜବୈଦ୍ୟ ପରିବାରରେ ପିତା ଗୋପୀନାଥ ମହାପାତ୍ର ଜଣେ ସୁନାମ ଧନ୍ୟ ବୈଦ୍ୟ । ମାତା ରାଧିକା ଦେବୀ ସୁଗୃହିଣୀ । ସେ ଥିଲେ ପିତାମାତାଙ୍କର ଜ୍ୟେଷ୍ଠ ସନ୍ତାନ । ତାଙ୍କ ହେତୁ ପାଇବା ଦିନୁ ପ୍ରାଚୀନ ଭୁବନେଶ୍ୱରର ଶତଶତ ଭଗ୍ନମନ୍ଦିର, ସ୍ତୁପ, ତୋରଣ ଦେଖି ବ୍ୟଥିତ ହୋଇଥିଲେ । ବଡହେଲେ, ଦିନେ ଏହାର ସୁରକ୍ଷା ଓ ଜୀର୍ଣ୍ଣସଂସ୍କାର କରିବାକୁ ଦୃଢ ଶପଥ ନେଇଥିଲେ । ତେଣୁ ଛାତ୍ରାବସ୍ଥାରୁ ଉତ୍କଳର ସାହିତ୍ୟ ଇତିହାସ, ପ୍ରତ୍ନତତ୍ତ୍ୱ ସମ୍ବନ୍ଧରେ ଆଲୋଚନା, ଅଧ୍ୟୟନ, ଅନୁସନ୍ଧାନ କାର୍ଯ୍ୟରେ ନିଜର ମନୋନିବେଶ କରିଥିଲେ ।

ଚାଟଶାଳୀ ପଢା ଶେଷରେ ମଧ୍ୟ ଇଂରାଜୀ, ଉଚ୍ଚ ଇଂରାଜୀ ତଥା ରେଭେନ୍ସା କଲେଜରୁ ଇତିହାସରେ ଅନର୍ସ ଡିଗ୍ରୀ ହାସଲ କରି ଉତ୍ତୀର୍ଣ୍ଣ ହେଲେ । ଏହାପରେ ସେ ଇତିହାସ ଶିକ୍ଷକ ଭାବରେ କିଛିକାଳ ଖୋର୍ଦ୍ଧା, ବାଙ୍କୀ, ଭିକ୍ଟୋରିଆ (ଭକ୍ତ ମଧୁ), ପ୍ୟାରୀମୋହନ ଏକାଡେମୀରେ ପଢାଇଲେ । ମାତ୍ର ଉତ୍କଳର ପ୍ରାଚୀନ ଗୌରବମୟ ଇତିହାସର ବାଣୀ ତାଙ୍କ ହୃଦୟରେ ନିନାଦିତ ହେଉଥିଲା । ତେଣୁ ଶିକ୍ଷକତା ସମୟରେ ସେସମୟର ପ୍ରଖ୍ୟାତ ଐତିହାସିକ ରାଖାଲଦାସ ବାନାର୍ଜୀ, ରମାପ୍ରସାଦ ଚାନ୍ଦ, ପ୍ରଭାତ ମୁଖାର୍ଜୀଙ୍କ ସହିତ ସମ୍ପର୍କ ରକ୍ଷାକରି ଉତ୍କଳର ପ୍ରାଚୀନ ଐତିହାସିକ କୀର୍ତ୍ତି ସମ୍ବନ୍ଧରେ ଅଧିକ କିଛି ଅଧ୍ୟୟନ ଓ ଆଲୋଚନା ଅବ୍ୟାହତ ରଖିଥିଲେ । ୧୯୩୭ ଖ୍ରୀରେ ଓଡ଼ିଶାରେ କଲଚରାଲ୍ ସୋସାଇଟି ଓଡ଼ିଶା ଏକାଡେମୀ ପ୍ରତିଷ୍ଠା ହେବାରୁ କେଦାରନାଥ ଏହାର ସଦସ୍ୟ ରହିଲେ । ଏହି ସମୟରେ ତାଙ୍କ ରଚିତ ଦୁଇଟି ଇତିହାସ ପାଠ୍ୟପୁସ୍ତକ ଯଥା–(୧) ପ୍ରାଚୀନ ଭାରତ ଇତିହାସ ଓ (୨) ଉଚ୍ଚ ପ୍ରାଥମିକ ଭାରତ ଇତିହାସକୁ ସରକାର ବିଦ୍ୟାଳୟରେ ପାଠ୍ୟପୁସ୍ତକ ଭାବରେ ସ୍ୱୀକୃତି ଦେଲେ । ଏହାପରେ ସେ ପ୍ରାଚୀନ ଓ ନୂତନ ସିଲାବସ ଅନୁଯାୟୀ ଛୋଟଛୋଟ ପିଲାଙ୍କ ମନକୁ ଛୁଇଁବା ଭଳି ବିଷୟ ସଂଯୁକ୍ତ କରି ୨ୟ ଶ୍ରେଣୀଠାରୁ ୧୧ଶ ଶ୍ରେଣୀଯାଏ ପିଲାଙ୍କ ପାଇଁ ଇତିହାସ ଓ ସାମୂହିକ ପାଠ ବହି ଲେଖିଚାଲିଲେ ।

ସେହି ପାଠ୍ୟପୁସ୍ତକଗୁଡିକ ମଧ୍ୟରେ ଥିଲା–

(୧) ନିମ୍ନ ପ୍ରାଥମିକ ନୂତନ ଭାରତ ଇତିହାସ (୨ୟ–୩ୟ ଶ୍ରେଣୀ) (୨) ଭାରତବର୍ଷର ସରଳ ଇତିହାସ (୧୯୪୭–୬ଷ୍ଠ–୭ମ) (୩) ଅଭିନବ ଭାରତ ଇତିହାସ (୧୯୩୭– ୬ଷ୍ଠ–୭ମ), (୪) ମଧ୍ୟ ନୂତନ ଭାରତ ଇତିହାସ (୬ଷ୍ଠ–୭ମ) (୫) ଉଚ୍ଚପ୍ରାଥମିକ ନୂତନ ଭାରତ ଇତିହାସ (୧୯୪୯–୪ର୍ଥ–୫ମ) (୬) ଅଭିନବ ସାମାଜିକ ଶିକ୍ଷା (୧ମ–୨ୟ, ୬ଷ୍ଠ) (୭) ଅଭିନବ ଇଂଲଣ୍ଡ ଇତିହାସ –୧ମ (୧୯୪୦–୮ମ ଶ୍ରେଣୀ) (୮) ଅଭିନବ ପୃଥିବୀ ଇତିହାସ (୧୯୫୭–୮ମ) (୯) ଅଭିନବ ସାମାଜିକ ଶିକ୍ଷା– (୨ୟ ଭାଗ–୮ମ) (୧୦) ସଂକ୍ଷିପ୍ତ ଭାରତ ଇତିହାସ (୧୯୫୧– (ପ୍ରବେଶିକା ପରୀକ୍ଷା ପାଇଁ) (୧୧) ନବୀନ ଭାରତ ଇତିହାସ (୧ମ–୨ୟ) (୧୨) ସଂକ୍ଷିପ୍ତ ଭାରତ ଇତିହାସ(୬ଷ୍ଠ–୭ମ) ଇତ୍ୟାଦି ।

ଏହି ପୁସ୍ତକଗୁଡ଼ିକର ପ୍ରକାଶକ ଥିଲେ ପ୍ରସାଦ ବ୍ରଦର୍ସ କଟକ, କଟକ ଷ୍ଟୁଡେଣ୍ଟ ଷ୍ଟୋର୍ ଆଦି ପ୍ରକାଶକ । ଏହାର ମୂଲ୍ୟ- ଆଠଅଣା, ଦଶ ଅଣା, ବାରଅଣା ଏବଂ ତାଙ୍କୁ ଯେତେବେଳେ ବୟସ ୨୫-୨୬ ବର୍ଷ ହୋଇଥିଲା ସେ ପାଠବହି ଲେଖା ଆରମ୍ଭ କଲେ ।

ପରବର୍ତ୍ତୀ ଜୀବନରେ ଇତିହାସର ଉଚ୍ଚାଙ୍ଗ ଗବେଷଣା, ଆଲୋଚନା ଚର୍ଚ୍ଚା ଫଳରେ ବହୁ ମୂଲ୍ୟବାନ୍ ଇତିହାସ ଗ୍ରନ୍ଥ ରଚନା କରି ଉତ୍କଳର ବାଣୀ ଭଣ୍ଡାରକୁ ସମୃଦ୍ଧ କରିଛନ୍ତି । ସେଗୁଡ଼ିକ ମଧ୍ୟରେ ଖୁରୁଧାର ଇତିହାସ, ଭୁବନେଶ୍ୱର ଶିଳାଲେଖ, ଧଉଳିର ଇତିହାସ, ପ୍ରାଚୀନ ଉତ୍କଳର ରାମଉପାସନା, ଜୟଦେବ ଓ ଗୀତଗୋବିନ୍ଦ ଇତ୍ୟାଦି । ୧୯୪୮-୪୯ ମସିହାରେ କଳାହାଣ୍ଡି, ମହାରାଜାଙ୍କ ଅନୁରୋଧକ୍ରମେ କଳାହାଣ୍ଡି ଯାଇ ସେଠାରେ ବହୁ ପ୍ରାଚୀନ କୀର୍ତ୍ତି ଉଦ୍ଧାର କରିଥିଲେ । ତାଙ୍କର ସମସ୍ତ ଇଂରାଜୀ ଗବେଷଣାମୂଳକ ପ୍ରବନ୍ଧକୁ ନେଇ Orissa Historical Research Journal Special Issue-1982 ପ୍ରକାଶିତ ହୋଇଛି । ଖ୍ରୀ ୧୯୫୦ରେ ସେ ରାଜ୍ୟ ସଂଗ୍ରହାଳୟରେ ଆସିଷ୍ଟାଣ୍ଟ କ୍ୟୁରେଟର ଭାବରେ ଯୋଗଦେଇ ତାଳପତ୍ର ପୋଥି ବିଭାଗର ଦାୟିତ୍ୱରେ ରହିଲେ । କୀଟଦଂଷ୍ଟ ପୋଥିଗୁଡ଼ିକୁ ନିଜେ ଝାଡି ସଫାକରି ଏହାକୁ ଧର୍ମ, ତନ୍ତ୍ର, ଜ୍ୟୋତିଷ, ବ୍ୟାକରଣ ଏହିପରି ବିଭାଗୀକରଣ କରି ସଜାଇ ରଖିଲେ । ପ୍ରାଚୀନ ତାଳପତ୍ର ପୋଥିଗୁଡ଼ିକ ଉଦ୍ଧାର ଏବଂ ପାଠ ପରେ ଉତ୍କଳର ବହୁ ବିଦ୍ୱାନ କବି, କୋବିଦ, ଅଳଙ୍କାରିକଙ୍କ କୃତୀ ଲୋକଲୋଚନକୁ ଆସିଲେ । ଏଣୁ ଓଡ଼ିଆ ସଂସ୍କୃତ ବିଦ୍ୱାନ୍‌ଙ୍କ ଯଶକୀର୍ତ୍ତି ଜଣାପଡିଲା ସେ ତାଳପତ୍ର ପୋଥି ସମ୍ବନ୍ଧିତ ୪ଖଣ୍ଡ କାର୍ଟଲେଗ୍ ପ୍ରକାଶିତ କଲେ । ୧୯୬୨ରେ ଅଧକ୍ଷ ଦାୟିତ୍ୱ ନେଲେ । ଛାତ୍ର, ଶିକ୍ଷକ ଏବଂ ମ୍ୟୁଜିୟମ୍‌ରେ କାର୍ଯ୍ୟରତ ଥିବା ସମୟରେ ସେ ବହୁତ ବରିଷ୍ଠ ସାରସ୍ୱତ ସାଧକ, ଗବେଷକଙ୍କ ସହିତ ସମ୍ପର୍କ ରକ୍ଷା କରି ଗବେଷଣା, ସଂସ୍କାର, ଭଗ୍ନକୀର୍ତ୍ତି ଉଦ୍ଧାର କ୍ରିୟାକୁ ତ୍ୱରାନ୍ୱିତ କରିଥିଲେ । ସେମାନଙ୍କ ମଧ୍ୟରେ ଥିଲେ ପ୍ରାଚୀ ସମିତିର ପ୍ରତିଷ୍ଠାତା ଡକ୍ଟର ଆର୍ତ୍ତବଲ୍ଲଭ ମହାନ୍ତି, କଳିଙ୍ଗ ଭାରତୀ ପ୍ରତିଷ୍ଠାତା, ବିଚ୍ଛନ୍ଦଚରଣ ପଟ୍ଟନାୟକ, ଭାଷାକୋଷ ପ୍ରଣେତା, ଗୋପାଳ ଚନ୍ଦ୍ର ପ୍ରହରାଜ, ଆଚାର୍ଯ୍ୟ ହରିହର, ପଣ୍ଡିତ ନୀଳକଣ୍ଠ, ପଣ୍ଡିତ ଗୋଦାବରୀଶ ମିଶ୍ର, ଗୋପବନ୍ଧୁ ଚୌଧୁରୀ, ଐତିହାସିକ ହରେକୃଷ୍ଣ ମହତାବ । ଗବେଷଣାରେ ମାର୍ଗଦର୍ଶକ ଭାବରେ ଶ୍ରୀମତୀ କପିଳା ବାତ୍ସାୟନ (ଗୀତଗୋବିନ୍ଦ ଜୟଦେବ ଗବେଷକ) ଶ୍ରୀମତୀ ମାଗାଲିକ (ଦେବଦାସୀ ପ୍ରଥା ଗବେଷିକା) ଆଦିଙ୍କୁ ଗବେଷଣାରେ ସହଯୋଗ କରି ଓଡ଼ିଶାର କଳା-ସଂସ୍କୃତିକୁ ବିଶ୍ୱ ଦରବାରରେ ପହଞ୍ଚାଇଛନ୍ତି ।

୧୯୮୧ ଏପ୍ରିଲ୍ ୨୦ ତାରିଖରେ ଏହି ନଥିଳସ ଇତିହାସ ବେତ୍ତାଙ୍କ ଦେହାନ୍ତ ହେଲା । ତାଙ୍କ ସ୍ମୃତିରେ କେଦାରଗୌରୀ ମାର୍ଗରେ 'କେଦାରନାଥ ଗବେଷଣା ପ୍ରତିଷ୍ଠାନ', ତାଙ୍କ କନିଷ୍ଠଭ୍ରାତା ଗୁଣନିଧି ମହାପାତ୍ରଙ୍କ ତତ୍ତ୍ୱାବଧାନରେ ଗଢିଉଠିଛି । ଏଠାରେ ବହୁ ଦୁର୍ଲଭ ତାଳପତ୍ର ପୋଥି ସଂରକ୍ଷିତ ହୋଇ ରହିବା ସହିତ ଗବେଷଣା କାର୍ଯ୍ୟ ଚାଲିଛି ।

ଶ୍ରାବସ୍ତୀ
୩୫, ବସଂତ ବିହାର
ଭୁବନେଶ୍ୱର-୧୮

❖ ❖ ❖

# ବାଙ୍କୀର ଅଧିଷ୍ଠାତ୍ରୀ ଦେବୀ ମା’ ଚର୍ଚ୍ଚିକା

ଶରତ ଚନ୍ଦ୍ର ମହାପାତ୍ର

ବାଙ୍କୀର ଅଧିଷ୍ଠାତ୍ରୀ ଦେବୀ ଲାସ୍ୟମୟୀ, ହାସ୍ୟମୟୀ, ବିଘ୍ନବିନାସିନୀ, ଶକ୍ତି ପ୍ରଦାୟିନୀ ମା’ ଚର୍ଚ୍ଚିକା ସ୍ୱର୍ଗ, ମର୍ତ୍ତ୍ୟ, ପାତାଳ ତିନିପୁରର ମା’ରୂପେ ପରିଗଣିତା । ମୁଁ ଅକିଞ୍ଚନ, ମୋର ଜ୍ଞାନ ନାହିଁ, ମୋର ବାକ୍ୟ ନାହିଁ ମୁଁ ବା କ’ଣ ତାର ମହିମା ପରାକାଷ୍ଠା ଗାନ କରିବି । ସ୍କନ୍ଦ ପୁରାଣ, ବୌଦ୍ଧତନ୍ତ୍ର, ଭୃଗୁସଂହିତା, ମହାଭାରତ, କୂର୍ମପୁରାଣ, ସପ୍ତସତୀ, ଦୁର୍ଗା କବଚ, ଚଣ୍ଡୀପୁରାଣ, ଦେବୀ ଶତକମ୍‌ରେ ମା’ଙ୍କ ମହିମା ବର୍ଣ୍ଣିତ ହୋଇଅଛି । ଉତ୍କଳର ପ୍ରସିଦ୍ଧ ତୀର୍ଥମାନଙ୍କ ମଧ୍ୟରେ ମା’ ଚର୍ଚ୍ଚିକାଙ୍କ ଅଷ୍ଟକୀଳା ରୂପେ ମହିମାର ସ୍ୱତନ୍ତ୍ରତା ରହିଛି । ମା’ ହେଉଛନ୍ତି ୬୪ ଯୋଗିନୀ ସମ୍ଭୁତା । ବାଙ୍କୀରେ ମଙ୍ଗଳା, ବ୍ରହ୍ମେଇ, ଆଦିମାତା, କନ୍ଧକନ୍ଧୁଣୀ, ରତନେଶ୍ୱରୀ, ବ୍ରାହ୍ମଣୀଦେବୀ,





କଳାପାଟ, ଚଣ୍ଡୀ, ସୁନାଦେଇ, ଦିଅଁ ମଙ୍ଗଳା, ଦୁହିତାଶୁଣୀ, ଗ୍ରାମଦେବତୀ, ଷଠୀ ଦୁଶେଇ, ସାହାଡେଇ, କ୍ଷେତ୍ରପାଳ ଏସବୁ ଯୋଗିନୀ ପରିବେଷ୍ଟିତା ମା’ ଚର୍ଚ୍ଚିକା । ଏମାନେ ମା’ଙ୍କୁ ବଡ ଭଉଣୀରୂପେ ମାନନ୍ତି । ଷୋଳପୂଜା, ଦେଶଭୋଗ, ମହାଷ୍ଟମୀ, ମହାନବମୀ, ମେଷ ସଂକ୍ରାନ୍ତି, ବାସନ୍ତିକ ପର୍ବପର୍ବାଣିମାନଙ୍କରେ ବଳିଭୂଜା, ପଣାପାଣି ଦେଇ ସନ୍ତୁଷ୍ଟ କରି ମା’ ସେମାନଙ୍କୁ ନିଜର ପାର୍ଶ୍ୱବର୍ତ୍ତୀ ସ୍ଥାନରେ ରଖିଛନ୍ତି । ତେଣୁ ଏହି କ୍ଷେତ୍ରରେ ଯୋଗିନୀମାନଙ୍କର ଦୁଷ୍ଟ ପ୍ରକୃତି ନାହିଁ ଓ ଅନ୍ୟ ଦୁଷ୍ଟ ଶକ୍ତିମାନଙ୍କୁ ବାଙ୍କୀ ରାଇଜରେ ପ୍ରବେଶ କରିବାକୁ ଦିଅନ୍ତି ନାହିଁ । ମା’ଙ୍କ ଆସ୍ଥାନ ଥିବା ଗିରିର ନାମ ‘ରୁଚିକ ଗିରି’, ପୀଠର ନାମ ‘ପର୍ଶୁରାମ ପୀଠ’ ରୁଚୀକ ଗିରି ପାଦ ସ୍ପର୍ଶ କରି ବହିଯାଉଥିବା ନଦୀ ରେଣୁକା ନାମରେ ପୂଜିତା । ରୁଚିକ ମୁନୀଙ୍କର ପୁଅ ଜମଦଗ୍ନି ବୋହୂ ରେଣୁକା, ନାତି ପର୍ଶୁରାମ । ତେଣୁ ମା’ ସତ୍ୟ ଯୁଗର ଦେବୀ କହିଲେ ଅତ୍ୟୁକ୍ତି ହେବନାହିଁ । ପର୍ଶୁରାମ ବହୁତ ଦୁଷ୍ଟ ଥିଲେ ଓ ତାଙ୍କର ୪ଜଣ ବଡ ଭାଇ ଥିଲେ । ଜମଦଗ୍ନିଙ୍କ ଆଶ୍ରମ ଥିବା ରାଜ୍ୟର ରାଜାଙ୍କ ନାମ କାର୍ତ୍ତବୀର୍ଯ୍ୟ ଯେ ତାଙ୍କର ପରମ ଶତ୍ରୁ ଥିଲେ ଓ ତାଙ୍କର ବଂଶ ଧ୍ୱଂସ କରିବାକୁ ପ୍ରତିଜ୍ଞା କରିଥିଲେ । ତତ୍‌ସହିତ ମାତା ରେଣୁକାଙ୍କ ସୌନ୍ଦର୍ଯ୍ୟରେ ଆକୃଷ୍ଟ ହୋଇଥିଲେ । ରେଣୁକା ସତୀ ନାରୀ । ରାଜାଙ୍କର ଏସବୁ ମନ୍ଦ ପ୍ରକୃତି ସତ୍ତ୍ୱେ ସ୍ୱାମୀ ଓ ପୁତ୍ରମାନଙ୍କୁ ରକ୍ଷା କରିବାକୁ ଅନୁନୟ ବିନୟ ହୋଇଥିବା ସତ୍ତ୍ୱେ ସେ ରେଣୁକାଙ୍କୁ ଅପମାନିତ କରିଥିଲେ । ବୀର ପ୍ରସବିନୀ ବୀର ରମଣୀ, ରେଣୁକାଙ୍କ ଜୀବନରେ ଏକ ଚମତ୍କାର ଅଧ୍ୟାୟ ଯୋଡି ହୋଇଗଲା । ରେଣୁକା ଏକଦା ମହାନଦୀକୁ ସ୍ନାନାର୍ଥେ ଯାଇ ଦେଖନ୍ତି ଗନ୍ଧର୍ବରାଜ ଚିତ୍ରରଥ ତାଙ୍କ ଅପ୍‌ସରୀମାନଙ୍କ ମଧ୍ୟରେ ଜଳକ୍ରୀଡାରେ ରତ ଥିଲେ ।

ସେମାନଙ୍କ ରୂପରଙ୍ଗ ହାସ୍ୟରସରେ ରେଣୁକାଙ୍କ ଚିତ୍ତରେ ଚାଞ୍ଚଲ୍ୟତା ସୃଷ୍ଟି ହେଲା । ଜଳକଳସୀ ଆଣିବାକୁ ଡେରି ହେଲା । ଏତିକିବେଳେ ଜମଦଗ୍ନି ତାଙ୍କର ଯୋଗ ବଳରେ ସବୁ ଜାଣିପାରିଲେ । ରେଣୁକା ଫେରିଆସି ପିତୃତର୍ପଣରେ ଜମଦଗ୍ନିଙ୍କୁ ସାହାଯ୍ୟ କଲେ । ଏତିକିବେଳେ ରଚିକ ପର୍ବତ ଉପର ଦେଇ ଗନ୍ଧର୍ବରାଜ ଗଲାବେଳେ ତାଙ୍କର ଛାଇ ପଡନ୍ତେ ରେଣୁକା ଅନ୍ୟମନସ୍କ ହୋଇ ଉପରକୁ ଚାହିଁଦେଲେ । ରେଣୁକାଙ୍କ ମନ ପୁଣି ଚଞ୍ଚଳ ହୋଇ ଉଠିଲା । ଜମଦଗ୍ନି କ୍ରୋଧରେ ଜର୍ଜରିତ ହୋଇଉଠିଲେ । ନିଜମାତାଙ୍କୁ ଭର୍ତ୍ସନା କରିଥିବାରୁ କାର୍ତ୍ତବୀର୍ଯ୍ୟଙ୍କୁ ଓ ତାଙ୍କ ଭଳି ଦୁର୍ଦ୍ଧାନ୍ତ କ୍ଷେତ୍ରିୟମାନଙ୍କୁ ହତ୍ୟା କରିବାକୁ ପର୍ଶୁରାମ ମା'ଙ୍କ ପାଦ ଛୁଇଁ ପ୍ରତିଜ୍ଞା କରି ୨୧ଥର ପୃଥିବୀ ନିକ୍ଷେତ୍ରୀ କରିଥିଲେ । ବୀରଦର୍ପରେ ଫେରି ପିତାଙ୍କୁ ପ୍ରଣିପାତ କରି କହିଲେ ଆପଣ ମୋତେ ଯାହା ମାଗିବେ ଦେବି, ଏପରିକି ମୋ ଜୀବନ ଉତ୍ସର୍ଗ କରିଦେବି । କ୍ରୋଧ ଜର୍ଜରିତ ପିତା ପୁତ୍ରର ବିଜୟରେ ଗର୍ବିତ ହେଲେ, ମାତ୍ର ରେଣୁକାଙ୍କୁ ବଧ କରିବାକୁ ଆଦେଶ ଦେଲେ । ପିତୃସତ୍ୟ ପାଳି ପର୍ଶୁରାମ ମା'ଙ୍କୁ ବଧ କଲେ । ଶେଷ ମୁହୂର୍ତ୍ତରେ କ'ଣ କଲି ବୋଲି କହି ପର୍ଶୁରାମଙ୍କ ସହ ଆଉ ଚାରି ଭାଇମାନେ ଆତ୍ମହତ୍ୟା କରିବାକୁ ଜିଦ୍‌ଧରି ବସିଲେ । ପିତୃସତ୍ୟ ପାଳି ଥିବାରୁ ପିତା ପର୍ଶୁରାମଙ୍କୁ କି ବର ମାଗିବୁ ମୁଁ ଦେବି ବୋଲି କହିଲେ । ସେ ସଙ୍ଗେ ସଙ୍ଗେ ମାତାଙ୍କ ଜୀବନ୍ୟାସ ଦିଅ ବୋଲି ବର ମାଗିଲେ । ପିତା, ପୁତ୍ରମାନଙ୍କର ଏ ପ୍ରକାର ଅଘଟଣ ଘଟିଯିବା ଆଶଙ୍କାରେ ମା'ଙ୍କୁ ଆରାଧାନା କରି ଏହି ପୀଠରେ ଜୀବନ୍ୟାସ ଦେଇଥିଲେ । ତାଙ୍କର ରକ୍ତନଦୀ ବୋହିଯାଇ ଆଜି ରେଣୁକା ନଈ ରୂପେ ପରିଚିତା ଓ ପୂଜିତା । ଏହି ନଦୀର ମହୋଦଧିରେ ସଙ୍ଗମ ସ୍ଥଳର ନାମ ବାଙ୍କୀ ମୁହାଣ । ଯେଉଁଠାରେ ମହାପ୍ରଭୁଙ୍କର ତିନି ଦାରୁଙ୍କର ସନ୍ଧାନ ମିଳିଥିଲା । ପୁତ୍ର ପର୍ଶୁରାମଙ୍କର ନାମ ଅନୁସାରେ ଏହି ପୀଠର ନାମ ପର୍ଶୁରାମ ପୀଠ ଓ ଏହାର ମୂକସାକ୍ଷୀ ସ୍ୱରୂପ ତାଙ୍କ ପଦଚିହ୍ନ ଆଜି ବି ଏଠାରେ ପୂଜିତ ହୋଇଆସୁଅଛି ।

ପର୍ଶୁରାମ ମହାନ୍ ଶକ୍ତି ସାଧକ ଥିଲେ । ସେ ସର୍ବତ୍ର ବୁଲି ବୁଲି ସର୍ବଶେଷରେ ମା' ଚର୍ଚ୍ଚିକାଙ୍କର ଦର୍ଶନାଭିଳାଷୀ ହୋଇ ମା'ଙ୍କ ଗିରି ଆରୋହଣ କରିବାକୁ ଅଗ୍ରସର ହେଲେ । ମା'ଙ୍କ ଆସ୍ଥାନ ଆଉ ଦୁଇ ପାହୁଣ୍ଡ ଥିଲା । ସେ ଶକ୍ତିହୀନ ହୋଇ ଆଗକୁ ଅଗ୍ରସର ହୋଇପାରି ନଥିଲେ ଓ ସେହିଠାରେ ମା'ଙ୍କ ଦର୍ଶନ ପାଇଁ କଠୋର ତପସ୍ୟାରତ ରହିଲେ । ମା' ବୁଢୀ ବେଶରେ ତାଙ୍କୁ ଦର୍ଶନ ଦେଇ ବର ପ୍ରଦାନ କଲେ । ଏହାପରେ ସେ ୨୧ଥର ପୃଥିବୀ ନିକ୍ଷେତ୍ରୀ କରି ଫେରିଥିଲେ ।

ରଣାସୁରର ଦୌରାତ୍ମ୍ୟରେ ବାଙ୍କୀର ଜନସାଧାରଣ ଅତିଷ୍ଠ ହୋଇ ତ୍ରାହି ତ୍ରାହି ମା' ବୋଲି ବିକଳ ପ୍ରାର୍ଥନା କଲେ । ବାଙ୍କୀ ରାଇଜରୁ ପ୍ରତିଦିନ ଗୋଟିଏ ଗୋଟିଏ ଯୁବକ ଅପହୃତ ହେବାରୁ ଲୋକମାନେ ଦୃଷ୍ଟି ଶକ୍ତିର କୁକର୍ମ ଜାଣି ଭୟରେ କବାଟ ଝରକା କିଳି ରାତ୍ର ଯାପନ କରୁଥିଲେ । ମୁନିଋଷିମାନେ ଏହା ରଣାସୁରର ଦୌରାତ୍ମ୍ୟ ବୋଲି ଜାଣିଲେ ଓ ମା'ଙ୍କ ଶରଣ ପଶିଲେ । ମା' ଚର୍ଚ୍ଚିକା ରଣାସୁର ସହିତ ଯୁଦ୍ଧ କରି ତାକୁ ବଧ କଲେ । ସେ ଉଲଗ୍ନ ଅବସ୍ଥାର ରଣାସୁର ଶବାରୂଢା ରୂପେ ପୂଜିତା । ନିଜର ଏ ଅବସ୍ଥା ଦେଖି ମା' ପ୍ରକୃତିସ୍ଥ ହେବା ପରେ ନିଜର କନିଷ୍ଠିକା (ବାମ ଅଙ୍ଗୁଳି) କାମୁଡି ଦେଇଛନ୍ତି । ମା'ଙ୍କର ଏହି ଶବାରୂଢା ଅଷ୍ଟଭୁଜା ମୂର୍ତ୍ତି ମୁଖ୍ୟ ମନ୍ଦିରର ଦକ୍ଷିଣ ପାର୍ଶ୍ୱ ସଂଲଗ୍ନ ଏକ କ୍ଷୁଦ୍ର ମନ୍ଦିରରେ ପୂଜା ପାଇ ଆସୁଛନ୍ତି । ୧୬୫୩ରେ ବାଙ୍କୀ ରାଜା ପାର୍ଥ ଶ୍ରୀଚନ୍ଦନ ଭୟଙ୍କର ରୋଗରେ ପଡି ମା'ଙ୍କୁ ଆରାଧନା କରି ସୁସ୍ଥ ହୋଇଥିଲେ । ମା' ତାଙ୍କୁ ବୁଢୀ ବେଶରେ ସ୍ୱପ୍ନାଦେଶ ଦେଲେ, ହେ ରାଜା ରୂଚିକ ଗିରିର ଗୁମ୍ଫାକୁ ଥଳେଇ ମୋର ମୂର୍ତ୍ତିକୁ ଦର୍ଶନ କରି ମନ୍ଦିର ତୋଳିଦେବୁ । ରାଜା ମନ୍ଦିର ତୋଳେଇ ୨୨ବାଟି ୨୨ମାଣ, ୨୨ଗୁଣ୍ଠ, ୨୨ ବିଶ୍ୱା ଓ ୨୨ ପ୍ରକାରର ଭୋଗ ସହିତ ସେବା ପାଇଁ ସେବାସୀ ଖଞ୍ଜି ଦେଇଥିଲେ । ପଶ୍ଚିମ ଓଡ଼ିଶାରୁ ଜଣେ ପୁଟୁଳି ବଣିଆ ବାଣିଜ୍ୟ ବ୍ୟବସାୟ କରିବାକୁ ତାର ବାଣିଜ୍ୟ ସମ୍ପଦ ଧୋଡିଆ ବଳଦ ଉପରେ ଲଦି ମହାନଦୀରେ ଆସୁଥିବା ସମୟରେ ହଠାତ୍ ବଢି ଆସିବାରୁ ଭାସି ଯାଇଥିଲା । ସେ କାନ୍ଦି କାନ୍ଦି ବିକଳରେ ମା'ଙ୍କୁ ଡାକିବାରୁ ମା' ତାର ସାହା ହୋଇଥିଲେ । ତା'ର ସମସ୍ତ ସମ୍ପତ୍ତି ସହ ଗାଈ ୧୫ ମାଇଲ ଦୂରବର୍ତ୍ତୀ ଏକ ପାହାଡରେ ଅକ୍ଷତ ଅବସ୍ଥାରେ ମିଳି ଯିବାରୁ ସେ ଏହି ପୀଠରେ ସିଦ୍ଧେଶ୍ୱର ମନ୍ଦିର, ଉତ୍ତରପାର୍ଶ୍ୱ ପାହାଚ ଗଢି କିଛି ଜମି ସେବା ପାଇଁ ଖଞ୍ଜି ଦେଲେ ।

ବିହାର ଧଳଭୂମିର ବଳଭଦ୍ର ଧଳ ନାମକ ଜଣେ ଭକ୍ତ ମା' ଶରଣ ପଶି ଦୁଇଗୋଟି ସୁନା ତାଟଙ୍କ ପାଇ ତାକୁ ନେଇ ପୁରୀ ରାଜାଙ୍କୁ ଦେଇ ସମସ୍ତ ବୃତ୍ତାନ୍ତ ବଖାଣି ବାଙ୍କୀ ରାଜା ହେବାର ମାନ୍ୟତା ପାଇଥିଲେ । ଏହା ୧୨୩୨ ଖ୍ରୀଷ୍ଟାବ୍ଦର ଘଟଣା । ମା' ଚର୍ଚ୍ଚିକା ପୀଠରେ କେବଳ କାମନା ସିଦ୍ଧିର ତନ୍ତ୍ର ଉପଚାର କ୍ଷେତ୍ର ଥିଲା ତା ନୁହେଁ, ଏହା ଏକ ଜ୍ଞାନପୀଠର ପ୍ରକୋଷ୍ଠ କ୍ଷେତ୍ର । ବାଙ୍କୀରାଣୀ ସୁକଦେଈଙ୍କ ନାତି ପଦ୍ମନାଭ ଶ୍ରୀଚନ୍ଦନ ମା'ଙ୍କ ଆଶୀଷ ପାଇ ଜଣେ ଭଞ୍ଜଙ୍କ ସମକକ୍ଷ କବି ହୋଇଥିଲେ । ସେ ଶଶିରେଖା କାବ୍ୟ ରଚନା କରି ଗଜପତି ବୀରକିଶୋର ଦେବଙ୍କ ଦରବାରରେ ପୁରସ୍କୃତ ହୋଇଥିଲେ । ବାଙ୍କୀ ରାଇଜର ରାଜବଂଶ ପ୍ରତିଷ୍ଠାର ୨୭ ପୁରୁଷ

ଐତିହ୍ୟ ମଧ୍ୟରୁ ବଳଭଦ୍ର ଧଳଙ୍କ ୧୧ ପୁରୁଷ ମଧ୍ୟରେ ଉତ୍କଳର ରାଜା ଚତୁର୍ଥ ଭାନୁଙ୍କର ଶାସନ ସମୟରେ ଶ୍ରୀଚନ୍ଦନ ମହାପାତ୍ର ବେହେରା ଖଣ୍ଡାୟତୀ ଉପାଧି ଦ୍ୱାରା ବାଙ୍କୀ ଗୌରବାନ୍ୱିତ ହୋଇଥିଲା । ୧୭୧୬ ଖ୍ରୀଷ୍ଟାବ୍ଦରେ ଖୋର୍ଦ୍ଧା ଗଜପତି ଗୋପୀନାଥ ଦେବଙ୍କ ସହ ବାଙ୍କୀ ରାଜା ଧନୁର୍ଯ୍ୟୟ ଶ୍ରୀଚନ୍ଦନଙ୍କ ଯୁଦ୍ଧରେ ବାଙ୍କୀରାଜା ନିହତ ହେଲେ । ବିଧବା ରାଣୀ ଶୁକଦେଈ ମା' ଚର୍ଚ୍ଚିକାଙ୍କ ପାଦପଦ୍ମରେ ବହୁଦିନ ଧରି ନଖାଇ ନପିଇ ଆଶ୍ରିତା ହେଲେ । ମା' ଚର୍ଚ୍ଚିକା ତାଙ୍କୁ ଦର୍ଶନ ଦେଇ ଯୁଦ୍ଧ କରିବାକୁ ଆଦେଶ ଦେଲେ । ତାଙ୍କର ଆଶୀର୍ବାଦ ପାଇ ବାଙ୍କୀରାଣୀ ଶୁକଦେଈ ବାଙ୍କୀର ବୀରାମାନଙ୍କୁ ଏକତ୍ରିତ କରି ଓ ଅନ୍ୟ ସୈନ୍ୟମାନଙ୍କୁ ନେଇ ଦ୍ୱିତୀୟ ଥର ତାଙ୍କ ସହିତ ଯୁଦ୍ଧ କଲେ । ମା' ଚର୍ଚ୍ଚିକା ନିଜେ କଳା ଘୋଡାରେ ଯୁଦ୍ଧ କରିବାକୁ ଯାଇଥିଲେ । ୧୮୦୨ରେ ଫାଲ୍‌ଗୁନ୍ ଦୋଳପୂର୍ଣ୍ଣିମା ଦିନ ଗୋପୀନାଥ ଦେବ ସମୁଖ ଯୁଦ୍ଧରେ ପରାସ୍ତ ହେଲେ । କୁଶପଲାଠାରେ ମୂକସାକ୍ଷୀ ସ୍ୱରୂପ ମୃତ ସୈନ୍ୟମାନଙ୍କର ମସ୍ତକର ଏକ ଅମୁହାଁ ମନ୍ଦିର ଆଜିବି ଦଣ୍ଡାୟମାନ । ଶୁମ୍ଭ ନିଶୁମ୍ଭଙ୍କର ସେନାପତି ଚଣ୍ଡମୁଣ୍ଡଙ୍କର ବିନାଶ କାଳରେ ବ୍ରହ୍ମଶକ୍ତିର ପ୍ରୟୋଗ ନେଇ ବ୍ରହ୍ମା–ବ୍ରାହ୍ମଣୀ ଦେବୀ, ମହେଶ୍ୱର–ମାହେଶ୍ୱରୀ ଦେବୀ, କାର୍ତ୍ତିକେୟ–କୌମାରୀ ଦେବୀ ବିଷ୍ଣୁ ବରାହୀ ଦେବୀ, ଇନ୍ଦ୍ର–ଐନ୍ଦ୍ରୀ ଦେବୀଙ୍କୁ ସକଳ ଦେବଶକ୍ତି ଦୁର୍ଗା ତନୟା ମା' ଚର୍ଚ୍ଚିକାଙ୍କର ଶକ୍ତିସଂହତିର ସଂଗ୍ରାମରେ ଚଣ୍ଡମୁଣ୍ଡଙ୍କର ବଧ ହୋଇଥିଲା । ମା' ଚର୍ଚ୍ଚିକାଙ୍କୁ ୬୪ ଯୋଗିନୀ ମଧ୍ୟରେ ଅପା ସମ୍ୱୋଧିତ କରି ଶରତ କାଳୀନ ପର୍ବ ଅବସରରେ ବିମଳାଙ୍କ ପାର୍ଶ୍ୱରେ ବସୁଥିବା ସଭାରେ ସଭାନେତ୍ରୀ ରୂପେ ମାନନ୍ତି । ଇଡା, ପିଙ୍ଗଳା, ସୁଷୁମ୍ନାକୁ କେନ୍ଦ୍ରକରି ଯୋଗୀମାନେ ସହସ୍ରାର ମିଳନ ସ୍ଥାନରେ ଜୀବପରମର କୁଣ୍ଡଳିନୀକୁ ଷଡଚକ୍ର ସାଧନାରେ ଏକାଙ୍ଗ ଅନୁଭୂତିର ମହାସୁଖ ବୋଲି ଯେଉଁପରି ଆମ୍ଭେମାନେ ଜାଣୁ ଉକ୍ତ ଶୂନ୍ୟଚକ୍ର ସହସ୍ରାରକୁ ବୌଦ୍ଧମାନେ ୬୪ଦଳ କମଳ କହନ୍ତି । ତେବେ ଯୋଗିନୀ ସାଧନାର ପରମପୀଠ ବୌଦ୍ଧଧର୍ମକୁ ଅନୁକରଣ କରି ଚର୍ଚ୍ଚିକା ଦେବୀଙ୍କୁ ସ୍ଥାପନା ବଜ୍ରଯୋନୀ ବୌଦ୍ଧତନ୍ତ୍ର ସମୟ ନିରୂପିତର ଯୋଗିନୀ ଗଣନାରେ ମା' ଚର୍ଚ୍ଚିକାଙ୍କୁ ସ୍ଥାନିତ କରାଯାଇଛି । ଯୋଗନାମଙ୍କ ଦୈତ୍ୟକୁ ବଧ କରିବା ପାଇଁ ମହାକାଳୀଙ୍କଠାରୁ ଯୋଗିନୀମାନେ ଉଦ୍ଭବ ହୋଇଥିଲେ । ସେହି ଦୈବଶକ୍ତି ଦେବୀଙ୍କ ରଶ୍ମିକଣିକା ତେଜ ନିର୍ଯ୍ୟାସ ରସରୁ ହୋଇଛନ୍ତି ମା' ଚର୍ଚ୍ଚିକା ।

ମାଳିକା ଦର୍ଶନରେ ସଂହାର କର୍ତ୍ତା, ପାପ ବିଧ୍ୱଂସିନୀ ଚର୍ଚ୍ଚିକା ମା' ଯେ ଦିନେ ବିଶ୍ୱପିତାଙ୍କ ନିର୍ଦ୍ଦେଶରେ ତାଙ୍କ ଖଡ୍‌ଗ ଚାଳନା କରି ଧରାଭାର ଉଶ୍ୱାସ କରିବେ ଏହା ନିରାଟ ସତ୍ୟ । ଏହି ରୁଚିକା ପର୍ବତ ଦିନେ ରକ୍ତ ରଞ୍ଜିତ ହୋଇଥିଲା । ଭବିଷ୍ୟତରେ ତାହା ହିଁ ହେବ ଏହା ସମଗ୍ର ଭାରତବର୍ଷରେ ସାଧୁସନ୍ଥମାନେ ସୃଷ୍ଟିର ନୂତନ ସର୍ଜନା ପାଇଁ ଅପେକ୍ଷାରତ ।

ବୈଦିକ ଯୁଗରେ ଋଷିଶ୍ରେଷ୍ଠ ମହର୍ଷି ଋଚିକା ମହାମାୟା ଚର୍ଚ୍ଚିକା ଦେବୀଙ୍କଠାରୁ ତାଙ୍କ ତପସିଦ୍ଧିରେ କିଛି ଯୋଗତତ୍ତ୍ୱ ଶୁଣିବା ପାଇଁ ଜିଜ୍ଞାସା କରିଥିଲେ । କହିଲେ ହେ ମାତଃ ମହାକାଳ ପ୍ରସବିନୀ ସକଳ ପ୍ରକୃତିର ଆଧାର । ସିଦ୍ଧିରୂପିଣୀ ନିର୍ଗୁଣରୁ ସଗୁଣ ପ୍ରାପ୍ତି ପାଇଁ କିପରି ଓ କେଉଁପରି ସିଦ୍ଧିତ୍ୱ ହେବ ଦୟାକରି ଅକିଞ୍ଚନ ପ୍ରତି କହିବେ କି ?

ମହାମାୟା ଚର୍ଚ୍ଚିକା ଦେବୀ କହିଲେ ହେ ଔର୍ବ ନନ୍ଦନ ତୁମ୍ଭେ ଯେଉଁ ବ୍ରହ୍ମଜ୍ଞାନର କଥା କହିଲେ ସେହି ମହାମାୟା ପରମ ବୈଷ୍ଣବୀଙ୍କ ସାନ୍ନିଧ୍ୟତା ଲାଭ କରିବାରେ ତୁମ୍ଭେତ ଜାଗ୍ରତ ସ୍ୱପ୍ନ, ସୁଷୁପ୍ତି, ମୋହିନୀ, ମଧୁମତୀ, ବିଷୟ ଦର୍ଶିନୀ, ଶବ୍ଦମୟୀ, ସରସ୍ୱତୀ ଦେବ ଯୋନୀ–ଅଣିମାଦି ଐଶ୍ୱର୍ଯ୍ୟ, ଜାଳନ୍ଧରୀ, ଲୌକିକ, କାମମୟୀ, ସିଦ୍ଧିମୟୀ, କଲ୍ଲୋଳିନୀ, ରଦ୍ରଅହଂକାର, ପାର୍ବତୀ, ସର୍ବମନୋହାରୀ, ଅଠରଗୋଟି ମାୟାକୁ ଭେଦକରି ଯେଉଁ ସାଧନାରେ ଉପନୀତ ହୋଇଅଛ ମୋର ସେହି ଜ୍ୟୋତିର୍ମୟ ରୂପ ଦର୍ଶନରେ ତୁମ୍ଭର ମୁକ୍ତିତ୍ୱ କାମନା କରିଅଛି । ସେହିସବୁର ମୂଳଉସ ଯୋଗେଶ୍ୱର ଶିବଙ୍କଠାରୁ ମୁଁ ଶୁଣିଥିଲି । ତନ୍ତ୍ର ହିଁ ବିଜ୍ଞାନ ପଦ୍ଧତିର ଆଗ୍ନେୟ ମୁଖର କାରଣ ପୂର୍ବରୁ ମୁନିଗଣ ମଧ୍ୟ ସେହି ମହାମାୟାଙ୍କୁ ଲଭି ବରସିଦ୍ଧିଷ୍ଟ ହେବାକୁ ବହୁ ଆୟାସିତ ହୋଇଥିଲେ । ମନୁଷ୍ୟକୁଳ ଅଜ୍ଞାନ ମୋହଜାଲ ପାପାସକ୍ତ ସଂସାରର ବିମୁଗ୍ଧ ମୃଗ ତୃଷ୍ଣିକା ଆତ୍ମାର ବନ୍ଧନକୁ ଏଡି ସ୍ୱୟଂ ବିରାଜିତ ପଡିଚକ୍ରସ୍ଥିତ ମୂଳାଧାର, ସ୍ୱାଧିଷ୍ଠାନ, ମଣିପୁରକ, ଅନାହତ, ବିଶୁଦ୍ଧ ଓ ଆଜ୍ଞାଚକ୍ର ଭେଦକରି ମହାପଦ୍ମସ୍ଥ କର୍ଣ୍ଣିକାର ମଧ୍ୟରେ କୁଳ କୁଣ୍ଡଳିନୀକୁ ଜାଗ୍ରତ କରାଇ, ଯୋଗମାୟା ପରମେଶ୍ୱରୀଙ୍କୁ ଶିବଙ୍କ ସହିତ ଦର୍ଶନ ଦ୍ୱାରା ବ୍ରହ୍ମତ୍ୱ ପ୍ରାପ୍ତ ଲାଭ କରିବା ଓ ତଦ୍‌ଜନିତ ଚିନ୍ମୟ ପରଶଘନାରଢ ହୋଇ ମାଆ ମାଆ ଭାବେ ମୋହ୍ୟମାନ ହେବା ହିଁ ମକରନ୍ଦ ପାନ କରିବା ଯୋଗୀଜନଙ୍କୁ ମଧ୍ୟ ସାଧକ କହିଥାନ୍ତି ।

ସବରୀ ନାରାୟଣୀ, ନିଳାଦ୍ରୀ ମହୋଦୟରେ ମା'ଙ୍କ ମହିମା ବର୍ଣ୍ଣିତ । ପୁରୀ ଜଗପତି ଇନ୍ଦ୍ରଦ୍ୟୁମ୍ନ ତାଙ୍କର ମନ୍ତ୍ରୀ ବିଦ୍ୟାପତିଙ୍କୁ ନୀଳମାଧବଙ୍କ ସାନିଧ ପାଇଁ ଛଦ୍ମବେଶରେ ପଠାଇଥିଲେ । ରାଜା ମା' ଚର୍ଚ୍ଚିକାଙ୍କ ନିକଟରେ ପ୍ରଥମେ ହୋମଯଜ୍ଞାଦି କରି ସନ୍ତୁଷ୍ଟ କରାଇ ନୀଳମାଧବଙ୍କୁ ପାଇବା କାମନା ସିଦ୍ଧ କରିଥିଲେ । ନୀଳଚକ୍ରରେ ବାନା ବାନ୍ଧିବାକୁ ଯାଇ ପ୍ରଭୁଙ୍କର ଏକ ଚୁନୁରୀ ସେବକ ମନ୍ଦିରରୁ ଖସିପଡି ବିକଳରେ କହିଲେ ହେ ମା' ଚର୍ଚ୍ଚିକା' ରକ୍ଷାକର । ସେବକ

ଜଣକ ଏକ ଜୀବନ୍ତ ସିଂହ ଉପରେ ପଡି ଆସନ୍ନ ମୃତ୍ୟୁମୁଖରୁ ରକ୍ଷା ପାଇଥିଲେ । ମା' ଥରେ ଶ୍ରୀକ୍ଷେତ୍ର ପରିଭ୍ରମଣରେ ଯାଇଥିଲେ । ପଣ୍ଡାମାନଙ୍କ ଦୌରାତ୍ମ୍ୟରେ ମନ୍ଦିର ମଧ୍ୟରେ ପ୍ରବେଶ କରି ନପାରି ବୁଢୀ ବେଶରେ ଯାଇ ବଡପୂଜାପଣ୍ଡା ଘରେ ରହିଲେ ଓ କାମଦାମ କଲେ । ଇତ୍ୟବସରେ ପ୍ରବଳ ଝଡ ତୋପାନ ସାଥେ ବର୍ଷା ରୂପରେ ଦଇବ ଦୁର୍ବିପାକ ଘଟିଲା । ବଡପୂଜାପଣ୍ଡା ଦୀପଟିଏ ଲଗେଇ ସନ୍ଧ୍ୟା ଆଳତୀ କରିବାକୁ ସମର୍ଥ ହୋଇପାରିଲେ ନାହିଁ । ସନ୍ଧ୍ୟା ସମୟ ପରେ ଦୁଃଖରେ ମ୍ରିୟମାଣ ହୋଇ ଚିନ୍ତିତ ଥିବାବେଳେ ସେଇ ବୁଢୀ ନିଜର କାନୀତଳେ ପ୍ରଜ୍ୱଳିତ ଦୀପଟିଏ ଆଣି କହିଲେ ହେ ପୁଅ ନେ ଦୀପ ନେ ସନ୍ଧ୍ୟା ଆଳତୀ କରିବୁ । ପୂଜାପଣ୍ଡା ସ୍ତମ୍ଭୀଭୂତ ହୋଇପଡି ଏ ଅଘଟଣ କିପରି ହେଲା ଚିନ୍ତିତ ହେଲେ । ଓଡଣା ମାଧ୍ୟମରେ ଦୀପ ଆଲୋକରେ ଏକ ଦିବ୍ୟ ସୁନ୍ଦରୀନାରୀ ଯାହାଙ୍କର ଗୋଟିଏ ପାଦ ଅରୁଣସ୍ତମ୍ଭ ଓ ଅନ୍ୟପାଦ ଗରୁଡସ୍ତମ୍ଭ ନିକଟରେ ଦର୍ଶନ କଲେ । ପଚାରିଲେ ହେ ମା' ତୁମେ କିଏ କହ, ମୁଁ ସହଜରେ ଛାଡିବି ନାହିଁ । ମା' କ୍ଷୀଣ ସ୍ୱରରେ କହିଲେ ମୁଁ 'ମା ଚର୍ଚ୍ଚିକା' । ସେହିଦିନଠାରୁ ବଡ ପୂଜାପଣ୍ଡା ଘରେ ମଣୋହୀ ପୂର୍ବରୁ ଓ ଶ୍ରୀମନ୍ଦିରର ପାର୍ଶ୍ୱରେ ପୂଜାପାଇ ଆସୁଛନ୍ତି । ଏହିପରି ଅନେକ ମାହାତ୍ମ୍ୟ ରହିଛି ବର୍ଣ୍ଣନା କଲେ ଦିନ ସରିବନି କି ରାତି ପାଇବନି ।

ଆଉ ଏକ ଗ୍ରାମୀଣ ଚଳଣୀର ନିଛକ ପ୍ରତିଛବି ମା'ଙ୍କ ପୀଠରେ ଅହରହ ଦୃଶ୍ୟମାନ ହୁଏ । ଛୋଟଠାରୁ ବଡ ପର୍ଯ୍ୟନ୍ତ ବାଙ୍କୀ ରାଇଜର ଯେଉଁମାନେ ଛାନିଆ କିମ୍ବା ଦୃଷ୍ଟିଆ ହୁଅନ୍ତି ସେ ମା'ଙ୍କର ଶରଣାଗତ ହୁଅନ୍ତି । ଝାଡିବା ପାଇଁ ମା'ଙ୍କର ପୂଜକ ମା'ଙ୍କ ପାଦପଦ୍ମରୁ ଛଡାଫୁଲ ଓ ପାଦୁକ ପିଲା, ମହିଳା, ବୃଦ୍ଧା ଯିଏ ଝଡା ହେବା ପାଇଁ ଆସିଥାନ୍ତି, ତାଙ୍କର ଶରୀରରେ ଶ୍ଳୋକ ସହ ମୁଠାଏ ଛିଞ୍ଚି ଦେଲେ, ସେମାନେ ଆରୋଗ୍ୟ ହେବାର ଅନେକ ଦୃଷ୍ଟାନ୍ତ ଆଜି ବି ଏ ବୈଜ୍ଞାନିକ ଯୁଗରେ ସମ୍ଭବ ହେବାର ଆମେ ଅନୁଭବି । ମା' ଚର୍ଚ୍ଚିକାଙ୍କର କ'ଣ ଏହା ମହିମା ନୁହେଁ କି ?

ମା' ଚର୍ଚ୍ଚିକାଙ୍କ ମହିମାର ସ୍ୱତନ୍ତ୍ରତା ଅଛି । ଶ୍ରୀକ୍ଷେତ୍ରରେ ପ୍ରଭୁଙ୍କର ଘୋଷଯାତ୍ରାରେ ଯେତିକି ଖଣ୍ଡ କାଠ ଲୋଡାହୁଏ, ସେଥିମଧ୍ୟରୁ ଖଣ୍ଡିଏ କାଠ ମା' ଚର୍ଚ୍ଚିକାଙ୍କ ନାମରେ ନାମିତ । ମା'ଙ୍କଠାରୁ ତିନିଖଣ୍ଡି ଅଙ୍ଗବସ୍ତ୍ର ଓ ତିନିଗୋଟି ଆଜ୍ଞାମାଳ ନିଆଯାଇ ରଥମାନଙ୍କରେ ସ୍ଥାପନ କରାଯାଏ । ରାଜାଙ୍କ ଉଆସ ନିକଟବର୍ତ୍ତୀ ବଡଦାଣ୍ଡରେ ଛୋଟ ମନ୍ଦିରରେ ମା' ପୂଜା ପାଆନ୍ତି ।

ବାଙ୍କୀ ରାଜାସାହେବ ସାମନ୍ତ ନାରାୟଣ ଶ୍ରୀଚନ୍ଦନ ମହାପାତ୍ର ବ୍ରତ ହେବାଦିନ ରାଜକିଆ ଆଟପାଟ ସହ ମା'ଙ୍କ ପୀଠସ୍ଥ ରାଜାଙ୍କ ପାଇଁ ଉଦ୍ଦିଷ୍ଟ ଦକ୍ଷିଣପାର୍ଶ୍ୱ ପାହାଚରେ ମା'ଙ୍କୁ ଦର୍ଶନ କରିଥିଲେ । ପରମ୍ପରା ଅନୁଯାୟୀ ବାଉରୀ ସାହିର ମହିଳାମାନେ ନୂତନ ବସ୍ତ୍ର ପିନ୍ଧି ରାଜାଙ୍କୁ ବନ୍ଦାବନା କରୁଥିଲେ । ମା'ଙ୍କର ଆଦେଶ ନଥିଲା, ଯାହା ଫଳରେ ରାଜାସାହେବ ୬୦ ବର୍ଷ ପର୍ଯ୍ୟନ୍ତ ଦର୍ଶନ ପାଇପାରି ନଥିଲେ । ଗତ ୦୬.୧୧.୨୦୧୧ରିଖ କାର୍ତ୍ତିକ ପଞ୍ଚୁକ ଭିତରେ ମା'ଙ୍କର ଆଦେଶ ପାଇ ୬୦ ବର୍ଷ ପରେ ମା' ଦର୍ଶନ ପାଇଁ ଆସିଥିଲେ । ପରମ୍ପରା ଅନୁଯାୟୀ ରାଜକୀୟ ପରିପାଟୀ ସହ ସୁସଜ୍ଜିତ ଖୋଲା ଜିପ୍‌ରେ ବାଙ୍କୀ ବଜାର ଦେଇ ଆସିଲାବେଳେ ହାତ ହଲାଇ ହଜାର ହଜାର ଜନସାଧାରଣଙ୍କୁ ସମ୍ବର୍ଦ୍ଧନା ଜଣାଇଥିଲେ । ଘଣ୍ଟ ହୁଳହୁଳିରେ ଚତୁଃପାର୍ଶ୍ୱ ପ୍ରକମ୍ପିତ ହୋଇ ଉଠୁଥିଲା । ବହୁବର୍ଷ ବ୍ୟବଧାନରେ ରାଜା ସାହେବ୍ ଆସିଛନ୍ତି ସେଥିପାଇଁ ଆବାଳ ବୃଦ୍ଧବନିତା ଆନନ୍ଦରେ ଉଦ୍‌ଫୁଲିତ ହୋଇଉଠିଲେ । ମା'ଙ୍କ ଗମ୍ଭିରୀ ଭିତରେ ପ୍ରବେଶ କରି ମା'ଙ୍କୁ ଆଳତୀ ଅର୍ପଣ କରି ଅତ୍ୟନ୍ତ ଆନନ୍ଦିତ ହେଲେ । ସେବାସୀମାନଙ୍କ ଦ୍ୱାରା ସୁସଜ୍ଜିତ ତଳ ମଣ୍ଡପରେ ଏକ ରାଜକୀୟ ଉଚ୍ଚ ଆସନରେ ଉପବିଷ୍ଟ ହୋଇ ଦରବାର କଲାବେଳେ ତାଙ୍କର ଚକ୍ଷୁ ଲୋତକପୂର୍ଣ୍ଣ ହୋଇଯାଇଥିଲା । ସେ କହି ପକେଇଲେ ଆଜି ମୋର ପରମ ସୌଭାଗ୍ୟ ଓ ଏଥିପାଇଁ ମା' ମୋତେ ସ୍ୱପ୍ନରେ ଦର୍ଶନ ଦେଇ ଆଦେଶ ଦେଲେ ।

ମା' ଚର୍ଚ୍ଚିକା ଚାମଣ୍ଡା ଅନ୍ତର୍ଭୁକ୍ତା ଅଷ୍ଟଭୁଜା ଉଲଗ୍ନ ରଣାସୁର ଶବାରୂଢା । ବକ୍ଷଦେଶରେ ନରମୁଣ୍ଡମାଳା ବିଳମ୍ବିତା ମା'ଙ୍କ ଦକ୍ଷିଣପାର୍ଶ୍ୱ ୪ଗୋଟି ହସ୍ତ ଖଡ୍‌ଗ, ତ୍ରିଶୂଳ, ସର୍ପ, ଅଙ୍କୁଶ ବରାଭୟ ପ୍ରଦାନକାରୀ ଅକ୍ଷମାଳା । ବାମହସ୍ତ ୪ଗୋଟି ଖର୍ପର କଟାମୁଣ୍ଡ ଡମ୍ବୁର, କନିଷ୍ଠିକା ଦନ୍ତଶକ୍ତା । ମା'ଙ୍କ ଡମ୍ବରୁ ମଧ୍ୟମା କଟିଦେଶ ଈଷତ୍ ବକ୍ର ହୋଇଥିବାରୁ ମା'ଙ୍କୁ ବକ୍ରେଶ୍ୱରୀ ଓ ମା'ଙ୍କ ସ୍ଥାନ ବାଙ୍କୀ ନାମରେ ପରିଚିତା ଓ ପ୍ରସିଦ୍ଧି ଲାଭ କରିଛି । ବର୍ଷରେ କାର୍ତ୍ତିକ, ମାଘ, ବୈଶାଖ ମାସରେ ଓ ଗୁରୁବାରରେ ଆମିଷ ଭୋଗ ହୁଏ ନାହିଁ । କିନ୍ତୁ ଷୋଳ ପୂଜାରେ ପ୍ରତିଦିନ ଅମାବାସ୍ୟା, ସଂକ୍ରାନ୍ତି, ଗୁରୁବାର ଥିଲେ ମଧ୍ୟ ମା' ପାଖରେ ଆମିଷ ଭୋଗ, ଛାମୁଁଚଣ୍ଡୀ ପୂଜା ଉଦ୍ଦେଶ୍ୟରେ କରାଯାଏ । ମା'ଙ୍କ ମନ୍ଦିରର ଦଧିନୌତିରେ ମୂଳାଷ୍ଟମୀ, ମହାଷ୍ଟମୀ, ମହାବିଷୁବ ସଂକ୍ରାନ୍ତି ଦିନ ନେତ ବନ୍ଧାଯାଏ ।

ବାଙ୍କୀରାଜା ଶ୍ରୀଚନ୍ଦନ ମହାପାତ୍ର, ଶ୍ରୀଚନ୍ଦନବଂଶର ନବମ ରାଜା ଥିଲେ । ପୁରୀ ଗଜପତିଙ୍କଠାରୁ ୧୮୮୦ରେ ମିଳିଥିବା ସନନ୍ଦ (ବାଙ୍କୀରାଜ୍ୟ ବର୍ଣ୍ଣନାରୁ ଗୃହୀତ) ମହାରାଜାଙ୍କ ଶ୍ରୀଛାମୁରୁ ବ୍ରଜବିହାରୀ ସିଂହ ଚିଟାୟୁ ତୁମକୁ ଅନୁଗ୍ରହ କରି ଶ୍ରୀଚନ୍ଦନ ମହାପାତ୍ର

ପଦ ଜମିଦାର, ଶାଢୀ, ଶୁକ୍ଳଛତି, କଳାଛତି, ଜାଉଁଳି ଘୋଷା, ସିରୋପମଧ୍ୟ ଘଟଣି, ପିଣ୍ଡିକ ହରିଚନ୍ଦନଙ୍କ ମାର୍ଫତେ ଆଜ୍ଞାଦେଲୁ ବାଙ୍କୀ ଗମେଇଁମୁହଁଠାରୁ ଅମେଇଁମୁହଁ ଯାଏଁ ଅମଳକରି ମହାଶ୍ରମ ସେବାରେ ହାଜର ଥିବ । ବାଙ୍କୀ ରାଜା ମୂଳିଆ ଧଳ ଯିଏ ମା'ଙ୍କର ପରମ ଭକ୍ତ ସେ ମା'ଙ୍କ ପୀଠରେ ଘଟପର୍ବ, ପଣାଯାତ୍ରା, ଝାମୁଯାତ୍ରା, ଚାଚେରୀ ଲୀଳା ସୃଷ୍ଟି କରିଥିଲେ । ବାଙ୍କୀରାଇଜ ସେତେବେଳେ ସମ୍ପୂର୍ଣ୍ଣ ଶସ୍ୟଶ୍ୟାମଳାରେ ପରିପୂର୍ଣ୍ଣ ଥିଲା ଓ ଗୌରବମୟ ଐତିହ୍ୟର ଅଧିକାରିଣୀ ଥିଲେ ସର୍ବଶକ୍ତିମୟୀ ମା' ଚର୍ଚ୍ଚିକା । ବକ୍ରେଶ୍ୱରୀ ନାମକ ପୂଜାର୍ଘ୍ୟ ମାତୃଶକ୍ତିର ଅନ୍ତଃର୍ନିହିତ ଭକ୍ତି ପନ୍ଥତତ୍ତ୍ୱ ଗବେଷଣା ଏସବୁକୁ ନେଇ ରାଧାନାଥଙ୍କ ଚନ୍ଦ୍ରଭାଗା କାବ୍ୟ ଦର୍ଶନରେ କୁହାଯାଇଛି–

ନାବିକ ଅର୍ଚ୍ଚିତ ଚର୍ଚ୍ଚିକା ଦେବୀ ବାଙ୍କୀ ଈଶ୍ୱରୀ
ମହାନଦୀ କୂଳେ ଯାହାଙ୍କ ଅଧିଷ୍ଠାନ ଶେଖରୀ ।।
ସରଣ୍ଡା ଦର୍ପଣ ଅଂଶୁପା ଶତଦଳ ପରାଗେ
ମଣ୍ଡନ୍ତି ବଦନ ମଣ୍ଡଳ ସେ ଯେ ମହାସରାଗେ ।।

ମହାନଦୀ ଓଡ଼ିଶାର ଗଙ୍ଗା କହିଲେ ଅତ୍ୟୁକ୍ତି ହେବନାହିଁ । ଏହା ଏକ ପବିତ୍ର ନଦୀ, ଯାହା ମା'ଙ୍କ ପାଦପଦ୍ମରେ ପ୍ରବାହିତ ହେଉଛି, ମାତ୍ର ଏହି ନଦୀ ବାଙ୍କୀର ଦୁଃଖ । ଆଜି ପର୍ଯ୍ୟନ୍ତ ଯେତେଥର ବଢ଼ି ହେଲାଣି, ସବୁ ବଢ଼ିରେ ପିଲାଛୁଆ, ଗାଈଗୋରୁ, ଛେଳିମେଣ୍ଢା, ମୁଣ୍ଡରେ ଖଣ୍ଡିଏ ସୁଟ୍‌କେଶ୍ ଧରି ପାର୍ଶ୍ୱବର୍ତ୍ତୀ ଗ୍ରାମରୁ ଆସି ରୁଚିକଗିରିରେ ଆଶ୍ରୟ ନିଅନ୍ତି ହଜାର ହଜାର ଲୋକ ସପ୍ତାହ ସପ୍ତାହ ଧରି । ପ୍ରଳୟଙ୍କରୀ ବଢ଼ିରେ ବାଙ୍କୀ ରାଇଜରେ କାହାରି ପ୍ରାଣହାନୀ ଘଟିନାହିଁ । ବାଙ୍କୀବାସୀଙ୍କ ପ୍ରତି ଏହା ମା'ଙ୍କର ଶ୍ରେଷ୍ଠ ଆଶୀର୍ବାଦ ଓ ଅପାର କରୁଣା ନୁହେଁ କି । କାଳିକକ୍ଷରେ କୁହାଯାଇଛି–

ପୁରୁବେ ରହିବେ ଚଣ୍ଡୀ, ପଶ୍ଚିମରେ ଶିବ
ଦକ୍ଷିଣେ ବୃଦ୍ଧଲିଙ୍ଗଟି ଚିତ୍ରୋତ୍ପଳା ଥିବ
ରୁଚିକେ ରହିବେ ଦେବୀ ନାମ ଚର୍ଚ୍ଚିକାଇ
ଶକ୍ତିଧର ପର୍ଶୁରାମ ପୀଠ ଏ ବୋଲାଇ ।

୧୮୬୪ରେ ମହାତ୍ମା ମହିମା ଗୋସାଇଁ ତରୁଣ ଭୀମଭୋଇଙ୍କୁ ଆଣି ପ୍ରଥମେ ଏହି ପୀଠରେ ଧର୍ମଦୀକ୍ଷିତ କରାଇଥିଲେ । ସନ୍ଥ ହାଡ଼ୁଦାସ ଏହି ପୀଠ କରବର ଗାଁରେ ଭୂମିଷ୍ଠ ହୋଇଥିଲେ । ପରବର୍ତ୍ତୀ ଜୀବନରେ ଦର୍ପଣୀ ରାଜନିଗ୍ରହରୁ ଛତିଆ ପାହାଡରେ ପୀଠସ୍ଥାପନ ହିଁ ଏହି ଶକ୍ତିମୟୀ ଚର୍ଚ୍ଚିକାଙ୍କ ବର ପ୍ରଦାନରେ ହୋଇଥିଲା । ମା'ଙ୍କ ପୀଠରେ ପ୍ରତି ପୂର୍ଣ୍ଣିମା ଦିନ ତଳମଣ୍ଡପ ନିକଟରେ ଏକ ଯଜ୍ଞ ଅନୁଷ୍ଠିତ ହୁଏ। ଏହି ଯଜ୍ଞରେ ବିଭିନ୍ନ ପ୍ରାନ୍ତରରୁ ଭକ୍ତମାନେ ଆସି ଗୁଆ ବସାନ୍ତି । ନିଜର ଅଭୀଷ୍ଟ ପୂରଣ ପାଇଁ ଏହି ଗୁଆ କାର୍ତ୍ତିକ ପୂର୍ଣ୍ଣିମା ବିଶ୍ୱଶାନ୍ତି ମହାଯଜ୍ଞରେ ଉୟାଁ ହୁଏ । ଭକ୍ତମାନଙ୍କ ଅଭୀଷ୍ଟ ପୂରଣ ହେବାର ନଜିର ମଧ୍ୟ ରହିଛି । ବାଲେଶ୍ୱରର ଜଣେ ମା'ଙ୍କ ଭକ୍ତ ସାଉଥ୍ ଆଫ୍ରିକାରେ ରହନ୍ତି । ସେ ଥରେ ଜାହାଜ ଦୁର୍ଘଟଣାରେ ପଡ଼ି ମା'ଙ୍କୁ ବିକଳ ପ୍ରାର୍ଥନା କରିଥିଲେ । ସେ ତାଙ୍କର କେତେଜଣ ସହଯୋଗୀମାନଙ୍କ ସହିତ ଆସନ୍ନ ମୃତ୍ୟୁମୁଖରୁ ଉଦ୍ଧାର ପାଇଥିଲେ । ଗତବର୍ଷ ସେ କାର୍ତ୍ତିକ ପୂର୍ଣ୍ଣିମାଦିନ ଆସି ସବୁ ବୃତ୍ତାନ୍ତ କହିଲାବେଳେ ତାଙ୍କ ଚକ୍ଷୁ ଲୋତକପୂର୍ଣ୍ଣ ହୋଇଗଲା ଓ ପାଟି ଥରି ଉଠିଲା । ଏପରି ହୃଦୟସ୍ପର୍ଶୀ ମୁହୂର୍ତ୍ତରେ ଆମ ଆଖିରେ ଲୁହ ରହିଲା ନାହିଁ । ସେ କହିଲେ ମୋର ଭାଗ୍ୟ ଆପଣଙ୍କ ସହିତ ମା'ଙ୍କ ବିଶ୍ୱଶାନ୍ତି ମହାଯଜ୍ଞରେ ମା'ଙ୍କୁ ଦର୍ଶନ କଲି । ଇତିହାସ ପୋଥି ପୁରାଣରୁ ଆମେ ମା'ଙ୍କ ମହାତ୍ମ୍ୟ ବିଶ୍ୱାସ କରୁଛେ । ଆଜି ପ୍ରତ୍ୟକ୍ଷ ଦୃଷ୍ଟାନ୍ତ ଯାହା ଆଜି ଅନୁଭବ କରୁଛେ, ତାହା ସମୁଚିତ ମନେକରି ଲେଖୁଛି । ଭକ୍ତିଶକ୍ତିର ପରାକାଷ୍ଠା ଯୁଗେ ଯୁଗେ ରହିଛି, ଏ ସଂସାର ତାରି ପାଇଁ ଚାଲିଛି, ଯାହା ସର୍ବଶ୍ରେଷ୍ଠ ଅସ୍ତ୍ର । ଏହା ମା'ଙ୍କ ବରଦାନ ଓ ବଞ୍ଚି ରହିବାର ଏକମାତ୍ର ରାହା ।

ମା' ଜଗତ୍‌ଜନନୀ ଜଗତର ହିତ ପାଇଁ ଆଶିଷ ବରଷି ଦେଇ ସମସ୍ତଙ୍କୁ ସୁଖ ଶାନ୍ତିରେ ରଖନ୍ତୁ, ଏହା ମୋର ମା'ଙ୍କ ନିକଟରେ ବିନମ୍ର ପ୍ରାର୍ଥନା ।

ମନ୍ଦିର ସାହି, ବାଙ୍କୀ

❖ ❖ ❖

# ଯୋଗାଯୋଗର ନିଆରା ମାଧ୍ୟମଃ ଇ-ମେଲ୍‌

**ବସନ୍ତ କୁମାର ଦାସ**

ଇଣ୍ଟରନେଟ୍‌ରେ ସଂଯୁକ୍ତ ହେଲେ ବିଭିନ୍ନ ପ୍ରକାର କାର୍ଯ୍ୟର ସୁବିଧା ମିଳେ । ଏଗୁଡିକ ହେଲା ଇ-ମେଲ୍ ବା ଇଲେକ୍‌ଟ୍ରୋନିକ୍ ମେଲ୍ । ଏଥିରେ ଗୋଟିଏ କମ୍ପ୍ୟୁଟରରୁ ଆଉ ଗୋଟିଏ କମ୍ପ୍ୟୁଟରକୁ ଆଖି ପିଛୁଳାକେ ଚିଠି ପଠାଯାଇଥାଏ । ଏଥିପାଇଁ ପୋଷ୍ଟ ଅଫିସ୍ ବା ଡାକଘରର କୌଣସି ସାହାଯ୍ୟ ନେବାକୁ ପଡେନାହିଁ । ଏରୋଗ୍ରାମ୍/ଏୟାର୍ ମେଲ୍ ଡାକଟିକେଟ୍, ସ୍ପିଡ୍‌ପୋଷ୍ଟ, ରେଜିଷ୍ଟ୍ରେଡ୍ ଚିଠି, ଡାକଘର, ଡାକପିଅନ, ଚିଠି ବାକ୍ସ, ବେରିଂ ଚିଠି ଇତ୍ୟାଦି ଠାରୁ ଏହା ବହୁ ଉର୍ଦ୍ଧ୍ୱରେ । ଏପରିକି ଟେଲେକ୍ସ, ଫାକ୍ସ, ଟେଲିଗ୍ରାମ ଓ ଫୋନୋଗ୍ରାମ ଆଦିଠାରୁ ଖୁବ୍ ସୁବିଧା ଓ ଶସ୍ତା ଉପାୟରେ ଇ-ମେଲ୍‌କୁ ଆଜିକାଲି ବ୍ୟବହାର କରାଯାଉଅଛି । ଅତି ସହଜ ଓ ସୁବିଧାରେ ଜଣେ ଚାହିଁଲେ ତା'ର ଆତ୍ମୀୟ ସ୍ୱଜନଙ୍କ ପାଖକୁ ଇ-ମେଲ୍ ଜରିଆରେ ତାଜା ଗର୍‌ମାଗରମ୍ ଚିଠି ପଠେଇ ପାରିବ, କେବଳ ଇଂରାଜୀ ଭାଷାରେ ନୁହେଁ ପ୍ରାୟ ପୃଥିବୀର ସବୁ ଭାଷାରେ ସତ୍ୟମ୍ ଅନ୍‌ଲାଇନ୍-୧୪ ଭାରତୀୟ ଭାଷାରେ ଚିଠି ପଠେଇବାରେ ସୁବିଧା ନିକଟରେ ଗ୍ରାହକମାନଙ୍କୁ ପ୍ରଥମ କରି ଯୋଗାଇ ଦେଇଛି ।

ଆଧୁନିକ ଯୁଗର ବାର୍ତ୍ତା ପ୍ରେରଣର ସର୍ବାଧୁନିକ ପ୍ରଣାଳୀ ଇ-ମେଲ୍ । ଗତ ୧୦୦ ବର୍ଷରୁ ଉର୍ଦ୍ଧ୍ୱ ସମୟ ଧରି ପ୍ରଚଳିତ ପଦ୍ଧତି ଡାକ ଲଫାପା ଚିଠିକୁ ପଛରେ ପକେଇ ଦେଇଛି କାରଣ ଏହା ବିଳମ୍ବ ପ୍ରକ୍ରିୟା । ତେବେ ଗାଁ ଗଣ୍ଡା ତଥା ମଫସଲ ପାଇଁ ବାର୍ତ୍ତା ପଠାଇବା ଅସୁବିଧା ଓ ସମୟ ସାପେକ୍ଷ ହୋଇଥିଲେ ହେଁ ଅନେକାଂଶରେ ଏହା ସମାଧାନ ହୋଇପାରିଛି । (ଟେଲିଗ୍ରାମ୍, ଟେଲେକ୍ସ ଫ୍ୟାକ୍ସଠାରୁ ସରଳ ଫ୍ୟାକ୍ସ ବ୍ୟୟସାପେକ୍ଷ) ।

ଇ-ମେଲ୍ ନିମନ୍ତେ ପ୍ରେରକ ଓ ପ୍ରେରିତ ସ୍ଥାନରେ କମ୍ପ୍ୟୁଟର (ପିସି) ଥିବା ଦରକାର । ଆଜିକାଲି ବହୁଲୋକ ନିଜ ଘରେ ପର୍ସନାଲ୍ କମ୍ପ୍ୟୁଟର (ପିସି) ରଖୁଛନ୍ତି । ଏହିସବୁ କମ୍ପ୍ୟୁଟର ଏକ କମ୍ପ୍ୟୁଟର ନେଟ୍‌ୱାର୍କ ଦ୍ୱାରା ପରସ୍ପର ସହିତ ସଂଯୁକ୍ତ ହେବା ଆବଶ୍ୟକ । (LAN: Local Area Network, WAN: World Area Network, Internet: Global Area Network) ଏହି କମ୍ପ୍ୟୁଟର ନେଟ୍‌ୱାର୍କ ଉପଗ୍ରହ ତଥା ଟେଲିଫୋନ୍ ବା କେବଳ ଲାଇନ୍ ଦ୍ୱାରା ସଂଯୁକ୍ତ ହୋଇଥାଏ । ଏହିଭଳି ଏକ କମ୍ପ୍ୟୁଟର ହେଲେ ଇଲେକ୍‌ଟ୍ରୋନିକ୍ ମେଲ୍ ପଠାଇବାକୁ ସୁବିଧା ହୁଏ ।

ଇ-ମେଲ୍ ଜରିଆରେ ଏକ ବାର୍ତ୍ତା ଦାମନଯୋଡିରୁ ଡେନ୍‌ମାର୍କ ଯିବାକୁ ହେଲେ କମ୍ପ୍ୟୁଟରରେ ଲାଗିଥିବା ୱାର୍ଡ ପ୍ରୋସେସରରେ ବାର୍ତ୍ତାଟି ପ୍ରଥମେ ଟାଇପ୍ ହୁଏ । କମ୍ପ୍ୟୁଟର ନେଟ୍‌ୱାର୍କ ସାହାଯ୍ୟରେ ବାର୍ତ୍ତାଟି ଆଖିପିଛୁଳାକେ ଇଲେକ୍‌ଟ୍ରୋନିକ୍ ସିଗ୍‌ନାଲ୍ ଡିଜିଟାଲ୍ ପଦ୍ଧତିରୁ ସାଧାରଣ ଭାଷାକୁ ପରିବର୍ତ୍ତିତ ହୁଏ ଓ କମ୍ପ୍ୟୁଟରର ପରଦାରେ ପୂରା ବାର୍ତ୍ତାଟି ଲେଖି ହୋଇଯାଏ । ବାର୍ତ୍ତା ଗ୍ରହଣ କରିବା ବ୍ୟକ୍ତି ଯଦି ଚାହେଁ ତେବେ ସେ ବାର୍ତ୍ତାକୁ କାଗଜରେ ଛାପି ପାରିବ । ସେଥିପାଇଁ କମ୍ପ୍ୟୁଟର ସହିତ ପ୍ରିଣ୍ଟର ସଂଯୋଗ ହେବା ଆବଶ୍ୟକ । ଏହି ପଦ୍ଧତି ଖୁବ୍ କ୍ଷୀପ୍ର । ଆଖି ପିଛୁଳାକେ ବଡ ବଡ ଚିଠି ଗୋଟିଏ ଦେଶରୁ ଅନ୍ୟ ଦେଶକୁ ଯାଇପାରୁଛି । ୬୪ ପୃଷ୍ଠାର ଏକ ବାର୍ତ୍ତା ମାତ୍ର ଆଠମିନିଟ୍ ଭିତରେ କାଲିଫର୍ଣ୍ଣିଆରୁ ପଶ୍ଚିମ ଜର୍ମାନୀକୁ ଇ-ମେଲ୍ ଜରିଆରେ ପଠାଯାଇ ପାରିଥିଲା ।

ବାର୍ତ୍ତା/ଚିଠି ପଠାଯାଉଥିବା ବ୍ୟକ୍ତି ଯଦି ଘରେ, ଅଫିସ୍‌ରେ ଅନୁପସ୍ଥିତ ଥାନ୍ତି ତେବେ ବାର୍ତ୍ତାଟି କମ୍ପ୍ୟୁଟର୍‌ର ସ୍ମୃତି ଭଣ୍ଡାରରେ ଗଚ୍ଛିତ ହୋଇରହିବ । ବ୍ୟକ୍ତି ଜଣକ ଘରକୁ ଫେରିବା ମାତ୍ରେ କମ୍ପ୍ୟୁଟର ଏମିତି ଏକ ସଂକେତ ଦେବ ଯାହାଦ୍ୱାରା ତାଙ୍କ ପାଇଁ (ମେମୋରି) ସ୍ମୃତିଭଣ୍ଡାରରେ ବାର୍ତ୍ତା ଗଚ୍ଛିତ ଥିବା ଜଣାପଡିଯିବ

ଓ ସେ କମ୍ପ୍ୟୁଟର ଚଳାଇଲେ ପୁରା ବାର୍ତ୍ତାଟିକୁ ପାଇପାରିବେ । ଖାଲି ସେତିକି ନୁହେଁ ଯଦି ଜଣକ ବିଭିନ୍ନ ଜାଗାକୁ/ଦେଶକୁ ଟୁର୍‌ରେ ଯାଉଥାନ୍ତି ତେବେ ସେ ତାଙ୍କ ବାର୍ତ୍ତା ବିଭିନ୍ନ ସ୍ଥାନରୁ କମ୍ପ୍ୟୁଟର ଜରିଆରେ ପାଇପାରିବେ । ଏଥିରେ ଚିଠି ରେଡିରେକ୍ଟ/ରିଟର୍ଣ୍ଣ ବା ବିଳମ୍ବ ହେବା ଆବଶ୍ୟକ ନାହିଁ । ଇମେଲ୍ ଖର୍ଚ୍ଚାନ୍ତ ଜନକ ଏସ୍‌ଟିଡି/ଆଇଏସ୍‌ଡି ଭଳି ନୁହେଁ । ଏହା ବର୍ତ୍ତମାନ କମ୍ପାନୀ ଓ ଅଫିସରୁ ବ୍ୟକ୍ତିଗତ ସ୍ତରକୁ ସଂକ୍ରମିତ ଓ ଆଦୃତ ହେବାରେ ଲାଗିଛି ।

ଦିନଥିଲା ଲୋକେ ଭିଜିଟିଂ କାର୍ଡରେ ଠିକଣା ଓ ଟେଲିଫୋନ୍ ନମ୍ବର ଲେଖୁଥିଲେ । ବର୍ତ୍ତମାନ ତା' ବଦଳରେ ଇ-ମେଲ୍ ଆଡ୍ରେସ୍‌ରେ ଚିଠି ଦେବାକୁ କୁହାଯାଉଛି । Symposium/ Seminar/Debate e-mail ଜରିଆରେ ହେଉଛି । ମହିଳା ସଂରକ୍ଷଣ ବିଲ୍ ସମ୍ବନ୍ଧରେ ଆମ ସରକାର ମତାମତ ଇ-ମେଲ୍ ଜରିଆରେ ସର୍ବସାଧାରଣ/ବ୍ୟକ୍ତି ବିଶେଷଙ୍କଠାରୁ ସଂଗ୍ରହ କରୁଥିଲେ । ଆଜିକାଲି ଅନେକ ପବ୍ଲିକ୍ କଲ୍ ଅଫିସ୍ ଆମ ରାଜ୍ୟ ତଥା ଦେଶରେ ଖୋଲାଯାଇଛି । ପ୍ରାୟ ୩୦ମିନିଟ୍‌ର ବ୍ୟବହାର କରିବା ପାଇଁ ମାତ୍ର ୨୦ରୁ ୨୫ ଟଙ୍କା ପଡୁଛି । ଏହା ନିଶ୍ଚିତ ରୂପେ ଅନ୍ୟାନ୍ୟ ଯୋଗାଯୋଗ ମାଧ୍ୟମଠାରୁ କମ୍ ଖର୍ଚ୍ଚରେ ସମ୍ଭବ ହେଉଛି । ଏହା ଆଉ କିଛି ଆଶ୍ଚର୍ଯ୍ୟ କଥା ହୋଇ ରହିନାହିଁ । ସୂଚନା ଓ ପ୍ରଯୁକ୍ତି ବିଦ୍ୟାର ସୁଫଳ ଆଜି ସମସ୍ତଙ୍କୁ ପୁଲକିତ ଓ ଚକିତ କରିପାରିଛି । ଇଉରୋପ, ଆମେରିକା ଓ ଜାପାନ ଆଦି ଦେଶରେ ସାଧାରଣ ବାର୍ତ୍ତାକୁ ଇମେଲ୍ ସାହାଯ୍ୟରେ ପଠାଯାଇ ପାରୁଛି ।

ବ୍ୟାଙ୍କରେ ଯେପରି ଆପଣମାନେ ଆକାଉଣ୍ଟ ଖୋଲୁଛନ୍ତି– ଠିକ୍ ସେହିପରି ଆଜିକାଲି ଇ-ମେଲ୍ ଆକାଉଣ୍ଟ ବା ନମ୍ବର ଆପଣଙ୍କୁ ଖୋଲିଲେ ସାରା ପୃଥିବୀର କୋଣ ଅନୁକୋଣକୁ ଆପଣ ନିମିଷକ ମଧ୍ୟରେ ପ୍ରବେଶ କରି ଆପଣଙ୍କର ବାର୍ତ୍ତା ଦିଆନିଆର ଏକ ନୂତନ ଅଧ୍ୟାୟ ସୃଷ୍ଟି କରିପାରିବେ । ଏଥିପାଇଁ ଅଳ୍ପ କେତେଗୋଟି ଇଂରାଜୀ (ସ୍ମଲ୍ ଲେଟର)ର ଛୋଟ ଅକ୍ଷର ଆବଶ୍ୟକ । ଏଇ ଯେପରି କେତେକ ଇ-ମେଲ୍ ଠିକଣା ହେଲା:

NALCO- ac-major@nalsys.ems.vsnl.net.in

NBT- nbtindia@ndb.vsnl.net.in

NISCOM- niscom@sirnetd.ernet.in

Science Reporter- Scirepart@hotmail.com

NCSTC- Vigynp@giasodloi.Vsnl.net.in

B.K.Das- basantadas2008@rediffmail.com

ଏଣୁ ଚିଠି ଦେବାରେ ଏଣିକି ଆଉ Diary/Directory ଲମ୍ବା ଠିକଣା At, Po, Via, Dist, Pincode, alphabet ମନେରଖିବା/ଲେଖିବା ଜରୁରୀ ନୁହେଁ । ୭/୮ଟି ବାସ୍, ଆଗାମୀ କେଇ ବର୍ଷରେ ଆଉ ସଂଖ୍ୟା ଲେଖିବା ଦରକାର ହେବନି । ଯୋଗାଯୋଗ କ୍ଷେତ୍ରରେ ଏକ ନୂତନ ଅଧ୍ୟାୟ ସୃଷ୍ଟି ହେବ ।

ବି/୧୧୩, ସେକ୍ଟର-୧
ନାଲ୍‌କୋ ଟାଉନ୍‌ସିପ୍
ଦାମନଯୋଡି– ୭୬୩୦୦୮
କୋରାପୁଟ

❖ ❖ ❖

# ଅସାଧାରଣ ରୋଗର ସାଧାରଣ ଚିକିତ୍ସା

ଡାକ୍ତର ରାମଚନ୍ଦ୍ର ରାଉତ

ବିଶ୍ୱ ସ୍ୱାସ୍ଥ୍ୟ ସଙ୍ଗଠନ (ଡବ୍ଲୁଏଚ୍‌ଓ) ସ୍ୱାସ୍ଥ୍ୟର ସଂଜ୍ଞା ପ୍ରଦାନ କରନ୍ତି ମାତ୍ର ରୋଗର ସେପରି ସଂଜ୍ଞା ନାହିଁ । ରୋଗ ହେଉଛି କଷ୍ଟ, ବ୍ୟାଧି, ଯନ୍ତ୍ରଣା, ଅସୁଖ, ଅସୁସ୍ଥତା, ପୀଡା ଓ ମହାମାରୀ ପରି ଅନେକ ପ୍ରକାରର ଅଭିବ୍ୟକ୍ତି । ରୋଗ ମଧ୍ୟ ଅଳ୍ପ ଦିନର ବା ଦୀର୍ଘ ଦିନର ହୋଇପାରେ । ହଠାତ୍ କଷ୍ଟକର ହୋଇପାରେ । ଲଗାତର ରହିପାରେ । ସାଧାରଣ ବା ଅସାଧାରଣ ମଧ୍ୟ ହୋଇପାରେ । ଚିକିତ୍ସା ବିଜ୍ଞାନ ଭିତ୍ତିରେ ସଂକ୍ରାମକ ଓ ଅଣ ସଂକ୍ରାମକ ଏନ୍‌ସିଡି ହୋଇପାରେ । ଶାରୀରିକ ରୋଗ, ମାନସିକ ଓ ସାମାଜିକ ସ୍ତରରେ ମଧ୍ୟ ରୋଗ ହୋଇପାରେ । ତେଣୁ ରୋଗ ହେଲେ ମଣିଷକୁ ଦୁଃଖ ଆସେ କଷ୍ଟ ଆସେ ଓ ମୃତ୍ୟୁର ଭୟ ମଧ୍ୟ ଆସିଥାଏ । ଆଜିକାଲି କ୍ୟାନ୍‌ସର, ଏଡ୍‌ସ ପରି ଭୟାବହ ରୋଗକୁ କିଏ ଭୟ ନକରୁଛି ? ସେହିପରି ଡାଇବେଟିସ୍, ଉଚ୍ଚ ରକ୍ତଚାପ ଓ ହୃଦ୍‌ରୋଗ ପରି ଜଟିଳ ରୋଗଗୁଡିକ ମଧ୍ୟ ମଣିଷର ଚାଲିଚଳଣୀ ଓ ଜୀବନଧାରଣରେ ଅନେକ ମହତ୍ତ୍ୱପୂର୍ଣ୍ଣ ପ୍ରଭାବ ପକାଇ ଥାଏ ।

ସାଧାରଣ ଲୋକେ ଓ ବିଭିନ୍ନ ଜଟିଳ ରୋଗରେ ପୀଡିତ ଥିବା ବ୍ୟକ୍ତିବିଶେଷ ଏସବୁ ବିଷୟରେ ସତର୍କ ହେବା ଜରୁରୀ ।

ସାଧାରଣ କଥାଟିଏ ଦେଖାଯାଉ- ଏଇ ନିକଟରେ ହୋଲି ଖେଳ ପରେ ଆମ ରାଜ୍ୟରେ ବିଭିନ୍ନ ସ୍ଥାନରେ ୨୦ଜଣ ବ୍ୟକ୍ତିବିଶେଷ (ବୁଢାବୁଢୀ ନାହାଁନ୍ତି) ପାଣିରେ ବୁଡିମଲେ । ସେତିକି ରୋଗୀ ଝାଡାବାନ୍ତିରେ ମରିଥିଲେ କଥା ଅନ୍ୟପ୍ରକାର ହୋଇଥାଆନ୍ତା । ପାଣିରେ ବୁଡି ମରିବାର ପ୍ରତିହତ କରାଯାଇ ପାରିଥାଆନ୍ତା । ଆହୁରି ମଧ୍ୟ ହୋଇଥାଆନ୍ତା ଯଦି ସେମାନେ ଏହା ଆଗରୁ ମଦ ପିଇନଥାନ୍ତେ । ପହଁରା ଶିଖିବା ଏଥିପାଇଁ ଏକ ସାଧାରଣ କଥା- ପାଣିରେ ସତର୍କତାର ସହିତ ପଶିବା ଓ ଗାଧୋଇବା ତଥା ଭାସମାନ ଭେଳା/ଟିଉବ୍ ବ୍ୟବହାର କରିବା ମଧ୍ୟ ସାଧାରଣ କଥା । ଓଡ଼ିଆରେ ପ୍ରବାଦ ଅଛି- 'ନିଜ ଗାଁ ମଶାଣୀ, ପର ଗାଁ ପାଣି' ।

ଆଉ ଏକ ଗୁରୁତ୍ୱପୂର୍ଣ୍ଣ କଥା ହେଲା ସଡକ ଦୁର୍ଘଟଣା । ପ୍ରତିଦିନ ଆମ ରାଜ୍ୟରେ ପାଖାପାଖି ୧୦୦-ମୃତ୍ୟୁ ପାଖାପାଖି ୫ରୁ ୧୦ ଅର୍ଥାତ୍ ବାର୍ଷିକ ୧୫୦୦ରୁ ୩୦୦୦ ନିଶ୍ଚୟ ଅଧିକ । ଏଥିପାଇଁ କିଏ ଦାୟୀ ? ଅନେକ- ଦ୍ରୁତଗତି, ମହା ବିପତ୍ତି, ମୋବାଇଲ୍, ମଦ୍ୟପାନ, ଖାଲଖମଣା ଉଜ୍ଜଳ ଆଲୋକ- ଏସବୁ ସାଧାରଣ କଥା ଆମ୍ଭମାନଙ୍କର ନଜର ନଥାଏ- ଆମେ ହେୟଜ୍ଞାନ କରିଥାଉ । ଦୁର୍ଘଟଣା ମୃତ୍ୟୁର ଶିକାର ହେଉଥିବା ଅଧିକାଂଶ ବ୍ୟକ୍ତି ଯୁବା ବୟସର ।

କ୍ୟାନ୍‌ସର ଏକ ଦ୍ୱାରାରୋଗ ବ୍ୟାଧି । କୁହାଯାଉଛି- କ୍ୟାନ୍‌ସର ନୋ ଆନ୍‌ସର । ଏହା ଠିକ୍ ନୁହେଁ । ଏହାର ଉତ୍ତର ଅଛି ତାହା ହେଉଛି ସତର୍କତା- ପ୍ରଥମରୁ ତଥା ପ୍ରାଥମିକ ସ୍ତରରୁ । ଗୁଡ଼ାଖୁ, ଖଇନି, ଧୂଆଁପତ୍ର, ମଦ୍ୟ ଏସବୁ କ୍ୟାନ୍‌ସର୍‌ର ପ୍ରଥମ କାରଣ- ସାଧାରଣ କଥା ମାତ୍ର ଆମେ ଏସବୁ ତ୍ୟାଗ କରି ପାରୁନାହୁଁ । ଜୀବନ ପଛେ ତ୍ୟାଗ କରିବା, ଏସବୁ ସୁଖ ନୁହେଁ । ନିଶ୍ୱାସରେ ଅଧିକ ଅମ୍ଳଜାନ, ଶୁଦ୍ଧ ବାୟୁ, ଶୁଦ୍ଧ ପରିବେଶ, ପରିଷ୍କାର ପାଣି, ସବୁଜ ପନିପରିବା, ଝାଳ ବୁହା କାର୍ଯ୍ୟ ବା ବ୍ୟାୟାମ୍ । ସକାଳୁ ଚାଲିବା, ଅଳ୍ପ ଅଳ୍ପ ଖାଇବା । ଚର୍ବି, ଲୁଣ, ମିଠା ଖାଇବାରେ ନିୟନ୍ତ୍ରଣ । ଏସବୁ ସାଧାରଣ କଥା ମାତ୍ର ଆମେ କରୁନାହୁଁ । ଏଣୁ ରୋଗରେ ପଡୁଛୁ ।

ଡାଇବେଟିସ୍ ଏକ ସାଧାରଣ ଭାବେ ଅସାଧାରଣ ରୋଗ । ଥରେ ହେଲେ ସାରା ଜୀବନ ଚାଲିଲା । ପ୍ରଥମରୁ ସତର୍କ ମିଠା, ଚର୍ବି ଜାତୀୟ ଖାଦ୍ୟର ନିୟନ୍ତ୍ରଣ, ବ୍ୟାୟାମ୍, କଲରା,

କାକୁଡି, ଜହ୍ନି, ଭେଣ୍ଡି, ଶାଗ, ମୁଗ ଅଧିକ ଖାଇଲେ ଔଷଧ କମ୍ ଲାଗେ, ଶର୍କରା ପରିମାଣ କମ୍ରୁହେ । ମାତ୍ର ଫାଷ୍ଟଫୁଡ୍ ଓ ଜଙ୍କଫୁଡ୍ ଯୁଗରେ ସାଧାରଣ ଖାଦ୍ୟ କିଏ ନଖାଇବା ପାଇଁ ପସନ୍ଦ କରୁଛି ? ତେଣୁ ଲୋକମାନେ କାଦୁଅକୁ ଯାଆନ୍ତି ଗୋଡ ଧୁଅନ୍ତି ।

ଉଚ୍ଚ ରକ୍ତଚାପ ୩୫ବର୍ଷ ପରେ ଅଧିକ ପରିଲକ୍ଷିତ, ଏବେ ଆକ୍ରାନ୍ତଙ୍କ ସଂଖ୍ୟା କ୍ରମଶଃ ବୃଦ୍ଧି ପାଉଛି । ଏହା ହୃଦ୍‌ଘାତ ଓ ହଠାତ୍ ମୃତ୍ୟୁର ମୁଖ୍ୟ କାରଣ । କିପରି କମିବ ଏହା ବହୁତ ସାଧାରଣ ଓ ସହଜ । ଲୁଣ କମ୍, ବ୍ୟାୟାମ୍ ଓ ଯୋଗ ବେଶୀ ପ୍ରଫୁଲ୍ଲତା ଓ ପ୍ରାର୍ଥନା ମଧ୍ୟ ସାହାଯ୍ୟକାରୀ । ପ୍ରଥମରୁ ପରୀକ୍ଷା ଓ ପ୍ରତି ମାସରେ ଥରେ ଥରେ ଚେକ୍‌ଅପ୍ ଓ ଦରକାର ପଡିଲେ ଡାକ୍ତରୀ ପରାମର୍ଶରେ ଔଷଧ ସେବନ । ଶ୍ୱାସ ଏକ ଜଟିଳ ରୋଗ, ନିଃଶ୍ୱାସରେ ଜୀବନ– ନିଃଶ୍ୱାସ ବଳରେ ଜୀବନ ଶେଷ । ଲୋକ ଧଇଁ ସଇଁ ହୁଏ, ପେଲିହୁଏ, ଏହା ପବନର ରୋଗ । ଏଥିପାଇଁ ଚିକିତ୍ସା ସହିତ ପ୍ରାଣାୟାମ ଅଧିକ ଉପଯୋଗୀ । ଶଙ୍ଖ କିମ୍ବା ବଡ ବେଲୁନ୍ ସକାଳେ ସନ୍ଧ୍ୟାରେ ଫୁଙ୍କିବା ମଧ୍ୟ ଜରୁରୀ । ଥଣ୍ଡା, କୋଲଡ୍ ଡ୍ରିଙ୍କସ୍, ଆଇସ୍‌କ୍ରିମ୍‌ରୁ ଦୂରରେ ରହିବା ଦରକାର । ଶୁଦ୍ଧବାୟୁ ପ୍ରାଣାୟାମ ଏହି ରୋଗର ଦୁଇଟି ମୁଖ୍ୟ ଉତ୍ତର ।

ରକ୍ତହୀନତା ଏକ ବହୁଳ ଦୃଷ୍ଟରୋଗ– ୫୦%ରୁ ଅଧିକ ମହିଳା ଓ ଶିଶୁ ତଥା ୩୦%ରୁ ଅଧିକ ପୁରୁଷମାନଙ୍କ ମଧ୍ୟରେ ଏହା ଦେଖାଯାଇଥାଏ । ଏହା ଅନେକ କାରଣରୁ ଯଥା– ରକ୍ତକ୍ଷୟ, କୃମି, ଅଳ୍ପ ପରିମାଣର ଲୌହସାର ଉପଯୋଗ ଓ ରକ୍ତରୋଗ ଯୋଗୁଁ ହୋଇଥାଏ । ତେଣୁ ପ୍ରତ୍ୟେକ ବାଳିକାମାନଙ୍କର ସ୍କୁଲରେ ରକ୍ତ ପରୀକ୍ଷା ତଥା ହିମୋଗ୍ଲୋବିନ୍ ନିର୍ଣ୍ଣୟ କରାଯାଇ ଆଇରନ୍ ବଟିକା ବିତରଣ ବ୍ୟବସ୍ଥା କରାଯାଇଛି । ଏହା ଏକ ସାଧାରଣ କାମ ହେଲେ ମଧ୍ୟ ରକ୍ତହୀନତା ଦୂର କ୍ଷେତ୍ରରେ ଏହା ଏକ ଉନ୍ନତ ପଦକ୍ଷେପ ।

ଝାଡାବାନ୍ତି ସାଧାରଣତଃ ଦୂଷିତ ଜଳ, ଖାଦ୍ୟ, ମଇଳା ହାତ ଓ ମାଛିମାନଙ୍କ ଦ୍ୱାରା ବ୍ୟାପିଥାଏ । ପାଣି ପିଇବା ପୂର୍ବରୁ ଏହା ସଫା ନା ମଇଳା ଦେଖିବା ଉଚିତ୍– 'ପାଣି ପିଇବ ଛାଣି, ପଇସା ନେବ ଗଣି'– ପାଣିରେ ଥିବା ଅନେକ ଦୂଷିତ ଜୀବାଣୁ ଫିଲ୍‌ଟର ଆକୁଆଗାର୍ଡ ଦ୍ୱାରା ଛଣା ଯାଇ ଥାଆନ୍ତି । ପାଣି ଫୁଟାଇ ପିଇବା ମଧ୍ୟ ଠିକ୍ । ଆଇରନ୍ ବାହାରୁ ନଥିଲେ ନଳକୂଅ ପାଣି ମଧ୍ୟ ବେଶ୍ ଉପଯୋଗୀ । ସମସ୍ତେ ବିଶେଷତଃ ଗ୍ରାମାଞ୍ଚଳର ଲୋକମାନେ ଏ ବିଷୟରେ ସତର୍କ ହେଲେ ଝାଡାବାନ୍ତିର ପରିମାଣ ଅନେକ କମିଯିବ ।

ସେହିପରି ମ୍ୟାଲେରିଆ ଆମ ରାଜ୍ୟରେ ଏକ ସମସ୍ୟା। ଏଥିପାଇଁ ମ୍ୟାଲେରିଆ ପ୍ରବଣ ଅଞ୍ଚଳର ସରକାରଙ୍କ ତରଫରୁ ଅଳ୍ପ ମୂଲ୍ୟରେ ଔଷଧ ବୁଡା ମଶାରୀ ବଣ୍ଟା ଯାଉଛି । ଏହାର ସୁଯୋଗ ନେଇ ପ୍ରତ୍ୟେକ ବ୍ୟକ୍ତି ଏହି ଔଷଧ ବୁଡା ମଶାରୀ ବ୍ୟବହାର କଲେ ମହାମାରାତ୍ମକ ମ୍ୟାଲେରିଆରୁ ରକ୍ଷା ପାଇପାରିବ । ମ୍ୟାଲେରିଆ ପାଇଁ ସାଧାରଣ ଚିକିତ୍ସା ନକରି ସରକାରୀ ଡାକ୍ତରଖାନାରେ ରକ୍ତ ପରୀକ୍ଷା କରାଇ ଦେଇ ନିର୍ଦ୍ଧାରିତ ମାତ୍ରାରେ ଔଷଧ ସେବନ କଲେ ମୃତ୍ୟୁ ମୁଖରୁ ରକ୍ଷା ପାଇହେବ ।

ରୋଗ ଅସାଧାରଣ ଓ ଭୟାଳୁ ହୋଇପାରେ ମାତ୍ର ଏହାର ପ୍ରତିଷେଧକ ଅତି ସାଧାରଣ ଓ ଉପଯୋଗୀ । ଏହାର ସୁଯୋଗ ସମସ୍ତେ ନେବା ଉଚିତ୍ । ଭାଗବତରେ କୁହାଯାଇଛି–

ବୁଦ୍ଧି ବିଚାରି କାର୍ଯ୍ୟ କଲେ,
ପ୍ରମାଦ ନପଡଇ ଭଲେ ।

ଗୋପାଳପୁର, ହରିହରଭେଟ୍
ବାଙ୍କୀ, କଟକ–୭୫୪୦୦୮

❖ ❖ ❖

# ଚନ୍ଦ୍ରଭାଗା ତୀର୍ଥରେ ମାଘସପ୍ତମୀ ସ୍ନାନର ବିଶେଷତ୍ୱ

**ଗୀତାଞ୍ଜଳି ଦାଶ**

ଓଡ଼ିଆ ଜାତିର ଶିଳ୍ପ ନୈପୁଣ୍ୟର ଗୌରବ ଗାଥା ସୂର୍ଯ୍ୟ ମନ୍ଦିର କୋଣାର୍କରେ ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ । ସେଥିପାଇଁ ବିଶ୍ୱ ଦରବାରରେ ଓଡ଼ିଆ ଜାତି ଆଜି ସୁପରିଚିତ । କୋଣାର୍କଠାରୁ ଅନତିଦୂରରେ ପୁଣ୍ୟତୋୟା ପୁରାଣ ପ୍ରସିଦ୍ଧ ଉତ୍କଳର ପବିତ୍ର ତୀର୍ଥଭୂମି ଚନ୍ଦ୍ରଭାଗା ଅବସ୍ଥିତ । ଶାମ୍ବପୁରାଣ, ଭବିଷ୍ୟ ପୁରାଣ ଓ ମତ୍ସ୍ୟ ପୁରାଣମାନଙ୍କରେ ଏ ତୀର୍ଥର ମହିମା ବହୁ ଚର୍ଚ୍ଚିତ । ପୁରାଣ କଥା ଅନୁସାରେ ଶ୍ରୀକୃଷ୍ଣଙ୍କ ପୁତ୍ର ଶାମ୍ବ ପିତାଙ୍କ ଦ୍ୱାରା ଅଭିଶାପ ପାଇ କୁଷ୍ଠ ରୋଗାକ୍ରାନ୍ତ ହେଲେ । ଶାମ୍ବଙ୍କ ମାତା ଜାମ୍ବବତୀ ନିଜର ପ୍ରିୟ ପୁତ୍ରର ଏପରି ଅବସ୍ଥା ସହ୍ୟ କରି ନପାରି ସ୍ୱାମୀଙ୍କ ନିକଟରେ କ୍ଷମା ପ୍ରାର୍ଥନା କଲେ । ଶ୍ରୀକୃଷ୍ଣ ପ୍ରିୟ ପୁତ୍ର ଶାମ୍ବଙ୍କୁ ଆଶ୍ୱାସନା ଦେଇ କହିଲେ-



ମୈତ୍ରେୟାଖ୍ୟଂ ବନଂଗତ୍ୱା ତପସ୍ତପ୍ତା ଜିତେନ୍ଦ୍ରିୟଃ
ପ୍ରସାଦୟିତ୍ୱା ଛାୟେଶଂ ତତୋ ମୁକ୍ତିଂ ଗମିଷ୍ୟମି ।

(କପିଳ ସଂହିତା)

ପବିତ୍ର ଉତ୍କଳ ଦେଶରେ ଅବସ୍ଥିତ ପୁଣ୍ୟତମ ମୈତ୍ରେୟବନ ଏବଂ ନୀଳ ସାଗରର କୂଳସ୍ଥ ଅର୍କ ନାମକ ବଟବୃକ୍ଷ ଭଗବାନ ଭୁବନଭାସ୍କରଙ୍କର ଅତି ପ୍ରିୟସ୍ଥଳୀ । କୁଷ୍ଠ ରୋଗର କ୍ଷୟକାରୀ ଏକମାତ୍ର ସୂର୍ଯ୍ୟ ହିଁ ଏବସ୍ଥାରେ ଆରାଧ୍ୟ । ତପସ୍ୟାଦ୍ୱାରା ତାଙ୍କୁ ସନ୍ତୁଷ୍ଟ କଲେ ଏ ରୋଗରୁ ମୁକ୍ତି ମିଳି ପାରିବ । ସେହି ସୂର୍ଯ୍ୟଦେବ ଏକ ରଥ ବିଶିଷ୍ଟ ହିରଣ୍ମୟ ରଥରେ ବ୍ରହ୍ମାଣ୍ଡକୁ ପରିଭ୍ରମଣ କରନ୍ତି । ପିତାଙ୍କ ଦ୍ୱାରା ଉପଦିଷ୍ଟ ଶାମ୍ବ ମୈତ୍ରେୟ ବନକୁ ଯାଇ ପୌଷ ମାସର ଶୁକ୍ଳ ଦଶମୀ ରବିବାର ତିଥିରେ ସୂର୍ଯ୍ୟନାରାୟଣଙ୍କ ପାଇଁ କଠୋର ତପସ୍ୟା କଲେ । ବାରବର୍ଷ ପର୍ଯ୍ୟନ୍ତ ସୂର୍ଯ୍ୟଙ୍କ ଧ୍ୟାନ ସହିତ ଏକବିଂଶତି ନାମ ସ୍ମରଣ କରି ଅର୍କତୀର୍ଥ ନିକଟସ୍ଥ ପୁଣ୍ୟସଲିଳା ଚନ୍ଦ୍ରଭାଗାରେ ସ୍ନାନ କରିଥିଲେ । ଏକଦା ପଦ୍ମ ସଦୃଶ ମନୋହର ଦ୍ୱିଭୁଜ ବିଶିଷ୍ଟ ଏକ ପ୍ରତିମାଜଳ ମଧ୍ୟରେ ଦେଖି ବେଳାଭୂମିରୁ ଉତ୍ତୋଳନ କରି ଆଣିଥିଲେ । ସଲିଳରେ ପ୍ରତିମା ଅଙ୍ଗ ମାର୍ଜନ କରି ଶାମ୍ବ ଯଥାବିଧି ସେହି ମୂର୍ତ୍ତି ସ୍ଥାପନ କଲେ ଏବଂ ସୂର୍ଯ୍ୟଦେବଙ୍କ ଅପାରକୃପାରୁ କୁଷ୍ଠ ରୋଗରୁ ମୁକ୍ତ ହୋଇଥିଲେ । ଶ୍ରୀକୃଷ୍ଣଙ୍କ ପୁତ୍ର ଯେଉଁଠାରେ ସୂର୍ଯ୍ୟମୂର୍ତ୍ତି ସ୍ଥାପନ କରିଥିଲେ, ତାହାହିଁ ପୁରାଣ ଓ ଇତିହାସ ପ୍ରସିଦ୍ଧ ସୂର୍ଯ୍ୟମନ୍ଦିର କୋଣାର୍କ ନାମରେ ବିଶ୍ୱ ବିଖ୍ୟାତ । ପୌରାଣିକ ପୃଷ୍ଠଭୂମି ଅନୁସାରେ ଏହା ଏକ ପବିତ୍ର ତୀର୍ଥ ପଦବାଚ୍ୟ ।

ଭଗବାନଙ୍କ ଅବତାରର ପ୍ରାକଟ୍ୟସ୍ଥଳ, ବ୍ରହ୍ମା ଆଦି ବିଶିଷ୍ଟ ଦେବତାମାନଙ୍କ ଯଜ୍ଞଭୂମି ଏବଂ କ୍ଷେତ୍ର, ବିଶିଷ୍ଟ ନଦୀମାନଙ୍କ ସଙ୍ଗମ, ପବିତ୍ର ବନ, ପର୍ବତ, ଝରଣା, ଅରଣ୍ୟ ତଥା ପ୍ରଭାବଶାଳୀ ସନ୍ଥ, ଭକ୍ତ, ମୁନିଋଷି, ମହାତ୍ମାମାନଙ୍କ ତପଃସ୍ଥଳୀ ଏବଂ ସାଧନାର କ୍ଷେତ୍ର ଆଦି ପବିତ୍ର ତୀର୍ଥଭୂମି ରୂପେ ବିବେଚିତ । ଅଭିଧାନ, ଋଗ୍‌ବେଦ ତଥା ବୈଦିକ ବର୍ଣ୍ଣନା ଅନୁସାରେ 'ତୀର୍ଥ ଶବ୍ଦର ଅର୍ଥ ମାର୍ଗ ବା ସଡକ, ନଦୀ ନଦୀର ତଟ ବା ସମୀପସ୍ଥ କ୍ଷେତ୍ର, ସମୁଦ୍ର ତୀରସ୍ଥ ପବିତ୍ର ସ୍ଥାନ ଭାବରେ ବ୍ୟବହାର କରାଯାଇଛି । ଶତପଥ ବ୍ରାହ୍ମଣର ସମୁଦ୍ରକୁ ତୀର୍ଥ ରୂପେ ବର୍ଣ୍ଣନା କରାଗଲା ବେଳେ ମେଦିନୀ କୋଷରେ ତୀର୍ଥ ଶବ୍ଦର ଅର୍ଥ ପୁଣ୍ୟସ୍ଥାନ, ଋଷିସେବିତଜଳ, ଜଳଘାଟ, ସତ୍‌ପାତ୍ର, ଗୁରୁ, ଶାସ୍ତ୍ର ଓ ଯଜ୍ଞ ଇତ୍ୟାଦି । ପୌରାଣିକ ମତାନୁସାରେ ଯିଏ ପବିତ୍ର କରେ ତାକୁ ହିଁ ତୀର୍ଥ କୁହାଯାଏ । ଶ୍ରୀମଦ୍ ଭାଗବତ ଅଧ୍ୟାୟ ୧।୧୩।୧୦ ଅନୁସାରେ 'ତୀର୍ଥୀକୁର୍ବନ୍ତି ତୀର୍ଥାନି' ଅର୍ଥାତ୍ ମହାପୁରୁଷମାନଙ୍କ ଭଗବଦୀୟ ଗୁଣର ପ୍ରଭାବରେ ସେମାନେ ତୀର୍ଥକୁ ମଧ୍ୟ ପବିତ୍ର କରିଥାନ୍ତି । ଯେଉଁ ତୀର୍ଥରେ ମହାତ୍ମାମାନେ ବାସ କରନ୍ତି, ସେ ସ୍ଥାନ ପବିତ୍ର ତୀର୍ଥ ରୂପେ ବିବେଚିତ । ଦେବର୍ଷି ନାରଦ ଭକ୍ତିସୂତ୍ରରେ କହିଛନ୍ତି–

'ତୀର୍ଥୀକୁର୍ବନ୍ତି ତୀର୍ଥାନି ସୁକର୍ମୀ କୁର୍ବନ୍ତି କର୍ମାଣି,
ସଚ୍ଛାସ୍ତ୍ରୀ କୁର୍ବନ୍ତି ଶାସ୍ତ୍ରାଣି'

ଅର୍ଥାତ୍ ମହାପୁରୁଷ ତୀର୍ଥକୁ ସୁତୀର୍ଥ କର୍ମକୁ ସୁକର୍ମ ଏବଂ ଶାସ୍ତ୍ରକୁ ସୁଶାସ୍ତ୍ର କହିଥାନ୍ତି । ଶୁଦ୍ଧତତ୍ତ୍ୱ ନାମକ ଗ୍ରନ୍ଥରେ ଏକଥା ସ୍ପଷ୍ଟ ରୂପେ ପ୍ରତିପାଦିତ ଯେ, ତୀର୍ଥସ୍ଥାନମାନଙ୍କରେ ମୁନିଋଷି, ସାଧୁସନ୍ଥ, ମହାପୁରୁଷମାନଙ୍କ ପଦାର୍ପଣ ଫଳରେ ସେ ସ୍ଥାନର ଜଳ, ବାୟୁ ଓ ମୃତ୍ତିକା ଓ ଅଗ୍ନିରେ ଆଧ୍ୟାତ୍ମିକ ତେଜ ଶକ୍ତିର ବିକିରଣ ପ୍ରବଳ ମାତ୍ରାରେ ହୋଇଥାଏ । ଫଳରେ ତୀର୍ଥ ଦର୍ଶନ ଓ ସେବନଦ୍ୱାରା ପାପ ହିଂସାଦି ତାମସିକ ବୃତ୍ତିର ବିନାଶ ଘଟି ସାତ୍ତ୍ୱିକ ଓ ଆଧ୍ୟାତ୍ମିକ ଭାବ ଜାଗ୍ରତ ହୋଇଥାଏ । ମଣିଷ ଈଶ୍ୱର ଭାବାପନ୍ନ ହୋଇ ଅପାର ଆନନ୍ଦ ପାଇଥାଏ । ସମସ୍ତ ପୂଜା, ବ୍ରତ ଓ ଯଜ୍ଞାଦିରେ ସଂକଳ୍ପ ସମୟରେ ପବିତ୍ର ତୀର୍ଥ ସ୍ୱରୂପ ନଦୀମାନଙ୍କୁ ଆବାହନ କରାଯାଇଥାଏ ।

ଭାରତର କେତେକ ପ୍ରମୁଖ ତୀର୍ଥ ସ୍ଥାନର ପରିଚୟ ଏହିପରି ଆମ ଶାସ୍ତ୍ରମାନଙ୍କରେ ବର୍ଣ୍ଣିତ । ଚାରିଧାମ ଯଥା– ବଦ୍ରିନାଥ, ଦ୍ୱାରକା, ରାମେଶ୍ୱର, ଜଗନ୍ନାଥ, ପୁରୀ, ଚାରି କୁମ୍ଭମେଳା ସ୍ଥାନ ମଧ୍ୟରେ ହରିଦ୍ୱାର, ପ୍ରୟାଗ, ଉଜ୍ଜୟିନୀ, ନାସିକ, ପଞ୍ଚ କାଶୀ ମଧ୍ୟରେ ବାରଣାସୀ, ଗୁପ୍ତକାଶୀ, ଉତ୍ତରକାଶୀ, ଦକ୍ଷିଣକାଶୀ ଓ ଶିବକାଶୀ, ପଞ୍ଚ ସରୋବର ମଧ୍ୟରେ ବିନ୍ଦୁ ସରୋବର, ନାରାୟଣ ସରୋବର, ପମ୍ପା ସରୋବର, ପୁଷ୍କର ସରୋବର, ମାନସ ସରୋବର ସେହିପରି ସପ୍ତପୁରୀ, ସପ୍ତନଦୀ, ସପ୍ତକ୍ଷେତ୍ର, ଦ୍ୱାଦଶ ଜ୍ୟୋତିର୍ଲିଙ୍ଗ ଆଦି ପବିତ୍ର ତୀର୍ଥର ଅନ୍ତର୍ଗତ । ପଦ୍ମପୁରାଣ, ସ୍କନ୍ଦ ପୁରାଣ, ବାମନପୁରାଣ, ବ୍ରହ୍ମପୁରାଣ ତଥା ମହାଭାରତର ଅନୁଶାସନ ପର୍ବରେ ତୀର୍ଥ ଦର୍ଶନ, ତୀର୍ଥରେ ସ୍ନାନ କିପରି ପୁଣ୍ୟଦାୟକ ତାହା ବିଶଦ ଭାବରେ ବର୍ଣ୍ଣିତ । ଆମ ପୂର୍ବାଚାର୍ଯ୍ୟଙ୍କ ମତରେ ତୀର୍ଥର ସ୍ୱରୂପ ବିଶେଷ ରୂପରେ ପରିପ୍ରକାଶ । ସେଗୁଡ଼ିକ ହେଲା ସ୍ଥାବରତୀର୍ଥ, ଜଙ୍ଗମତୀର୍ଥ, ମାନସତୀର୍ଥ, ଗୁରୁତୀର୍ଥ, ମାତାପିତା ତୀର୍ଥ, ପତିତୀର୍ଥ ଆଦି । ଏମାନଙ୍କ ମଧ୍ୟରେ ମାନସ ତୀର୍ଥ ସର୍ବଶ୍ରେଷ୍ଠ । କାରଣ ଯେଉଁ ତୀର୍ଥରେ ମନୁଷ୍ୟ ସ୍ନାନ କଲେ ପରମଗତି ପ୍ରାପ୍ତ ହୁଏ, ତାହା ମାନସ ତୀର୍ଥ ଅଟେ । ସତ୍ୟ, କ୍ଷମା, ସନ୍ତୋଷ, ସରଳତା, ମନର ସଂଯମ, ବ୍ରହ୍ମଚର୍ଯ୍ୟ, ପ୍ରିୟ ଭାଷଣ, ଜ୍ଞାନ ଓ ଧୈର୍ଯ୍ୟ ଏମାନେ ଗୋଟିଏ ଗୋଟିଏ ତୀର୍ଥ । ଯିଏ ଇନ୍ଦ୍ରିୟ ସଂଯମ ରୂପୀ ତୀର୍ଥରେ ସ୍ନାନ କରିଛି, ସେହି ଶୁଦ୍ଧ ଏବଂ ପବିତ୍ର ଆତ୍ମା ଅଟେ । ଶରୀର ମଳକୁ ଦୂର କଲେ ମନ ସୁନିର୍ମଳ ହୋଇଥାଏ । ସୁରା ପାତ୍ରକୁ ଶତବାର ଧୋଇଲେ ତାହା ଯେପରି ଶୁଦ୍ଧ ହୁଏନାହିଁ, ସେହିପରି ଦୂରାଚାରୀ, ହିଂସୁକ, ପାପୀ, ମିଥ୍ୟାବାଦୀ ବ୍ୟକ୍ତି ସ୍ନାନ, ପୂଜନ, ଜପ, ଧ୍ୟାନ, ଯଜ୍ଞ, ଦାନ ଯେତେକଲେ ମଧ୍ୟ ତାହା ପାଇ ସେ ସବୁ ଅତୀର୍ଥ । ବର୍ତ୍ତମାନ କାଳରେ ତୀର୍ଥ ସ୍ଥାନମାନଙ୍କରେ ଚୋର, ଦୁଷ୍ଟ ପ୍ରକୃତିର ଲୋକଙ୍କ ପ୍ରଭାବ ଅଧିକ । କିନ୍ତୁ ମନେ ରଖିବା ଉଚିତ ଯେ ଅନ୍ୟ ସ୍ଥାନରେ କରାଯାଇଥିବା ପାପ ତୀର୍ଥସ୍ଥାନରେ ବିନାଶ ହୋଇଥାଏ କିନ୍ତୁ ତୀର୍ଥ ସ୍ଥାନରେ କରାଯାଇଥିବା ପାପ ଅନେକ ଜନ୍ମ ପର୍ଯ୍ୟନ୍ତ ବଜ୍ରଲେପ ହୋଇ ରହିଥାଏ ।

ଆମ ଧର୍ମଶାସ୍ତ୍ରମାନଙ୍କରେ କାର୍ତ୍ତିକମହାତ୍ମ୍ୟ 'ମାଘମହାତ୍ମ୍ୟ' ଏବଂ ବୈଶାଖ ମହାତ୍ମ୍ୟରେ ପ୍ରାତଃ ସ୍ନାନର ମହତ୍ତ୍ୱ ପ୍ରତିପାଦିତ ।

ଭବିଷ୍ୟ ପୁରାଣ ମତରେ ମାଘ ସପ୍ତମୀ ସ୍ନାନର ମହତ୍ତ୍ୱ ସର୍ବାଧିକ ପୁଣ୍ୟ ପ୍ରଦାନକାରୀ ଅଟେ । ମାଘ ସପ୍ତମୀ ଦିନ ଭୁବନଭାସ୍କର ସୂର୍ଯ୍ୟଦେବଙ୍କ ଜନ୍ମ ଉତ୍ସବ ହୋଇଥିବାରୁ ଏହି ଦିବସକୁ ରଥ ସପ୍ତମୀ, ଅଚଳା ସପ୍ତମୀ ଆଦି ନାମରେ ନାମିତ କରାଯାଇଛି । ମତ୍ସ୍ୟ ପୁରାଣ ମତାନୁସାରେ ମାଘ ମାସସ୍ୟ ସପ୍ତମ୍ୟା ମୁଦୟତେ ଚ ଭାସ୍କରେ ବିଧିମତ୍ତୁ ତିଳସ୍ନାନଂ ମହାପାତକ ନାଶନମ୍ । ସୂର୍ଯ୍ୟ ଉଦୟ ସମୟରେ ସ୍ନାନ କରି ସୂର୍ଯ୍ୟଙ୍କୁ ଅର୍ଘ୍ୟ ପ୍ରଦାନ କଲେ ଆୟୁ, ଆରୋଗ୍ୟ ଏବଂ ଧନବୃଦ୍ଧି ହୋଇଥାଏ ।

ପବିତ୍ର ଚନ୍ଦ୍ରଭାଗା ତୀର୍ଥରେ ମାଘ ସପ୍ତମୀ ଦିନ ଦେଶ ବିଦେଶରୁ ବହୁ ଶ୍ରଦ୍ଧାଳୁ ଭକ୍ତ ସ୍ନାନ ନିମନ୍ତେ ଆସି ଉପସ୍ଥିତ ହୋଇଥାନ୍ତି । ଏକ ପକ୍ଷରେ ପବିତ୍ର ତୀର୍ଥ, ପବିତ୍ର ଦିନ ଓ ଅନ୍ୟ ପକ୍ଷରେ ମହୋଦଧିରେ ପ୍ରାତଃକାଳୀନ ସୂର୍ଯ୍ୟୋଦୟର ଦୃଶ୍ୟ ଅତ୍ୟନ୍ତ ଉପଭୋଗ୍ୟ । ସ୍ନାନ ସୂର୍ଯ୍ୟ ଦର୍ଶନ ଏହି କ୍ଷେତ୍ରର ବିଶେଷତ୍ୱ। ତୀର୍ଥରେ ସ୍ନାନ କିପରି କରାଯିବା ଉଚିତ ସେ ସମ୍ପର୍କରେ ଆମ ଶାସ୍ତ୍ରରେ କି ପ୍ରକାର ବିଧି ବିଧାନ ଅଛି ଆସନ୍ତୁ ତାହା ଦେଖିବା ।

ମଣିଷ ଜୀବନରେ ସ୍ନାନର ମହତ୍ୱ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । ସୁସ୍ଥ ଜୀବନ, ଦେବପୂଜା, ଯଜ୍ଞ, ଦାନ, ଧର୍ମ ଆଦି ପବିତ୍ର କାର୍ଯ୍ୟ କରିବା ପାଇଁ ଶରୀରର ପବିତ୍ରତା ନିମନ୍ତେ ସ୍ନାନ ଅନିବାର୍ଯ୍ୟ ଅଟେ । କାରଣ ନବଛିଦ୍ର ଯୁକ୍ତ ଅତ୍ୟନ୍ତ ମଳିନ ଶରୀରରୁ ଦିବାରାତ୍ର ମଳ ବାହାରି ଚାଲିଯାଏ । ଏଣୁ ପ୍ରାତଃସ୍ନାନ କରିବା ଦ୍ୱାରା ଶରୀର ପବିତ୍ର ଓ ନିର୍ମଳ ହୋଇଥାଏ ।

ପ୍ରାତଃ ସ୍ନାନେନ ପୂୟନ୍ତେ ସର୍ବପାପାନ୍ନ ସଂଶୟଃ
ନହିସ୍ନାନଂ ବିନା ପୁଂସାଂ ପ୍ରାଶସ୍ତ୍ୟଂ କର୍ମସୁ ସ୍ମୃତମ୍

(ଲଘୁ ବ୍ୟାସ୧/୭)

ପ୍ରାତଃକାଳ ସ୍ନାନ କରିବା ଦ୍ୱାରା ଅଲକ୍ଷ୍ମୀ, ଦୌର୍ଭାଗ୍ୟ, ଦୁଃସ୍ୱପ୍ନ, ଆଳସ୍ୟ କୁଚିନ୍ତା ଏବଂ ପାପ ବିନାଶ ଘଟିଥାଏ । ବଳ, ତେଜ, ଓଜ, କାନ୍ତି ବଢିବା ସହିତ ମନରେ ଶାନ୍ତି ଓ ପ୍ରସନ୍ନତା ଆସିଥାଏ ଏବଂ ପବିତ୍ର ଭାବଜାତ ହୋଇଥାଏ । ଆର୍ୟୁବେଦ ଶାସ୍ତ୍ରରେ ମନୁ, ପରାଶର ଆଦିଙ୍କ ସ୍ମୃତି ଶାସ୍ତ୍ରରେ ସ୍ନାନର ମହତ୍ୱ ବର୍ଣ୍ଣିତ । ସ୍ନାନ କରିବା ପରେ ଅସମର୍ଥ, ରୋଗୀ ଆଦି ଓଦାବସ୍ତ୍ରରେ ଶରୀରକୁ ଭଲଭାବରେ ପୋଛିବା ଦ୍ୱାରା ଶରୀର ନିର୍ମଳ ହୋଇଥାଏ । ମହର୍ଷି ପରାଶରଙ୍କ ମତରେ ସ୍ନାନ ସାତ ପ୍ରକାରର:

୧. ମନ୍ତ୍ରଂ ପାର୍ଥିବ ଆଗ୍ନେୟଂ ବାୟବ୍ୟଂ ଦିବ୍ୟମେବଚ୍ ବାରୁଣଂ ମାନସଂଚେତି ସ୍ନାନଂ ସପ୍ତବିଧଂ ସ୍ମୃତମ୍ । ଯଥା– ମନ୍ତ୍ର, ପାର୍ଥିବ, ଆଗ୍ନେୟ, ବାୟବ୍ୟ, ଦିବ୍ୟ ବାରୁଣ ଓ ମାନସ । ମନ୍ତ୍ର ପାଠ ପୂର୍ବକ ମସ୍ତକରେ ଜଳ ସେଚନ କରିବାକୁ ମନ୍ତ୍ରସ୍ନାନ କହନ୍ତି ।

୨. ପାର୍ଥିବ ସ୍ନାନ– ଶରୀରରେ ମାଟିଚୂର୍ଣ୍ଣ ବୋଳି ସ୍ନାନ କରିବାକୁ ପାର୍ଥିବ ସ୍ନାନ କହନ୍ତି ।

୩. ଆଗ୍ନେୟ ସ୍ନାନ– ଦେହରେ ପାଉଁସ ବା ଭସ୍ମ ଲଗାଇ ସ୍ନାନ କରିବାକୁ ଆଗ୍ନେୟ ସ୍ନାନ କହନ୍ତି ।

୪. ବାୟବ୍ୟସ୍ନାନ– ଗୋରୁ ଯାଉଥିବା ସମୟରେ ଗୋରଜ ବା ଗୋଧୂଳି ଶରୀରରେ ପଡିଲେ ତାହାକୁ ବାୟବ୍ୟ ସ୍ନାନ କହନ୍ତି ।

୫. ଦିବ୍ୟସ୍ନାନ– ଖରା ପଡିଥିବା ଏବଂ ବୃଷ୍ଟି ହେଉଥିବା ବେଳେ ସ୍ନାନ କରିବାକୁ ଦିବ୍ୟ ସ୍ନାନ କହନ୍ତି ।

୬. ବାରୁଣିସ୍ନାନ– ନଦୀ, ସମୁଦ୍ର ଏବଂ ଝରଣା ଆଦିରେ କରାଯାଉଥିବା ସ୍ନାନକୁ ବାରୁଣି ସ୍ନାନ କହନ୍ତି ।

୭. ମାନସିକ ସ୍ନାନ– ମନ ମଧ୍ୟରେ ବିଷ୍ଣୁଙ୍କୁ ଧ୍ୟାନ କରି କରାଯାଉଥିବା ସ୍ନାନକୁ ମାନସିକ ସ୍ନାନ କହନ୍ତି ।

ପୁନଶ୍ଚ ସ୍ନାନ ତିନି ପ୍ରକାର ଅଟେ ।

୧. ନିତ୍ୟସ୍ନାନ– ପ୍ରାତଃକାଳରେ ଯେଉଁ ସ୍ନାନ କରାଯାଏ, ତାହାକୁ ନିତ୍ୟସ୍ନାନ କହନ୍ତି ।

୨. ନୈମିତ୍ତିକସ୍ନାନ– ଉଚ୍ଛିଷ୍ଟାଦି ସ୍ପର୍ଶ କଲେ ମୃତକ ଏବଂ ସୂତକରେ, ଚନ୍ଦ୍ର ଗ୍ରହଣ, ସୂର୍ଯ୍ୟପରାଗାଦିରେ ଯେଉଁ ସ୍ନାନ କରାଯାଏ, ତାହାକୁ ନୈମିତ୍ତିକ ସ୍ନାନ କହନ୍ତି ।

୩. କାମ୍ୟସ୍ନାନ– ଜ୍ୟୋତିଷ ଶାସ୍ତ୍ରାଦି ନିର୍ଣ୍ଣୟ ଦ୍ୱାରା ଯେଉଁ ପବିତ୍ର ତୀର୍ଥରେ ସ୍ନାନ କରାଯାଏ, ତାହାକୁ କାମ୍ୟସ୍ନାନ କହନ୍ତି ।

ତୀର୍ଥରେ ସ୍ନାନ ସମୟରେ ମଳମୂତ୍ର ତ୍ୟାଗ କରିବା, ଛେପ ଖଙ୍କାର ପକାଇବା, ଗାଧୋଇବା ବସ୍ତ୍ର ଚିପୁଡିବା, ନାଚିକୁଦି ପାଣି ଛିଟିକା ମାରିବା, ଅନ୍ୟମାନଙ୍କ ସ୍ନାନରେ ବାଧା ସୃଷ୍ଟି କରିବା ଅତ୍ୟନ୍ତ ହାନିକାରକ । ସେହିପରି ପରଚର୍ଚ୍ଚା କରିବା, ଚୋରି ନାରୀ କରିବା, ନିଶା ସେବନ କରିବା, ହିଂସା, ଦ୍ୱେଷ, ଲୋଭାଦି କରିବା ଦ୍ୱାରା କେବଳ ପାପ ହିଁ ଅର୍ଜନ ହୋଇଥାଏ । ନାରଦ ପୁରାଣରେ କୁହାଯାଇଛି– ଯସ୍ୟହସ୍ତୌ ଚ ପାଦୌଚ ମନ ଶ୍ଚୈବ ସୁସଂଯତମ୍– ବିଦ୍ୟାତପଶ୍ଚ କୀର୍ତ୍ତିଶ୍ଚ ସତୀର୍ଥଫଳମଶ୍ନୁତେ । ଯାହାର ହାତ ପାଦ ଓ ମନ ସଂଯମିତା ଯିଏ ହାତଦ୍ୱାରା ସେବା କରେ, ପାଦଦ୍ୱାରା ଭଗବଦ ମନ୍ଦିର ଓ ତୀର୍ଥ ଯାତ୍ରାକରେ, ମନ ଭଗବାନଙ୍କ ସ୍ମରଣରେ ଲଗାଏ, ସେହି ଶୁଦ୍ଧାତ୍ମା ଭଗବାନଙ୍କ କୃପାରୁ ତପ, ବିଦ୍ୟା କୀର୍ତ୍ତି ସ୍ୱରୂପ ତୀର୍ଥଫଳ ଲାଭ କରିଥାଏ । ମାଘ ସପ୍ତମୀ ଦିନ ଏହି ପବିତ୍ର କ୍ଷେତ୍ରର ଅନ୍ୟ ବିଶେଷତ୍ୱ ହେଉଛି– ସୂର୍ଯ୍ୟ ଦର୍ଶନ ଏବଂ ସୂର୍ଯ୍ୟ ଉପାସନା । ଯେଉଁ ସୂର୍ଯ୍ୟଙ୍କ ପାଇଁ ଏ କ୍ଷେତ୍ରର ମହିମା ବିଶ୍ୱବ୍ୟାପକ ହୋଇପାରିଛି, ସେହି ଦେବତାଙ୍କ ବିଶେଷତ୍ୱ କ'ଣ ? ଆସନ୍ତୁ ଦେଖିବା ବ୍ୟାକରଣ ନିୟମ ଅନୁସାରେ ସୃଗତୌ ଅଥବା ଷୂପ୍ରେରଣରେ କ୍ୟପ୍ ପ୍ରତ୍ୟୟ ହେବାଦ୍ୱାରା ସୂର୍ଯ୍ୟଶବ୍ଦ ନିଷ୍ପନ୍ନ ହୋଇଛି । 'ସରତି ଆକାଶେଇତି ସୂର୍ଯ୍ୟଃ' ଯିଏ ଆକାଶରେ ନିରନ୍ତର ଭ୍ରମଣ କରନ୍ତି ଅଥବା 'ସୁବତି କର୍ମଣି ଲୋକଂ ପ୍ରେରୟତି' ଯିଏ ଉଦୟ ମାତ୍ରେ ଅଖିଳ ବିଶ୍ୱକୁ ନିଜ ନିଜ କର୍ମରେ ପ୍ରବୃତ୍ତ

କରାନ୍ତି, ସେହିଁ ସୂର୍ଯ୍ୟ ଅଟନ୍ତି । ଅଖିଳ ବିଶ୍ୱକୁ ପ୍ରକାଶ ଦାନକାରୀ, ଅନନ୍ତ ତେଜର ଭଣ୍ଡାର ହିଁ ସୂର୍ଯ୍ୟ ଶବ୍ଦର ବାଚ୍ୟାର୍ଥ ଅଟେ । ଋଗ୍‌ବେଦ ସଂ ୧/୧୧୫/୧ ସୂତ୍ରାନୁସାରେ ସୂର୍ଯ୍ୟ ଆତ୍ମା ଜଗତ୍ ସ୍ତସ୍ଥୁଷଶ୍ଚ– ଭଗବାନ୍ ସୂର୍ଯ୍ୟ ସମସ୍ତ ସ୍ଥାବର ଜଙ୍ଗମାତ୍ମକ ବିଶ୍ୱର ଅନ୍ତରାତ୍ମା ଅଟନ୍ତି । ସମସ୍ତ ବେଦ, ସ୍ମୃତି, ପୁରାଣ, ରାମାୟଣ ଓ ମହାଭାରତ ଆଦି ସମସ୍ତ ଗ୍ରନ୍ଥ ସୂର୍ଯ୍ୟଙ୍କ ମହିମାରେ ପରିପ୍ଲୁତା । ବିଜୟ, ସ୍ୱାସ୍ଥ୍ୟ, ଧନ, ପୁତ୍ର, ଲାଭ, କୃଷ୍ଟ ଓ ନେତ୍ର ରୋଗ ନିରାକରଣ ପାଇଁ ଉପାସନା ନିମନ୍ତେ ବିଭିନ୍ନ ପ୍ରଭାବଶାଳୀ ସ୍ତୋତ୍ର ଓ ମନ୍ତ୍ର ପୁରାଣ ବେଦରେ ଉପଲବ୍ଧ । ଏ ସମସ୍ତ ଦେଖିଲେ ବାସ୍ତବରେ ସୂର୍ଯ୍ୟଙ୍କର ମହିମା ଓ ପରିସୀମା କଳି ହୁଏ ନାହିଁ । ଭୁବନଭାସ୍କର ସୂର୍ଯ୍ୟନାରାୟଣ ପ୍ରତ୍ୟକ୍ଷ ଦେବତା ଦିବ୍ୟ ପ୍ରକାଶ ସ୍ୱରୂପ ଅଟନ୍ତି । ଛାନ୍ଦୋପ୍ୟୋନିଷଦ ୩/୩/୧ ଅନୁସାରେ ଆଦିତ୍ୟୋ ବ୍ରହ୍ମେତି– ଆଦିତ୍ୟ ହିଁ ବ୍ରହ୍ମ ଅଟନ୍ତି । ଦେବମାତା ଅଦିତିଙ୍କ ପୁତ୍ର ହୋଇଥିବାରୁ ସୂର୍ଯ୍ୟଙ୍କୁ ଆଦିତ୍ୟ କୁହାଯାଏ । ଭଗବାନ ସୂର୍ଯ୍ୟ ପ୍ରତ୍ୟହ ପ୍ରାତଃ ଉଦୟ ହୋଇ ସନ୍ଧ୍ୟାରେ ଅସ୍ତାଚଳ ପର୍ବତରେ ଅସ୍ତ ହୋଇଯାଆନ୍ତି । ଋଗ୍‌ବେଦ ୧/୩୫/୨ ଅନୁସାରେ ଦେବୋଯାତିଭୁବନାନି ପଶ୍ୟନ । ଅନ୍ୟ ଦେବତାମାନେ ଆବଶ୍ୟକତା ଅନୁସାରେ ପ୍ରକଟ ହୁଅନ୍ତି କାର୍ଯ୍ୟ କରି ଚାଲିଯାଆନ୍ତି । କିନ୍ତୁ ଭଗବାନ ସୂର୍ଯ୍ୟଦେବ ନିତ୍ୟ ଅବତରିତ ହୋଇ ଜୀବମାନଙ୍କର ଶୁଭାଶୁଭ କର୍ମର ସାକ୍ଷୀ ହୋଇ ସମସ୍ତ ଭୁବନକୁ ଦେଖି ରହିଥାନ୍ତି । ସୂର୍ଯ ରଶ୍ମିରେ ପ୍ରାଣଶକ୍ତି ଜୀବନୀଶକ୍ତି ରହିଥିବାରୁ ତାହାଦ୍ୱାରା ଚରାଚର ଜଗତର ସତ୍ତା ନିର୍ମିତ ହୋଇରହି ଯଦ୍ୟପି ସୂର୍ଯ୍ୟ ନିତ୍ୟ ଉଦୟ ହୋଇ ପ୍ରକାଶ ପ୍ରଦାନ ନକରନ୍ତି ଏ ସୃଷ୍ଟି ଅନ୍ଧକାରରେ ପରିପୂର୍ଣ୍ଣ ହୋଇଯାଆନ୍ତା । ସେଥିପାଇଁ ଇଂରାଜୀରେ ପ୍ରବାଦ ଅଛି Light is life darkness is death. ପରିଣାମ ଏହାହିଁ ହୁଅନ୍ତା । ଆରୋଗ୍ୟ ଭାସ୍କରାଦିଚ୍ଛେତ୍ ଆରୋଗ୍ୟ ପାଇଁ ସୂର୍ଯ୍ୟଙ୍କୁ ଚିନ୍ତା କରାଯାଇଥାଏ । ବାସ୍ତବରେ ସୂର୍ଯ୍ୟ ଆରୋଗ୍ୟରେ ଅଧିଷ୍ଠାତା ଅଟନ୍ତି । ଭବିଷ୍ୟ ପୁରାଣରେ ସୂର୍ଯ୍ୟଙ୍କ ପରିବାର, ପରିଚ୍ଛଦ ଆଦି ସୁବିସ୍ତୃତ ବର୍ଣ୍ଣନା ରହିଛି । ସଂଜ୍ଞା ଓ ଛାୟା ଏ ଦୁହେଁ ସୂର୍ଯ୍ୟଦେବଙ୍କ ପତ୍ନୀ ଅଟନ୍ତି । ସଂଜ୍ଞାଙ୍କଠାରୁ ବୈବସ୍ୱତ ମନୁ ଯମ, ଯମୀ (ଯମୁନା) ଅଶ୍ୱିନୀ କୁମାର ଏବଂ ରୈବତ ତଥା ଛାୟାଙ୍କଠାରୁ ଶନି, ତପତୀ, ବିଷ୍ଟୁ ଏବଂ ସାବର୍ଣ୍ଣିମନୁ ଜାତ ହୋଇଛନ୍ତି । ଗରୁଡଙ୍କ ସାନଭାଇ ଅରୁଣ ସୂର୍ଯ୍ୟଙ୍କ ରଥର ସାରଥି ଅଟନ୍ତି । ସୂର୍ଯ୍ୟାଲୋକରେ ଭଗବାନ ସୂର୍ଯ୍ୟଙ୍କ ସମକ୍ଷ ଇନ୍ଦ୍ରାଦି ଦେବଗଣ ତଥା ଋଷିଗଣ ଉପସ୍ଥିତ ରହିଥାନ୍ତି । ସୂର୍ଯ୍ୟଙ୍କ ରଥ ସପ୍ତଚ୍ଛନ୍ଦୋମୟ ଅଶ୍ୱଦ୍ୱାରା ସଂଯୁକ୍ତ । ଭଗବାନ ସୂର୍ଯ୍ୟଙ୍କ ସହିତ ପିଙ୍ଗଳ ନାମକ ଲେଖକ ଦଣ୍ଡନାୟକ ନାମକ ଦୁଇପକ୍ଷୀ ତାଙ୍କ ଦ୍ୱାରରେ ଠିଆ ହୋଇଥାନ୍ତି । ଦିଣ୍ଡିତାଙ୍କର ମୁଖ ସେବକ ଅଟନ୍ତି । ପୁରାଣରେ ସୂର୍ଯ୍ୟଙ୍କ ରଥର ବର୍ଣ୍ଣନା ପ୍ରକାରଣରେ ବାରମାସରେ ବାର ଆଦିତ୍ୟ ନାମରେ ପରିଚିତ । ସେମାନେ ହେଲେ– ଧାତା, ଅର୍ଯ୍ୟମା, ମିତ୍ର, ବରୁଣ, ଇନ୍ଦ୍ର, ବିବସ୍ୱାନ, ପୂଷା, ପର୍ଜନ୍ୟ, ଅଂଶ, ଭଗ, ତ୍ୱାଷ୍ଟା ଓ ବିଷ୍ଣୁ । କାଶୀରେ ଦ୍ୱାଦଶ ଆଦିତ୍ୟ ପ୍ରତିଷ୍ଠିତ ଅଟନ୍ତି ।

ବୈଜ୍ଞାନିକମାନଙ୍କ ମତରେ ସୂର୍ଯ୍ୟ ସକଳ ଶକ୍ତିର ଆଧାର । ଏଥିରେ ନିହିତ ୬୬ ତତ୍ତ୍ୱର ଅନୁସନ୍ଧାନ କରାଯାଇ ଦେଖାଯାଇଛି ଯାହାକି ପୃଥିବୀ ପାଇଁ ପୋଷକ ଏବଂ ଜୀବନ ଦାୟକ ଅଟେ । ସୂର୍ଯ୍ୟଠାରୁ ଆମେ ଯେଉଁ ପ୍ରକାଶ ପାଉଅଛୁ ତାହାର ନ୍ୟୂନତମ କେନ୍ଦ୍ରୀୟ ଉଷ୍ଣତା ୬,୦୦୦ ଡିଗ୍ରୀ ଅଟେ । ପ୍ରତିକ୍ଷଣ ସୂର୍ଯ୍ୟ ସଂସାରକୁ ୩୩୭୯ ଗୁଣନ ୧୦ ମାନ ଶକ୍ତି ପ୍ରଦାନ କରୁଛନ୍ତି । ସେହି ଶକ୍ତି ପ୍ରକାଶ ଓ ଉଷ୍ଣତା ରୂପରେ ମିଳୁଛି । ବୈଜ୍ଞାନିକ ସୌରତଥ୍ୟ ଏହି ପ୍ରକାର–ସୂର୍ଯ୍ୟଙ୍କ ବ୍ୟାସ ୮,୮୦,୦୦୦ମାଇଲ ଯାହାକି ପୃଥିବୀଠାରୁ ସୂର୍ଯ୍ୟଙ୍କ ଭାର ପୃଥିବୀର ଭାରଠାରୁ ୩,୩୩,୦୦୦ ଗୁଣ ଅଧିକ । ସୂର୍ଯ୍ୟଙ୍କଠାରୁ ପୃଥିବୀର ଦୂରତା ୯କୋଟି ୭୦ ଲକ୍ଷ ମାଇଲ ସୂର୍ଯ୍ୟଙ୍କ କେନ୍ଦ୍ର ଭାଗର ତାପମାନ ପ୍ରାୟ ୧୬,୦୦,୦୦,୦୦୦ ସେଣ୍ଟିଗ୍ରେଡ୍ । ସୂର୍ଯ୍ୟଙ୍କ ପ୍ରକାଶ କିରଣର ବେଗ ପ୍ରତି ସେକେଣ୍ଡକୁ ୩,୦୦,୦୦୦ କିଲୋମିଟର । ସୂର୍ଯ୍ୟଙ୍କ କିରଣ ପୃଥିବୀରେ ପହଞ୍ଚିବା ପାଇଁ ୮ମିନିଟ୍ ୧୮ ସେକେଣ୍ଡ ସମୟ ଲାଗେ । ସୂର୍ଯ୍ୟଙ୍କ ପ୍ରକାଶ ଏକ ବର୍ଷରେ ୯୪,୬୩,୦୦,୦୦,୦୦୦ କିଲୋମିଟର ସୂର୍ଯ୍ୟଙ୍କ ଆୟୁ ପ୍ରାୟ ୩କୋଟି ବର୍ଷ । ଦେଶ ବିଦେଶର ବୈଜ୍ଞାନିକମାନେ ଗବେଷଣା କରି ବହୁତ ତଥ୍ୟ ଲୋକଲୋଚନକୁ ଆଣି ପାରିଛନ୍ତି । ସୂର୍ଯ୍ୟ ମାନବୀୟ ଜୀବନ ପ୍ରଜ୍ଞା ଏବଂ ବିଜ୍ଞାନ ଆଦିର ଉତ୍ସ । ସୂର୍ଯ୍ୟଙ୍କଠାରୁ ଏ ବ୍ରହ୍ମାଣ୍ଡ ଉତ୍ସର୍ଗିତ ହୋଇଛି ।

ଅନନ୍ତ ଶକ୍ତିର ଆଧାର ସୂର୍ଯ୍ୟଙ୍କୁ ନେଇ ବୈଜ୍ଞାନିକମାନେ ଶକ୍ତି ସାହାଯ୍ୟରେ ଆଲୋକ ଜଳାଇବା, ପାଣି ଗରମ କରିବା ଖାଦ୍ୟପଦାର୍ଥ ରାନ୍ଧିବା ଆଦି ବହୁ କାର୍ଯ୍ୟ କରୁଛନ୍ତି । ଆୟୁର୍ବେଦ, କ୍ରୋମୋପାଥି ଆଦିର ସୂର୍ଯ୍ୟସ୍ନାନ, ରଙ୍ଗ ଚିକିତ୍ସା ଦ୍ୱାରା ହୃଦୟରୋଗ, କାମଳ ରୋଗ, ରକ୍ତ ଚାପ, କୁଷ୍ଠ ରୋଗ ଆଦି ଆରୋଗ୍ୟ ହୋଇପାରୁଛନ୍ତି । ବୈଜ୍ଞାନିକ ନିୟୁଟନ୍‌ଙ୍କ ସପ୍ତରଙ୍ଗ ଅନୁସାରେ ଇଣ୍ଡିଗୋ, ବ୍ରାଉନ୍ ଗ୍ରୀନ୍, ୟେଲୋ, ଅରେଞ୍ଜ ଏବଂ ରେଡ୍ ଆଦି ଦ୍ୱାରା ରଙ୍ଗ ଚିକିତ୍ସା ମାଧ୍ୟମରେ ବୋତଲରେ ପାଣିରଖି ସୂର୍ଯ୍ୟକିରଣରେ ରଖି ରୋଗୀର ବ୍ୟବହାରରେ ଲଗାଯାଏ ।

ଏହାଦ୍ୱାରା ବିଭିନ୍ନ ପ୍ରକାର ରୋଗର ଚିକିତ୍ସା କରାଯାଇଥାଏ । ଚିକିତ୍ସା ପ୍ରଣାଳୀ ହେଲା ସୂର୍ଯ୍ୟସ୍ନାନ । ସୂର୍ଯ୍ୟତାପ ସ୍ୱେଦକୁ ବଢାଇ ସମସ୍ତ ରୋଗକୁ ଦୂର କରେ, ବଳ ତଥା ଉତ୍ସାହ ଦେଇଥାଏ । ଏହାଦ୍ୱାରା ଯାଦୁ, କୁଷ୍ଠ, କାମଳ, ଶୋଥ ଜ୍ୱର ଅତିସାର କଫ, ବାତ ଏବଂ ପିତ୍ତ ଆଦି ତ୍ରିଦୋଷରୁ ଜାତ ସମସ୍ତ ରୋଗଦୂର ହୋଇଥାଏ । ସୂର୍ଯ୍ୟଙ୍କ ଯେଉଁ ପ୍ରକାର ରୋଗ ନାଶକ ଶକ୍ତି ଅଛି ପୃଥିବୀର ଅନ୍ୟକୌଣସି ପଦାର୍ଥରେ ତାହା ନାହିଁ । ଚିକିତ୍ସକଗଣ ରୋଗୀକୁ ପ୍ରାତଃ ଭ୍ରମଣ ସୂର୍ଯ୍ୟରଶ୍ମି ସେବନ ପାଇଁ ପରାମର୍ଶ ଦେଇଥାନ୍ତି । ସୂର୍ଯ୍ୟଙ୍କ କିରଣରୁ ଖାଦ୍ୟପ୍ରାଣ ଭିଟାମିନ ଡି ମିଳିଥାଏ । ଆମର ସର୍ବମଙ୍ଗଳକାମୀ, ଦୀନବତ୍ସଳ ପରମ ବୈଜ୍ଞାନିକ ଋଷିମୁନିମାନଙ୍କ ଚାରିକାଳୀନ ଗବେଷଣା, ମନନ, ଚିନ୍ତନ ବାସ୍ତବରେ ଅତ୍ୟନ୍ତ ଉପାଦେୟ । ସମସ୍ତ ଶକ୍ତିର ଅଧିକାରୀ ସର୍ବଜ୍ଞ, ସର୍ବଦ୍ରଷ୍ଟା ସର୍ବେଶ୍ୱର, ନିଖିଳାନ୍ତରାତ୍ମା ଭଗବାନ ଭୁବନଭାସ୍କର ସୂର୍ଯ୍ୟଦେବଙ୍କ ମହିମା ଅସୀମ । ସେହି କାରୁଣିକ ସୂର୍ଯ୍ୟଦେବ ଦ୍ରୌପଦୀଙ୍କୁ ଅକ୍ଷୟପାତ୍ର ଦାନ କରି ଏବଂ ହନୁମାନଙ୍କର ଗୁରୁ ହୋଇ ଜଗତର ଯେଉଁ ଉପକାର କରିଛନ୍ତି, ତାହା ଅବର୍ଣ୍ଣନୀୟ । ଗ୍ରହ ରୂପରେ ପ୍ରତିଷ୍ଠିତ ହୋଇ ମଧ୍ୟ ସେ ପ୍ରତ୍ୟକ୍ଷ ଦେବତା ରୂପେ ପ୍ରତ୍ୟହ ଦେଖା ଦେଇଥାନ୍ତି । ସୂର୍ଯ୍ୟ ଦର୍ଶନ, ସୂର୍ଯ୍ୟାର୍ଘ୍ୟ ପ୍ରଦାନ, ସୂର୍ଯ୍ୟ ନମସ୍କାର, ସୂର୍ଯ୍ୟ ଉପାସନା ଦ୍ୱାରା ସେ ସନ୍ତୁଷ୍ଟ ହୋଇ ଭକ୍ତ ଉପରେ କୃପା କରିଥାନ୍ତି । କୋଣାର୍କର ଚନ୍ଦ୍ରଭାଗା ନିକଟରେ ମାଘସପ୍ତମୀ ତିଥିରେ ତୀର୍ଥସ୍ନାନ ସୂର୍ଯ୍ୟଦର୍ଶନ ଜନ୍ମଜନ୍ମାନ୍ତରର ପାପକ୍ଷୟ ତଥା ପୁଣ୍ୟଦାୟକ ଅଟେ ।

ଏହି ପବିତ୍ର ମାଘ ସପ୍ତମୀ ସ୍ନାନ ଓ ସୂର୍ଯ୍ୟଦର୍ଶନ ପାଇଁ ଦେଶ ବିଦେଶରୁ ଅସଂଖ୍ୟ ଯାତ୍ରୀ ଆସୁଥିବାରୁ ଗମନାଗମନ ରହିବା, ଖାଇବା, ତଥା ଶାନ୍ତି ଶୃଙ୍ଖଳା ପାଇଁ ସରକାରଙ୍କ ପର୍ଯ୍ୟଟନ ବିଭାଗ, ସୂଚନା ଓ ଲୋକସମ୍ପର୍କ ବିଭାଗ, ସ୍ୱାସ୍ଥ୍ୟ ବିଭାଗ ପକ୍ଷରୁ ନାନା ପ୍ରକାରର ବ୍ୟବସ୍ଥା କରାଯାଇଥାଏ । ଶାନ୍ତି ଶୃଙ୍ଖଳା ରକ୍ଷା ପାଇଁ ପୋଲିସ ପକ୍ଷରୁ ବ୍ୟାପକ ସୁରକ୍ଷା ବ୍ୟବସ୍ଥା କରାଯାଇଥାଏ । ସେହି ନିଖିଳାନ୍ତରାତ୍ମା ସୂର୍ଯ୍ୟଙ୍କର ପୂଜା ଆରାଧନା ସେଥିପାଇଁ ଯୁଗଯୁଗରୁ ପ୍ରଚଳିତ ।

ଗୁରୁକୃପା ଭବନ
କଳିଙ୍ଗନଗର–୭, ଭୁବନେଶ୍ୱର

❖ ❖ ❖

# ରାଜ୍ୟର ୧୬୫ ଜଣ କ୍ରୀଡ଼ା ବୃତ୍ତି ପାଇଁ ମନୋନୀତ

ରାଜ୍ୟ ସରକାରଙ୍କ କ୍ରୀଡା ଓ ଯୁବସେବା ବିଭାଗ କ୍ରୀଡା ପ୍ରତିଭାମାନଙ୍କୁ କ୍ରୀଡା ବୃତ୍ତି ପ୍ରଦାନ ପାଇଁ ତାଲିକା ଚୂଡାନ୍ତ କରିଛନ୍ତି । ୨୦୧୨–୧୩ ଆର୍ଥିକ ବର୍ଷ ପାଇଁ ମହାବିଦ୍ୟାଳୟ ସ୍ତରରୁ ୯୦ଜଣ ଛାତ୍ରଛାତ୍ରୀ ଏବଂ ଉଚ୍ଚ ବିଦ୍ୟାଳୟ ସ୍ତରର ୭୫ଜଣ ଛାତ୍ରଛାତ୍ରୀଙ୍କୁ କ୍ରୀଡା ବୃତ୍ତି ପାଇବାକୁ ମନୋନୀତ କରିଛନ୍ତି । ମହାବିଦ୍ୟାଳୟ ସ୍ତରର ଛାତ୍ରଛାତ୍ରୀ ପ୍ରତ୍ୟେକ ୩ ହଜାର ଏବଂ ବିଦ୍ୟାଳୟ ସ୍ତରର ଛାତ୍ରଛାତ୍ରୀ ପ୍ରତ୍ୟେକ ୨ ହଜାର ଲେଖାଏଁ ଏ ବାବଦକୁ ପାଇବେ । ସର୍ବମୋଟ ୩୭ଟି କ୍ରୀଡା ବର୍ଗ ପାଇଁ ଗତବର୍ଷ ଜୁଲାଇ ମାସରେ ଏଥିନିମନ୍ତେ ନିର୍ଦ୍ଧାରିତ ଫର୍ମରେ ଆବେଦନ କରିବାକୁ ବିଜ୍ଞାପନ ମାଧ୍ୟମରେ ବିଭାଗ ସୂଚିତ କରିଥିଲା । ଏଥିରେ ମହାବିଦ୍ୟାଳୟ ସ୍ତରର ୨୪୨ ଏବଂ ହାଇସ୍କୁଲ ସ୍ତରରୁ ୨୬୪ଟି ଆବେଦନପତ୍ର ବିଭାଗ ନିକଟରେ ପହଞ୍ଚି ଥିଲା । ପ୍ରାପ୍ତ ଆବେଦନଗୁଡିକର ଏକ ଉଚ୍ଚସ୍ତରୀୟ କମିଟି ଦ୍ୱାରା ଯାଞ୍ଚ କରାଯାଇ ଏହି ଚୟନ କରାଯାଇଛି । ଏ ବାବଦକୁ ସରକାର ସର୍ବମୋଟ ୪ ଲକ୍ଷ ୨୦ ହଜାର ଟଙ୍କା ବୃତ୍ତି ପ୍ରଦାନ କରିବେ । ଏହି କ୍ରୀଡା ବୃତ୍ତି ଓଡ଼ିଶା କ୍ରୀଡା ପ୍ରତିଭା ବୃତ୍ତି ନିୟମ– ୨୦୦୪ ଅନୁଯାୟୀ ପ୍ରଦାନ କରାଯାଉଛି । ବିଶେଷ ଭାବେ ଗ୍ରାମାଞ୍ଚଳର କ୍ରୀଡା ପ୍ରତିଭାମାନେ ଏହି ବୃତ୍ତି ଅର୍ଥରୁ ତାଙ୍କ କ୍ରୀଡାର ବିକାଶ କରିବା ଦିଗରେ ବିନିଯୋଗ କରିବା ସହ ଆବଶ୍ୟକ କ୍ରୀଡା ଉପକରଣ, ଆନୁଷଙ୍ଗିକ କ୍ରୀଡା ସାଜ ସରଞ୍ଜାମ ଏବଂ ସୁଷମ ଖାଦ୍ୟ ପ୍ରଭୃତି ପାଇଁ ହେଉଥିବା ଖର୍ଚ୍ଚ ଭରଣା କରିପାରିବେ । ଏହା କ୍ରୀଡାବିତ୍‌ମାନଙ୍କୁ ମାନସିକ ଭାବେ ଉତ୍ସାହିତ କରି ପାରିବ ବୋଲି ବିଭାଗୀୟ ମନ୍ତ୍ରୀ ଶ୍ରୀ ରମେଶ ଚନ୍ଦ୍ର ମାଝୀ ପ୍ରକାଶ କରିଛନ୍ତି । ଏହି ଅର୍ଥ ତୁରନ୍ତ ମନୋନୀତ କ୍ରୀଡା ପ୍ରତିଭା ନିକଟକୁ ପ୍ରେରଣ କରିବା ପାଇଁ ସେ ନିର୍ଦ୍ଦେଶ ଦେଇଥିବା ପ୍ରକାଶ ।

# ଶରଣକୁଳସ୍ଥ ଲଡୁବାବାଙ୍କ ମହାଶିବରାତ୍ରି

**ଚକ୍ରଧର ଦାଶ**

ଆକୁମାରୀ ହିମାଚଳ ନଦୀ, ପର୍ବତ, ସାଗର, ସରୋବର, ବନ, ଗ୍ରାମ ଏପରିକି ସହରପର୍ଯ୍ୟନ୍ତ ସର୍ବତ୍ର ସେହି ସର୍ବବ୍ୟାପୀ, ସର୍ବଜ୍ଞ, ସର୍ବଲୋକ ମହେଶ୍ୱର ଶିବଙ୍କର ମନ୍ଦିର ଦୃଷ୍ଟିଗୋଚର ହୋଇଥାଏ । ବିଶେଷକରି ଧାର୍ମିକ ସ୍ଥଳ ପାଇଁ ପ୍ରାକୃତିକ ସୌନ୍ଦର୍ଯ୍ୟପୂର୍ଣ୍ଣ ପରିବେଶ ବିଶେଷ ମହତ୍ୱପୂର୍ଣ୍ଣ । ଆମ୍ଭର ବୈଜ୍ଞାନିକ ମୁନିଋଷିଗଣ ନିର୍ଜନ, ଶାନ୍ତ ଏବଂ ରମଣୀୟ ସ୍ଥାନକୁ ଧାର୍ମିକ ସ୍ଥଳ ପାଇଁ ନିର୍ଦ୍ଧାରଣ କରିଯାଇଛନ୍ତି, କେବଳ ଲୋକକଲ୍ୟାଣ ପାଇଁ । ଏହିସବୁ ମନୋରମ ଦୃଶ୍ୟ ସମ୍ବଳିତସ୍ଥାନ ମନର ଏକାଗ୍ରତା, ଆଧ୍ୟାତ୍ମିକ ଭାବର ଜାଗ୍ରତ, ମାନସିକ ଶାନ୍ତିର ସ୍ରୋତ ଏବଂ ସ୍ୱାସ୍ଥ୍ୟୋପଯୋଗୀ ହୋଇଥିବାରୁ ମଣିଷ ଏସବୁ ସ୍ଥାନରୁ ସହଜରେ ପବିତ୍ରତା, ଶାନ୍ତି ଏବଂ ଆନନ୍ଦ ଲାଭ କରିଥାଏ । ସମଗ୍ର ଭାରତବର୍ଷରେ ଅସଂଖ୍ୟ ଶିବ ମନ୍ଦିରକୁ ଦେଖିଲେ ଶିବଙ୍କର ମହିମା, ସ୍ୱରୂପ ଏବଂ ବୈଶିଷ୍ଟ୍ୟ ସହଜରେ ଜାଣିହୁଏ । ସେହିପରି ଏକ ପ୍ରସିଦ୍ଧ ଶିବ ମନ୍ଦିର ଆମ ନୟାଗଡ ଜିଲ୍ଲାର ଶରଣକୁଳ ଗ୍ରାମରେ ଭଣ୍ଡାର ପର୍ବତର ନାସୀରେ ପ୍ରକୃତିର ସୁରମ୍ୟ କୋଡରେ ପ୍ରତିଷ୍ଠିତ ଲଡୁବାବାଙ୍କ ପ୍ରସିଦ୍ଧ ଶିବମନ୍ଦିର । କୁସୁମୀ ନଦୀ କଳକଳ ନାଦରେ ପାଦଧୌତ କରି ଏକ ପାଖରେ ପ୍ରବାହିତ । ଅନ୍ୟ ପାଖରେ ସବୁଜ ଶ୍ୟାମଳିମା ବୃକ୍ଷରାଜିର ଦୃଶ୍ୟ ଯେପରି ଚିତ୍ତାକର୍ଷକ, ସେପରି ହୃଦଗ୍ରାହୀ ତଥା ଶାନ୍ତି ପ୍ରଦାୟକ । ଢେଙ୍କାନାଳର କପିଳାଶସ୍ଥ ଚନ୍ଦ୍ରଶେଖର ମନ୍ଦିର, ପୁରୀର ଲୋକନାଥ ମନ୍ଦିର, ଭୁବନେଶ୍ୱରର ଲିଙ୍ଗରାଜ ମନ୍ଦିର ପରି ଶରଣକୁଳସ୍ଥ ଲଡୁକେଶ୍ୱର ବା ଲଡୁବାବା ମନ୍ଦିର ପ୍ରଖ୍ୟାତ ଶୈବପୀଠ ରୂପେ ପରିଗଣିତ ।



ଉତ୍କଳୀୟ କାରୁକାର୍ଯ୍ୟ ବିମଣ୍ଡିତ ୭୦ଫୁଟ ବିଶିଷ୍ଟ ଏହି ଶିବମନ୍ଦିରଟି ଖ୍ରୀଷ୍ଟୀୟ ପଞ୍ଚଦଶ ଓ ଷୋଡଶ ଶତାବ୍ଦୀରେ ନିର୍ମିତ ହୋଇଥିବାର ପ୍ରମାଣ ମିଳେ । କୁସୁମୀ ନଦୀ କୂଳରେ ଭଣ୍ଡାର ପର୍ବତର ନାସୀରେ ଛତ୍ରାକାର ବିଶିଷ୍ଟ ଯେଉଁ ସ୍ୱୟମ୍ଭୁ ଲିଙ୍ଗ ପ୍ରତିଷ୍ଠିତ ସେ ହିଁ ଲଡୁକେଶ୍ୱର ବା ଲଡୁବାବା ନାମରେ ସୁପରିଚିତ । ଭୁବନେଶ୍ୱରସ୍ଥ ଲିଙ୍ଗରାଜଙ୍କ ପରି ଚେପ୍‌ଟାକାର ଆକୃତି ବିଶିଷ୍ଟ ହରି ଏବଂ ହର ହରିହର ନାମରେ ଆଖ୍ୟାୟିତ ।

ଲଡୁବାବାଙ୍କ ମନ୍ଦିର ପ୍ରତିଷ୍ଠା ମୂଳରେ କେତେକ କିମ୍ବଦନ୍ତୀ ରହିଛି । କେତେକ ମତବ୍ୟକ୍ତ କରନ୍ତି ଯେ, ପ୍ରବଳ ପ୍ରତାପୀ ବାଣାସୁରର ଏହା କୀର୍ତ୍ତି । ପୂର୍ବେ ଶରଣକୁଳ ଓ ରଣପୁରକୁ ନେଇ ଗଠିତ ଇଲାକାରେ ବାଣା ନାମକ ଦାନବରାଜ ରାଜତ୍ୱ କରୁଥିଲେ । ସେ ପରମ ଶୈବ ଉପାସକ ଥିବାରୁ ଶ୍ୱାପଦଶଙ୍କୁଳ ଘନ ଜଙ୍ଗଲ ପରିବେଷ୍ଟିତ ନିର୍ଜନ ସ୍ଥାନକୁ ଶିବ ଆରାଧନାର ଉପଯୁକ୍ତ ସ୍ଥଳ ମନେ କରି ଉକ୍ତ ବିଗ୍ରହକୁ ପ୍ରତିଷ୍ଠା କରିଥିଲା । ରଣପୁର ନିକଟରେ ଥିବା ବାଣପୁର ଏବଂ ଶରଣକୁଳ ନିକଟରେ ଥିବା ଅସୁରଢ଼ିପା ଗ୍ରାମକୁ ଅଙ୍ଗୁଳି ନିର୍ଦ୍ଦେଶ କରି ମନ୍ଦିର ସେବକମାନେ ଏହି କୀର୍ତ୍ତି ଦାନବରାଜ ବାଣାସୁରର ବୋଲି କହିଥାନ୍ତି ।

ଅନ୍ୟ ଏକ କିମ୍ବଦନ୍ତୀରୁ ଜଣାଯାଏ, କୁସୁମୀ ନଦୀର ଅପର ପାର୍ଶ୍ୱରେ ଜଣେ ଗଉଡ ପ୍ରତ୍ୟହ ଗାଇ ଚରାଏ । ସେଥିମଧ୍ୟରୁ

ଏକ କାଳିଗାଈ ପ୍ରତ୍ୟହ ଗୋଠରୁ ବାହାରି ନଈ ପାରହୋଇ ଶିବଲିଙ୍ଗକୁ ମଧ୍ୟ ସ୍ଥଳରେ ରଖି କ୍ଷୁରା ପ୍ରସାରଣ ପୂର୍ବକ ଲିଙ୍ଗ ଉପରେ କ୍ଷୀର ପ୍ରଦାନ କରେ । ଗୋଠରୁ ଗାଈଟି ଘରକୁ ଫେରିବା ପରେ କ୍ଷୀର ଦେଉ ନଥିଲା । ଗାଈଟିର ପ୍ରତ୍ୟହ ଏହି ପ୍ରକାର ଗତିବିଧିକୁ ଦେଖି ଗଉଡ ସନ୍ଦେହର ସହିତ ପ୍ରକୃତ ରହସ୍ୟ ଜାଣିବା ପାଇଁ ସୁଯୋଗ ଅପେକ୍ଷାରେ ରହିଥାଏ । ଦୈବାତ୍ ପ୍ରବଳ ବର୍ଷା ହେତୁ କୁସୁମୀ ନଦୀରେ ପ୍ରବଳ ବନ୍ୟା ହୋଇଥାଏ । ଏକ ନିର୍ଦ୍ଦିଷ୍ଟ ସମୟରେ ଗାଈଟି ପାର ହେବାପାଇଁ ନଦୀ ଭିତରକୁ ପଶିବା ସଂଗେ ସଂଗେ ଗଉଡ ତା ଲାଞ୍ଜ ଧରି ନଦୀ ପାର ହୋଇଗଲା । ଲୁଚିକରି ଗାଈଟିକୁ ଅନୁସରଣ କରି ଦେଖିଲା ଗାଈଟି ଗୋଟିଏ ପଥର ଉପରେ ଠିଆ ହୋଇଛି ଏବଂ ତାର ପହ୍ନାରୁ କ୍ଷୀର ବୋହି ଚାଲିଛି । ଏହା ଦେଖି ଗଉଡ କ୍ରୋଧାନ୍ୱିତ ହୋଇ ଯଷ୍ଟି ଉତ୍ତୋଳନ କରିବାରୁ ଗାଈଟି ଭୟଭୀତ ହୋଇ ଇତସ୍ତତଃ ପଳାୟନ କରିବାରୁ ଲିଙ୍ଗ ମଧ୍ୟରେ ଖୁରାପଡି ଯିବାରୁ ସେଥିରୁ ରକ୍ତ ବାହାରିବା ସଂଗେ ସଂଗେ ଖୁରାଚିହ୍ନ ସବୁଦିନ ପାଇଁ ରହିଗଲା । ଗଉଡ ଆଶ୍ଚର୍ଯ୍ୟ ହୋଇ ଗ୍ରାମକୁ ଯାଇ ଲୋକମାନଙ୍କୁ ସମସ୍ତ ଘଟଣା କହିଲା । ଲୋକମାନେ ଉକ୍ତ ଲିଙ୍ଗକୁ ଶ୍ରଦ୍ଧା, ଭକ୍ତି ଓ ବିଶ୍ୱାସର ସହିତ କ୍ରମଶଃ ଆରାଧନା କରିବାକୁ ଲାଗିଲେ । ରାଜାଙ୍କୁ ମଧ୍ୟ ସ୍ୱପ୍ନାଦେଶ ହେଲା । ରାଜା ଏଠାରେ ମନ୍ଦିର ନିର୍ମାଣ କଲେ । ଭକ୍ତମାନଙ୍କ ମନରେ ବିଶ୍ୱାସ ଜନ୍ମାଇବା ପାଇଁ ସେବକମାନେ ଏହି କିମ୍ବଦନ୍ତୀକୁ ବ୍ୟବହାର କରିଥାନ୍ତି । ଏଥିପାଇଁ ଏହା ଯେ ଉଦ୍ଦିଷ୍ଟ ଏଥିରେ ଅଣୁମାତ୍ର ସନ୍ଦେହର ପ୍ରଶ୍ନ ନାହିଁ ।

ଏହି ସୁପ୍ରସିଦ୍ଧ ଶୈବପୀଠର ପ୍ରଧାନ ଆରାଧ୍ୟ ଦେବତା ହେଉଛନ୍ତି ଲଡୁକେଶ୍ୱର ବା ଲଡୁ ବାବା । ଲଡୁବାବାଙ୍କ ମହିମା ଅପାର । ଯିଏ ଯେତେବେଳେ ଲଡୁବାବାଙ୍କ ଶରଣ ନେଇଛି ତାର ମନସ୍କାମନା ପୂରଣ ହୋଇଥିବାରୁ ଏ ଗ୍ରାମର ନାମ ସେଥିପାଇଁ ଶରଣକୁଳ ।

୭୦ଫୁଟ ଉଚ୍ଚତା ବିଶିଷ୍ଟ ନାନାଦି କାରୁକାର୍ଯ୍ୟରେ ମଣ୍ଡିତ ମନ୍ଦିର ମଧ୍ୟରେ ଲଡୁବାବା ସ୍ୱୟମ୍ଭୁ ଲିଙ୍ଗ ରୂପରେ ପ୍ରତିଷ୍ଠିତ । ଶିବଲିଙ୍ଗ ମଧ୍ୟସ୍ଥଳ ଦୁଇଭାଗରେ ବିଭକ୍ତ । ଉତ୍ତର ପାର୍ଶ୍ୱସ୍ଥ ଲିଙ୍ଗ ବିଷ୍ଣୁ(ହରି), ଦକ୍ଷିଣ ପାର୍ଶ୍ୱସ୍ଥ ଲିଙ୍ଗ ଶିବ(ହର)ରୂପରେ ପରିଶୋଭିତ । ଶିବଙ୍କ ମସ୍ତକରେ ଅର୍ଦ୍ଧଚନ୍ଦ୍ରଚିହ୍ନ ବିଦ୍ୟମାନ । ପଶ୍ଚିମ ପୂର୍ବ ପାର୍ଶ୍ୱରେ ଗାଈର ଖୁରାଚିହ୍ନ ଚନ୍ଦ୍ର ସୁସ୍ପଷ୍ଟ । ମନ୍ଦିରର ଚତୁଃପାର୍ଶ୍ୱରେ ପାର୍ଶ୍ୱ ଦେବତା ସ୍ୱରୂପ ଦକ୍ଷିଣରେ ଗଣେଶ ଓ ବାସୁଦେବ, ପଶ୍ଚିମରେ କାର୍ତ୍ତିକେୟ ଶୋଭା ପାଉଥିବା ବେଳେ ବେଢ଼ା ମଧ୍ୟରେ ନବଗ୍ରହ, ଜଗନ୍ନାଥ, ପାର୍ବତୀ, ସୂର୍ଯ୍ୟ, ବାବାବୈଦ୍ୟନାଥ, ଅନ୍ନପୂର୍ଣ୍ଣା, ରଘୁନାଥ ଓ ପଞ୍ଚମୁଖୀ ହନୁମାନ ଆଦି ବିଦ୍ୟମାନ । ସିଂହଦ୍ୱାର ବ୍ୟତୀତ ଉତ୍ତରଦ୍ୱାର ହାତୀ ଓ ଦକ୍ଷିଣଦ୍ୱାର ବୃଷଭଙ୍କ ଦ୍ୱାରା ପରିଶୋଭିତ । ଏଠାରେ ଶିବ ହରିହର ରୂପରେ ପରିଗଣିତ ହେଉଥିବାରୁ ଲିଙ୍ଗରାଜଙ୍କ ପରି ଏଠାରେ ଠାକୁରଙ୍କୁ ବିଷ୍ଣୁ ମନ୍ତ୍ରରେ ପୂଜା କରାଯାଇଥାଏ । ପ୍ରତ୍ୟହ ଠାକୁରଙ୍କ ନୀତି ଚଳାଇବା ପାଇଁ ମାଳି, ବ୍ରାହ୍ମଣ, କାହାଳିଆ, ପ୍ରତିହାରୀ, ବାରିକ, ସୁଆର ଆଦି ବହୁ ସେବକ କାର୍ଯ୍ୟରତ । ବର୍ଷକ ମଧ୍ୟରେ ଏଠାରେ ବହୁ ପର୍ବପର୍ବାଣି ପାଳିତ ହୋଇଥାଏ। ସେଥିମଧ୍ୟରୁ ଯାତ୍ରାଙ୍କି ପ୍ରଧାନ । ବୈଶାଖ, ଆଷାଢ଼, ଶ୍ରାବଣ ଓ ମାର୍ଗଶିର ମାସରେ ତାହା ଅନୁଷ୍ଠିତ ହୋଇଥାଏ । ଏହାବ୍ୟତୀତ ଚନ୍ଦନ ଯାତ୍ରା, ଶୀତଳଷଷ୍ଠୀ ଓ ଅଶୋକାଷ୍ଟମୀ ଅନ୍ୟତମ ।

ଫାଲଗୁନ ମାସରେ କୃଷ୍ଣ ଚତୁର୍ଦ୍ଦଶୀ ତିଥିରେ ଲଡୁବାବାଙ୍କର ମହାଶିବରାତ୍ରି ବା ଜାଗର ଯାତ୍ରା ମହାସମାରୋହରେ ପାଳିତ ହୋଇଥାଏ । ଆଖପାଖ ଗ୍ରାମ ତଥା ବହୁ ଦୂର ଦୂରାନ୍ତରୁ ଅଗଣିତ ଭକ୍ତ ମନସ୍କାମନା ପୂରଣ ପାଇଁ ଏଠାକୁ ଆସିଥାନ୍ତି । ଜାଗର ଯାତ୍ରା ଦିନ ପ୍ରଭୁଙ୍କୁ ପ୍ରସନ୍ନ କରିବା ପାଇଁ କେତେକ ଭକ୍ତ ନିଜର ଜିହ୍ୱା କାଟି ଦେଇଥାନ୍ତି । ଭଗବାନ ଶିବ ତାଙ୍କର ମନସ୍କାମନା ପୂରଣ କରିଥାନ୍ତି । ଏବେ କିନ୍ତୁ ଏ ବିଧାନକୁ ସରକାରଙ୍କ ପକ୍ଷରୁ ବାରଣ କରାଯାଇଛି । ଆସନ୍ତୁ ଦୃଷ୍ଟିପାତ କରିବା ଭଗବାନ ଶିବ ଏବଂ ତାଙ୍କ ସମ୍ବନ୍ଧିତ ରାତ୍ରି ମହାଶିବରାତ୍ରି ସମ୍ପର୍କରେ ।

ଭଗବାନ ଶିବଶଙ୍କରଙ୍କର ଉପାସନା ଅତି ପ୍ରାଚୀନ କାଳରୁ ପ୍ରଚଳିତ । ଆକୁମାରୀ ହିମାଚଳ ଶିବମନ୍ଦିରର ବହୁଳତାକୁ ଦେଖିଲେ ଶିବ ହିଁ ସର୍ବେଶ୍ୱର, ଦେବେଶ୍ୱର ଏବଂ ମହେଶ୍ୱର ବୋଲି ଜାଣିହୁଏ । ଭଗବାନ ଶିବ ଭାରତୀୟ ଧର୍ମ, ସଂସ୍କୃତି ଓ ଜୀବନରେ ବିରାଟ ସମନ୍ୱୟର ଦେବତା ରୂପେ ବିବେଚିତ । ପୁରାଣ ଓ ସ୍ମୃତିକାରଙ୍କ ମତରେ ଶେତେ ତିଷ୍ଠତି ସର୍ବଂ ଜଗତ୍ ଯସ୍ମିନ ସଃ ଶିବ ଶମ୍ଭୁଃ ବିକାର ରହିତଃ । ଯେଉଁଠି ଏ ସମସ୍ତ ଜଗତ୍ ଶୟନ କରେ ଏବଂ ଯିଏ ବିକାର ରହିତ ସେ ହିଁ ଶିବ, ଶମ୍ଭୁ ଅଟନ୍ତି । ଅଥବା ଯିଏ ଅମଙ୍ଗଳର ଦୂର କରନ୍ତି ସେ ହିଁ ସୁଖମୟ ମଙ୍ଗଳ ରୂପଧାରୀ ଶିବ, ଯିଏ ସର୍ବତ୍ର ଜଗତକୁ ନିଜ ଭିତରେ ଲୀନ କରିପାରନ୍ତି, ସେ ହିଁ କରୁଣାସାଗର ଭଗବାନ ଶିବ । ଶିବ ହିଁ ସର୍ବବ୍ୟାପୀ, ସର୍ବେଶ୍ୱର, ସର୍ବୋପରି, ସର୍ବରୂପ, ସର୍ବଜ୍ଞ, ସର୍ବାନ୍ତର୍ଯ୍ୟାମୀ, ସର୍ବମୟ, ସର୍ବସମର୍ଥ, ସର୍ବାଶ୍ରୟ, ଶକ୍ତିପତି, ନିତ୍ୟ, ଶୁଦ୍ଧ-ବୁଦ୍ଧ-ଜ୍ଞାନସ୍ୱରୂପ, ସତ୍ୟଂ-ଶିବଂ-ସୁନ୍ଦରମ୍ ଅଟନ୍ତି । ସେହି ନିର୍ଗୁଣ, ନିରାକାର, ସଗୁଣ,

ସାକାର, ନିରାମୟ ନିରୀହ, ପରାତ୍ପର, ପରମାନନ୍ଦମୟ, ପରବ୍ରହ୍ମ, ସର୍ବଶକ୍ତିମାନ ସର୍ବେଲୋକ ମହେଶ୍ୱର ଶିବଙ୍କର ଅନେକ ନାମ ରୂପ ରହିଛି ।

ଭଗବାନ ଶିବଙ୍କର ସ୍ୱରୂପ କର୍ପୂରବତ୍ ଗୌରବର୍ଣ୍ଣ । ନୀଳମଣି ପ୍ରବାଳ ସଦୃଶ ମନୋହର ନୀଳଲୋହିତ ଶରୀର । ଚାରି ହସ୍ତରେ ତ୍ରିଶୂଳ, କପାଳ, ପାଶ କାମନା ଆଦି ପରିଶୋଭିତ । ଅଙ୍ଗର ଅର୍ଦ୍ଧଭାଗ ଅମ୍ବିକା ସୁଶୋଭିତ । ମସ୍ତକରେ ଧୂମିଳ ଜଟାଜୁଟ । ବାମ ଭାଗରେ ଗଙ୍ଗାଦେବୀ ପ୍ରବହମାନା, ଏକନେତ୍ର କୃପାକଟାକ୍ଷ ପାଇଁ ଚଞ୍ଚଳ । ଅନ୍ୟ ନେତ୍ର ଶାନ୍ତ ଅର୍ଦ୍ଧନ୍ମୀଳିତ , ତୃତୀୟ ନେତ୍ର ଜ୍ଞାନନେତ୍ର ବା ବହିନେତ୍ର ଯାହାକି କାମଦହନ । ଅର୍ଦ୍ଧାଙ୍ଗରେ ବାଘାମ୍ବର, କଣ୍ଠରେ ଭୁଜଙ୍ଗ ପରିଶୋଭିତ, ବାହୁ ଓ କଣ୍ଠରେ ରୁଦ୍ରାକ୍ଷମାଳା, ଭସ୍ମଲେପିତ ଶରୀର । ଏହିପରି ପରମପ୍ରଭୁ ଅନ୍ତର୍ଯାମୀ ଭଗବାନ ଶିବଶଙ୍କରଙ୍କର ଅତି ମଙ୍ଗଳମୟ ସ୍ୱରୂପ ଅଟେ । ଜ୍ଞାନ, ବଳ ଏବଂ କ୍ରିୟା ଶକ୍ତିରେ ଶିବଙ୍କ ସମାନ ଅନ୍ୟ କୌଣସି ତତ୍ତ୍ୱ ନାହିଁ । ଭଗବାନ ଶିବ ସବୁର ମୂଳାଧାର, ମୂଳକାରଣ, ରକ୍ଷକ, ପାଳକ, ନିୟନ୍ତା ଏବଂ ଈଶ୍ୱରଙ୍କର ଈଶ୍ୱର ହୋଇଥିବାରୁ ସବୁ ଦେବତାଙ୍କର ପରମ ଆରାଧ୍ୟ ଦେବ, ସମସ୍ତ ସ୍ୱାମୀଙ୍କର ସ୍ୱାମୀ ଅଟନ୍ତି, ବେଦର ପୁରୁଷସୂକ୍ତ, ରୂଦ୍ରସୂକ୍ତ, ଶତରୁଦ୍ରିୟ ଆଦି ଦ୍ୱାରା ଭଗବାନ ଶଙ୍କରଙ୍କର ସ୍ତୁତି କରାଯାଇଛି । କେବଳ ଋକ୍‌ବେଦରେ ୬୦–୭୦ ଋଚାରେ ଶିବଙ୍କ ନାମ କାମ ପ୍ରଭାବ ଏବଂ ସ୍ୱରୂପର ବର୍ଣ୍ଣନା ଦେଖିବାକୁ ମିଳେ ।

କୈବଲ୍ୟ, ତୈତେରୀୟ, ଶ୍ୱେତାଶ୍ୱତର ଏବଂ ନାରାୟଣାଦି ଉପନିଷଦ, ଅଶ୍ୱଳାୟନ ଆଦି ଗୃହସୂତ୍ର, ଶିବ, ବାମନ ସ୍କନ୍ଦ, ଲିଙ୍ଗ ପୁରାଣ, ରାମାୟଣ, ମହାଭାରତାଦି କୁମାର ସମ୍ଭବ ଆଦି ଗ୍ରନ୍ଥମାନଙ୍କରେ ଶିବଙ୍କ ଲୋକୋତ୍ତର ଗୁଣର ମହିମା ଗାନ କରାଯିବା ସହିତ ତାଙ୍କର ଅନେକ ଚରିତ୍ର, ଆଖ୍ୟାନ ଆଦିର ସ୍ପଷ୍ଟ ଚିତ୍ର ଅଙ୍କାଯାଇଛି ।

ଋକ୍‌ବେଦରେ ଶତରୁଦ୍ରିୟକୁ ରୂଦ୍ରସୂକ୍ତ କୁହାଯାଏ । ଏଥିରେ ଭଗବାନ ରୂଦ୍ରଙ୍କ ଭବ୍ୟାତିଭବ୍ୟ ବର୍ଣ୍ଣନା ରହିଛି। ପ୍ରଥମ ମନ୍ତ୍ରର ଆସ୍ୱାଦ ଏହିପରି 'ଓଁ ନମସ୍ତେ ରୂଦ୍ରମନ୍ୟବ ଉତୋ ତ ଇଷବେ ନମଃ । ବାହୁଭ୍ୟାମୁତ ତେ ନମଃ।।'

ହେ ରୂଦ୍ରଦେବ ! ଆପଣଙ୍କ କ୍ରୋଧକୁ ଆମର ନମସ୍କାର । ଆପଣଙ୍କ ବାଣକୁ ଆମର ନମସ୍କାର ଏବଂ ଆପଣଙ୍କର ବାହୁମାନଙ୍କୁ ଆମର ନମସ୍କାର ଅଟେ । ଭଗବାନ ଶିବଙ୍କର ରୂଦ୍ର ସ୍ୱରୂପ ଦୁଷ୍ଟନିଗ୍ରହଣ ନିମନ୍ତେ ଅଟେ । ରୂ= ଦୁଃଖମ୍, ଦ୍ରାବୟତି ଇତି ରୂଦ୍ରଃ । ରୂତ୍= ଜ୍ଞାନମ୍, ରାତି= ଦଦାତି ଇତି ରୂଦ୍ରଃ । ରୋଦୟତି ପାପିନଃ ଇତି ରୂଦ୍ରଃ । ତତ୍ତ୍ୱ ଜ୍ଞାନୀମାନେ ରୂଦ୍ର ଶବ୍ଦର ଏହିପ୍ରକାର ବ୍ୟାଖ୍ୟା କରିଯାଇଛନ୍ତି । ଅର୍ଥାତ୍ ଭଗବାନ ରୂଦ୍ର ଦୁଃଖନାଶକ, ପାପନାଶକ ଏବଂ ଜ୍ଞାନଦାତା ଅଟନ୍ତି । ରୂଦ୍ରସୂକ୍ତରେ ଭଗବାନ ରୂଦ୍ରଙ୍କର ବିବିଧ ସ୍ୱରୂପ ଏହିପରି–ଗିରୀଶ, ଅଧିବକ୍ତା, ସୁମଙ୍ଗଳ, ନୀଳଗ୍ରୀବ, ସହସ୍ରାକ୍ଷ, କପର୍ଦ୍ଦୀ ମିଢୁଷ୍ଟମ୍, ହରଣ୍ୟବାହୁ, ସେନାନୀ, ହରିକେଶ, ଅନ୍ନପତି, ଜଗତ୍‌ପତି, କ୍ଷେତ୍ରପତି, ବନପତି, ବୃକ୍ଷପତି, ଔଷଧୀପତି, ସତ୍ତ୍ୱ ପତି, ସ୍ନେହପତି, ଗିରିଚର, ସଭାପତି, ସ୍ୱପତି, ଗଣପତି, ବ୍ରାତପତି, ବିରୂପ, ବିଶ୍ୱରୂପ, ଭବ, ଶର୍ବ, ଶିତିକଣ୍ଠ, ଶତଧନ୍ୱା, ହ୍ରସ୍ୱ ବାମନ, ବୃହତ୍, ବୃଦ୍ଧ, ଜ୍ୟେଷ୍ଠ, କନିଷ୍ଠ, ଶ୍ଳୋକ୍ୟ, ଆଶୁଷେଣ, ଆଶୁରଥ, କବଚୀ, ଶ୍ରୁତସେନ, ସୁଧନ୍ୱା, ସୋମ, ଉଗ୍ର, ଭୀମ, ଶମ୍ଭୁ, ଶଙ୍କର, ଶିବ, ତୀର୍ଥ୍ୟ, ବ୍ରଜ୍ୟ, ନୀଳଲୋହିତ, ପିନାକଧାରୀ, ସହସ୍ରବାହୁ ତଥା ଈଶାନ ଇତ୍ୟାଦି । ଯେପରି ଶ୍ରୀମଦ୍ ଭାଗବତ ଗୀତାରେ ଭଗବାନଙ୍କ ବିଶ୍ୱରୂପ ଦର୍ଶନରେ ବର୍ଣ୍ଣନା ରହିଛି, ସେହିପରି ରୂଦ୍ରସୂକ୍ତରେ ରୂଦ୍ରସ୍ୱରୂପୀ ପରମେଶ୍ୱରଙ୍କୁ ବିଶ୍ୱରୂପ କୁହାଯାଇଛି ।

ବେଦ, ପୁରାଣ, ଉପନିଷଦ ଆଦି ଗ୍ରନ୍ଥରୁ ସ୍ପଷ୍ଟ ଅନୁମିତ ଯେ ଭଗବାନ ଶିବ ଅନାଦିକାଳୀନ ବୈଦିକ ଦେବତା ଅଟନ୍ତି ଏବଂ ସେ ଲିଙ୍ଗ ରୂପରେ ଦେବାଳୟମାନଙ୍କରେ ସନାତନ କାଳରୁ ପରିପୂଜିତ । ଲିଙ୍ଗର ଅର୍ଥ ଚିହ୍ନ ଅଟେ । 'ଆକୃତିର୍ଜାତି ଲିଙ୍ଗାଖ୍ୟା' ଅର୍ଥାତ୍ ଯେଉଁ ସଙ୍କେତରୁ ଚିହ୍ନି ହୁଏ, ତାହାକୁ ଲିଙ୍ଗ କହନ୍ତି । ଲିଙ୍ଗ ପୁରାଣ ୧/୩/୧ ଅନୁସାରେ ।

ଅଲିଙ୍ଗୋ ଲିଙ୍ଗମୂଳଂତୁ ଅବ୍ୟକ୍ତଂ ଲିଙ୍ଗମୁଚ୍ୟତେ
ଅଲିଙ୍ଗଃ ଶିବଇତ୍ୟୁକ୍ତୋ ଲିଙ୍ଗ ଶୈବମିତି ସ୍ମୃତମ୍ ।

ଅର୍ଥାତ୍ ପରମାତ୍ମା ଅଲିଙ୍ଗ ଅଟନ୍ତି । ସେହିପରି ପରମାତ୍ମା ଲିଙ୍ଗ ଅର୍ଥାତ୍ ପ୍ରକୃତିର ମୂଳ ଅଟନ୍ତି । ଲିଙ୍ଗର ଅର୍ଥ ଅଟେ ଅବ୍ୟକ୍ତ ଅର୍ଥାତ୍ ପ୍ରକୃତି । ଲିଙ୍ଗ ଶବ୍ଦର ବ୍ୟୁତ୍ପତ୍ତି ଲଭ୍ୟ ଅର୍ଥ ହେଲା– ଯିଏ ସମସ୍ତଙ୍କୁ ନିଜ ଭିତରେ ଲୀନ କରିଦିଏ କିମ୍ବା ବିଶ୍ୱର ସମସ୍ତ ପ୍ରାଣୀ–ପଦାର୍ଥର ଉଦ୍ଭାବକ ପରିଚାୟକ ଚିହ୍ନ ଅଥବା ସମ୍ପୂର୍ଣ୍ଣ ବିଶ୍ୱମୟ ପରମାତ୍ମା । ଶିବ ପୁରାଣରେ ଲିଙ୍ଗ ଶବ୍ଦର ବ୍ୟୁତ୍ପତ୍ତି କରି କୁହାଯାଇଛି–

ଲଙ୍ଗମର୍ଥଂ ହି ପୁରୁଷଂ ଶିବଂ ଗମୟତୀତ୍ୟଦଃ
ଶିବଶକ୍ତ୍ୟୋଶ୍ଚ ଚିହ୍ନସ୍ୟ ମେଳନଂ ଲିଙ୍ଗମୁଚ୍ୟତେ ।

(ଶିବପୁରାଣ–ବିଦ୍ୟେଶ୍ୱର ସଂହିତା)

ଅର୍ଥାତ୍ ଶିବଶକ୍ତିଙ୍କ ଚିହ୍ନର ସମ୍ମେଳନ ହିଁ ଲିଙ୍ଗ ଅଟେ । ଏହା ପରମାର୍ଥ ଶିବତତ୍ତ୍ୱର ଗମକ, ବୋଧକ ହେବାଦ୍ୱାରା ଲିଙ୍ଗ କୁହାଯାଏ । ଶିବ ପୁରାଣରେ ମଧ୍ୟ ଲେଖା ଯାଇଅଛି ଯେ ଏକମାତ୍ର ଶିବ ହିଁ ନିର୍ଗୁଣ, ନିରାକାର ହୋଇଥିବାରୁ ନିଷ୍କଳ ଅଟନ୍ତି । ଶେଷ ସମସ୍ତ ସଗୁଣ ବିଗ୍ରହ ଯୁକ୍ତ ହୋଇଥିବାରୁ ସେମାନଙ୍କୁ ସକଳ କହନ୍ତି । ନିଷ୍କଳ ହୋଇଥିବାରୁ ଶିବଙ୍କର ନିରାକାର ଲିଙ୍ଗ ହିଁ ପୂଜ୍ୟ ହୋଇଥାନ୍ତି । ଶିବ ପୁରାଣରେ ନିଷ୍କଳ ସ୍ତମ୍ଭ ରୂପରେ ବ୍ରହ୍ମା ବିଷ୍ଣୁଙ୍କ ବିବାଦ ଦୂର କରିବା ପାଇଁ ମାଘ କୃଷ୍ଣ ଚତୁର୍ଦ୍ଦଶୀ ଦିନ କୋଟି ସୂର୍ଯ୍ୟ ସମାନ ପରମ ତେଜମୟ ଶିବଲିଙ୍ଗଙ୍କ ପ୍ରାଦୁର୍ଭାବ ହୋଇଥିଲା । ସେହି ଶ୍ରୀ ଶିବଲିଙ୍ଗରୁ ସମସ୍ତ ବିଶ୍ୱର ଉତ୍ପତ୍ତି, ସ୍ଥିତି ଏବଂ ଶେଷରେ ସମସ୍ତଙ୍କର ସେଥିରେ ହିଁ ବିଲୀନ ହୋଇଥାଏ । ଦ୍ୱାଦଶ ଜ୍ୟୋତିର୍ଲିଙ୍ଗ, ବାଣଲିଙ୍ଗ, ସୟମ୍ଭୁଲିଙ୍ଗ ଆଦି ଭଗବାନ ଶିବଙ୍କର ଲିଙ୍ଗ ରୂପରେ ପରିପ୍ରକାଶର ଦ୍ୟୋତକ ଅଟନ୍ତି । ଗରୁଡ ପୁରାଣ ଅନୁସାରେ ଲିଙ୍ଗ ବିଭିନ୍ନ ପଦାର୍ଥରେ ନିର୍ମିତ ହୋଇଥାଏ । ପାରଦଲିଙ୍ଗ, ସ୍ଫଟିକ ଲିଙ୍ଗ, ଗନ୍ଧ ଲିଙ୍ଗ, ପୁଷ୍ପଲିଙ୍ଗ, ତାମ୍ର, ସ୍ୱର୍ଣ୍ଣ ଆଦି ଧାତୁ ଲିଙ୍ଗ ମଧ୍ୟ ନାନାଦି କାମନା ଅନୁସାରେ ପୂଜା କରାଯାଇଥାଏ ।

ଭଗବାନ ଶିବଙ୍କର ମହିମା ଯେପରି ପରିବାର ମଧ୍ୟ ସେପରି ଅଟନ୍ତି । ଏକାଦଶ ରୁଦ୍ର, ରୁଦ୍ରାଣୀ, ଚଉଷଠି ଯୋଗିନୀ, ଅଷ୍ଟମାତୃକ, ଭୈରବାଦି ତାଙ୍କର ସହଚର ତଥା ସହଚରୀ ତଥା ଅନେକ ରୁଦ୍ରଗଣ ଯାହାଙ୍କର ଅଧ୍ୟକ୍ଷ ବୀରଭଦ୍ର ତାଙ୍କ ସହିତ ରହିଛନ୍ତି । ମାତା ପାର୍ବତୀ, ପୁତ୍ର ଗଣେଶ ଏବଂ ତାଙ୍କର ପତ୍ନୀ ସିଦ୍ଧି, ବୁଦ୍ଧି । ସିଦ୍ଧିଙ୍କ ପୁତ୍ରକ୍ଷେମ, ବୁଦ୍ଧିଙ୍କ ପୁତ୍ର ଲାଭ ଅଟନ୍ତି । ଶିବଙ୍କର ଅନ୍ୟ ଏକ ପୁତ୍ର କାର୍ତ୍ତିକେୟ ଓ ତାଙ୍କ ପତ୍ନୀ ଦେବସେନା ମଧ୍ୟ ରହିଛନ୍ତି । ଭଗବାନ ଶିବଙ୍କ ବାହନ ଧର୍ମାବତାର ନନ୍ଦୀ, ମାତା ପାର୍ବତୀଙ୍କ ବାହନ ସିଂହ, ଗଣେଶଙ୍କ ବାହନ ମୂଷିକ ଏବଂ କାର୍ତ୍ତିକେୟଙ୍କ ବାହନ ମୟୂର ମଧ୍ୟ ଶିବ ପରିବାରର ଅନ୍ତର୍ଭୁକ୍ତ । ବାଣ, ରାବଣ, ଚଣ୍ଡୀ, ରିଟି ତଥା ଭୃଙ୍ଗୀ ଆଦି ଅନେକ ମୁଖ୍ୟ ପାର୍ଷଦରେ ପରିଗଣିତ । ପ୍ରଭୁଙ୍କ ଦ୍ୱାର ରକ୍ଷକ ରୂପରେ କୀର୍ତ୍ତିମୁଖ ପ୍ରସିଦ୍ଧ । ପ୍ରଥମେ ଏହାଙ୍କ ପୂଜା ପରେ, ମନ୍ଦିରରେ ପ୍ରବେଶ ତଥା ଭଗବାନ ଶିବଙ୍କ ପୂଜା କରିବାର ବିଧି ଅଛି ।

ସମସ୍ତେ ବେଦ, ପୁରାଣ, ଉପନିଷଦ ତଥା ଆଗମ ଗ୍ରନ୍ଥରେ ଭଗବାନ ଶଙ୍କରଙ୍କର ସ୍ୱରୂପ ଯେପରି ନିର୍ଦ୍ଦିଷ୍ଟ କରାଯାଇଛି ଏଥିରୁ ସ୍ପଷ୍ଟ ଜଣାଯାଏ ଯେ ସେ ହେଉଛନ୍ତି ଯଥାର୍ଥରେ ସମସ୍ତଙ୍କ ସ୍ୱାମୀ, ପ୍ରେରକ, ସଞ୍ଚାଳକ ଏବଂ ପରମେଶ୍ୱର ସ୍ୱରୂପ । ସେ ମଙ୍ଗଳମୟ ହୋଇଥିବାରୁ ଶିବ । ଶୀଘ୍ର ସନ୍ତୁଷ୍ଟ ହେଉଥିବାରୁ ଆଶୁତୋଷ । ସେ ଯୋଗର ଗୁରୁ, ନାଟ୍ୟ କଳାର ପ୍ରବର୍ତ୍ତକ ନଟରାଜ, ବ୍ୟାକରଣର ଆଦ୍ୟାଚାର୍ଯ୍ୟ ଏବଂ ଜଗତର ଗୁରୁ । ସରଳତମ ଉପାସନା ପଦ୍ଧତି, ମନ୍ତ୍ର ଜପ, ଶତନାମ, ସହସ୍ରନାମ, ସ୍ତୋତ୍ର, ଭଗବାନ ଶିବଙ୍କର ଅମୃତମୟ ଏବଂ ମଙ୍ଗଳମୟ ଚରିତ୍ରର ଗୁଣଗାନରେ ପରିପୂର୍ଣ୍ଣ । ଓଁ ନମଃ ଶିବାୟ ତାଙ୍କର ପ୍ରିୟମନ୍ତ୍ର । କେବଳ ଦେବତା ନୁହନ୍ତି ଋଷି, ମୁନି, ଯୋଗୀ, ଜ୍ଞାନୀ, ଧ୍ୟାନୀ, ସିଦ୍ଧ, ମହାତ୍ମା, ବିଦ୍ୟାଧର, ଅସୁର, ନାଗ, କିନ୍ନର, ଚାରଣ, ଗନ୍ଧର୍ବ ମନୁଷ୍ୟ ଆଦି ସମସ୍ତେ ଭଗବାନ ଶିବଙ୍କର ନିରନ୍ତର ଧ୍ୟାନ, ସଂସ୍ତବନ, ପୂଜନ ତଥା ଯଜନ ଆଦି କରିଥାନ୍ତି ଏବଂ ତାଙ୍କ କୃପାରୁ ସିଦ୍ଧି ଲାଭ କରି ଶେଷରେ ଶିବ ସାଯୁଜ୍ୟ ଲାଭ କରିଥାନ୍ତି । ଭଗବାନ ଶଙ୍କର ବିଭକ୍ତ ହୋଇ ମଧ୍ୟ ଗୃହସ୍ଥ, ଯୋଗୀ ହୋଇ ମଧ୍ୟ ସଂସାରୀ, ତପସ୍ୟାରେ ନିମଗ୍ନ ରହି ମଧ୍ୟ ବିଶ୍ୱର ସେବାରେ ତତ୍ପର । ଦେବାସୁର ସଂଗ୍ରାମରେ ସମୁଦ୍ର ମନ୍ଥନରୁ ଯେଉଁ ଉତ୍କଟ ହଳାହଳ ବିଷର ନିଷ୍କାସନ ହେଲା, ତାହା ଦେଖି ସମସ୍ତ ଦେବତା ସୁରକ୍ଷା ପାଇଁ ଶିବଙ୍କ ଶରଣାପନ୍ନ ହେଲେ, ଶିବ ହଳାହଳ ବିଷକୁ ପାନ ପୂର୍ବକ କହିଲେ–

ଏହି ପ୍ରାଣହାନିକାରକ ବିଷ ବିଶ୍ୱର ଅସଂଖ୍ୟ ପ୍ରାଣୀଙ୍କ ବିନାଶର କାରଣ । ସମସ୍ତଙ୍କ ସୁରକ୍ଷା ମୋର କର୍ତ୍ତବ୍ୟ। ଯାହା ପାଖରେ ଶକ୍ତି ସାମର୍ଥ୍ୟ ଅଛି ଶଙ୍କଟ ସମୟରେ ଅନ୍ୟମାନଙ୍କୁ ରକ୍ଷା କରିବାରେ ଜୀବନର ସଫଳତା ନିହିତ ଥାଏ। କେବଳ ଏତିକି ନୁହେଁ ବିଶ୍ୱ କଲ୍ୟାଣ ପାଇଁ ତାରକାସୁରର ବଧ ନିମନ୍ତେ ଦେବତାମାନଙ୍କ ବିଶେଷ ଆଗ୍ରହରେ ସେ ପାର୍ବତୀଙ୍କୁ ବିବାହ କରିଥିଲେ । ରାମାବତାର ସମୟରେ ଜନହିତ ପାଇଁ ରୁଦ୍ରାବତାର ହନୁମାନ ରୂପରେ ଅବତୀର୍ଣ୍ଣ ହୋଇ ଦୁଷ୍ଟ ଦମନ ତଥା ସୁରାଷ୍ଟ୍ର ସ୍ଥାପନ ପରି ଦୁଷ୍କର କାର୍ଯ୍ୟରେ ଭଗବାନ ଶ୍ରୀରାମଙ୍କର ସହାୟତା କରିଥିଲେ । ସେଥିପାଇଁ ବେଦାନ୍ତର ଡିଣ୍ଡିମ ଘୋଷ ଏହି ଯେ ସବୁ କିଛି ବ୍ରହ୍ମ ଅଟେ, ଏଥିରେ ଭିନ୍ନ କିଛି ନାହିଁ । ସଂସାର ଭଗବାନଙ୍କ ରଚନା, ଅଭିବ୍ୟକ୍ତି, ସ୍ୱରୂପ କିମ୍ବା ମନ୍ଦିର ରୂପ ଏବଂ ଭଗବାନ ଓତପ୍ରୋତ ଅଟନ୍ତି । ଆମେ ଭଗବାନଙ୍କ ବିରାଟ ସ୍ୱରୂପର ଅଂଶ ମାତ୍ର । ଏଥିପାଇଁ ଶିବାର୍ଚ୍ଚନ, ସ୍ମରଣ, ଶିବଦର୍ଶନ, ତଥା ପ୍ରେମ ଓ ଆଦର ସହିତ ଭଗବାନ ଶିବଙ୍କ ପରି ଜନହିତକର କାର୍ଯ୍ୟରେ ଆମେ ସମସ୍ତେ ରତ ରହି ପାରିଲେ ଏହାହିଁ ହେବ ମହାଦେବଙ୍କର ଯଥାର୍ଥ ପୂଜା।

ଉପରୋକ୍ତ ଅନୁଚ୍ଛେଦରୁ ଶିବଙ୍କ ବିଷୟରେ ଜାଣିବା ପରେ ମହାଶିବରାତ୍ରିର ତାତ୍ପର୍ଯ୍ୟର ଗୂଢ଼ ରହସ୍ୟ ଅବଗତ ହେବା ଆବଶ୍ୟକ ।

ଶିବରାତ୍ରିର ଅର୍ଥ ଏହି ରାତ୍ରି ଯାହାର ଶିବତତ୍ତ୍ୱ ସହିତ ଘନିଷ୍ଠ ସମ୍ବନ୍ଧ ଅଛି । ଭାଗବାନଙ୍କ ଅତିପ୍ରିୟ ରାତ୍ରିକୁ ଶିବରାତ୍ରି

କୁହାଯାଏ । ଶ୍ରୀ ମାଧବାଚାର୍ଯ୍ୟଙ୍କ ପ୍ରଣିତ କାଳମାଧବ ଶାସ୍ତ୍ରାନୁସାରେ ଶିବରାତ୍ରିର ତାତ୍ପର୍ଯ୍ୟ– 'ଶିବସ୍ୟ ପ୍ରିୟାରାତ୍ରିର୍ଯସ୍ମିନ୍ ବ୍ରତେ ଅଙ୍ଗତ୍ୱେନ ବିହିତା ତଦ୍ ବ୍ରତଂ ଶିବରାତ୍ର୍ୟାକ୍ଷମ୍' । ଶିବ ପୁରାଣରେ ବର୍ଣ୍ଣିତ ବ୍ରହ୍ମା ତଥା ବିଷ୍ଣୁ ସେହି ଅମରତତ୍ତ୍ୱ ଶିବଙ୍କର ଅର୍ଚ୍ଚନା ଯେଉଁ ପୁଣ୍ୟମୟୀ ବେଳାରେ କରିଥିଲେ, ଏହାର ଅଭିଧନା ମହାଶିବରାତ୍ରି ଅଟେ ।

ଇଶାନ ସଂହିତାରେ ଶିବରାତ୍ରି ବ୍ରତ ସମ୍ବନ୍ଧରେ କୁହାଯାଇଛି–

ମାଘ କୃଷ୍ଣ ଚତୁର୍ଦ୍ଦଶ୍ୟାମାଦି ଦେବୋ ମହାନିଶି
ଶିବଲିଙ୍ଗ ତୟୋ ଭୁତଂ କୋଟି ସୂର୍ଯ୍ୟ ସମପ୍ରଭଃ
ତତ୍‌କାଳବ୍ୟାପିନୀ ଗ୍ରାହ୍ୟା ଶିବରାତ୍ରବ୍ରତେ ତିଥିଃ ।

ଅର୍ଥାତ୍ ମାଘମାସ କୃଷ୍ଣ ଚତୁର୍ଦ୍ଦଶୀର ମହାରାତ୍ରିରେ ଆଦିଦେବ ମହାଦେବ କୋଟି ସୂର୍ଯ୍ୟ ସମାନ ଦୀପ୍ତି ସମ୍ପନ୍ନ ହୋଇ ଶିବଲିଙ୍ଗ ରୂପରେ ଆବିର୍ଭୁତ ହୋଇଥିଲେ । ଅତଏବ ଶିବରାତ୍ରି ବ୍ରତରେ ଏହି ମହାରାତ୍ରି ବ୍ୟାପିନୀ ଚତୁର୍ଦ୍ଦଶୀକୁ ହିଁ ଗ୍ରହଣ କରିବା ଉଚିତ । ମାଘମାସର କୃଷ୍ଣ ଚତୁର୍ଦ୍ଦଶୀ ବହୁଧା ଫାଲଗୁନ ମାସରେ ହିଁ ପଡିଥାଏ । ଇଶାନ ସଂହିତା ମତାନୁସାରେ ଶିବଙ୍କ ସର୍ବପ୍ରଥମ ଲିଙ୍ଗ ମୂର୍ତ୍ତି ଉକ୍ତ ତିଥିରେ ମହାନିଶାରେ ପୃଥିବୀରେ ଆବିର୍ଭୁତ ହୋଇଥିଲା । ସେହି ଉପଲକ୍ଷେ ଏହି ବ୍ରତର ଉତ୍ପତ୍ତି ହୋଇଛି । ଏହି ରାତ୍ରିରେ ଶିବପୂଜା ଉପବାସ, ରାତ୍ରି ଜାଗରଣ, ମନ୍ତ୍ରଜପ ଆଦି କରାଯାଇଥାଏ । ଉକ୍ତ ଫାଲଗୁନ କୃଷ୍ଣ ଚତୁର୍ଦ୍ଦଶୀ ରାତ୍ରିରେ ଶିବପୂଜା କରିବା ଏକ ମହାବ୍ରତ ହୋଇଥିବାରୁ ସେଥିପାଇଁ ଏହାର ନାମ ମହା ଶିବରାତ୍ରି ବ୍ରତ ଭାବରେ ବିଖ୍ୟାତ ହୋଇଛି । ଏହି ବ୍ରତରେ ରାତ୍ରିର ଚାରି ପ୍ରହରରେ ଚାରିବାରା ପୃଥକ ପୃଥକ ପୂଜା ବିଧାନ ରହିଛି । ପ୍ରଥମ ପ୍ରହର ଦୁଗ୍ଧ ଦ୍ୱାରା ଶିବଙ୍କର ଇଶାନ ମୂର୍ତ୍ତିଙ୍କୁ, ଦ୍ୱିତୀୟ ପ୍ରହରରେ ଦଧିଦ୍ୱାରା ଅଘୋର ମୂର୍ତ୍ତିଙ୍କୁ, ତୃତୀୟ ପ୍ରହରରେ ଘୃତ ଦ୍ୱାରା ବାମଦେବ ମୂର୍ତ୍ତିଙ୍କୁ ଏବଂ ଚତୁର୍ଥ ପ୍ରହରରେ ମଧୁ ଦ୍ୱାରା ସଦ୍ୟୋଜାତ ମୂର୍ତ୍ତିଙ୍କୁ ସ୍ନାନ କରାଇ ପୂଜନ କରାଯାଇଥାଏ । ଉପବାସ ଜାଗରଣ ଏବଂ ମନ୍ତ୍ର ଜପ ଏହି ବ୍ରତର ପ୍ରଧାନ ଅଂଗ ସ୍ୱରୂପ ଅଟେ । ଶିବ ପୂଜାର ଅର୍ଥ ହେଉଛି– ପୁଷ୍ପ, ଚନ୍ଦନ, ବିଲ୍ୱପତ୍ର ଅର୍ପଣ କରି ଶିବନାମ ଜପ କରିବା ଏବଂ ଚିତ୍ତବୃତ୍ତିକୁ ନିରୋଧ କରି ଜୀବାତ୍ମାକୁ ପରମାତ୍ମା ଶିବଙ୍କ ସହିତ ଯୋଗ କରିବା । ଜୀବାତ୍ମାର ଆବରଣ ବିକ୍ଷେପ ଦୂରକରି ପରତତ୍ତ୍ୱ ଶିବଙ୍କ ସହିତ ଏକୀଭୂତ ହେବା ବାସ୍ତବିକ ଶିବପୂଜା ଅଟେ । ଏକ ବ୍ୟାଧ ବନ ମଧ୍ୟରେ ଶିକାର କରିବାକୁ ଯାଇ ପଥହରା ହୋଇ ଫାଲଗୁନ, କୃଷ୍ଣ ଚତୁର୍ଦ୍ଦଶୀରେ ଅନ୍ଧାର ରାତ୍ରିରେ ଏକ ବିଲ୍ୱବୃକ୍ଷରେ ଆଶ୍ରୟ ନେଇଥିବା ବେଳେ ତାର କର ସ୍ପର୍ଶରେ କାକରଭିଜା ବେଲପତ୍ର ଯେଉଁ ସ୍ଥାନରେ ପଡୁଥିଲା– ସେଠାରେ ଶିବଲିଙ୍ଗ ଥିଲେ । ବ୍ୟାଧର ଶିବପୂଜା ହୋଇଗଲା । ମୃତ୍ୟୁପରେ ଯମଦୂତମାନେ ତାର ପାଖ ପଶି ପାରିଲେ ନାହିଁ । ଶିବଦୂତମାନେ ତାକୁ ଶିବ ଲୋକକୁ ନେଇଗଲେ । ବ୍ୟାଧ ମୋକ୍ଷ ଲାଭ କଲା । ସଂଯମ, ସାତ୍ତ୍ୱିକ ଆହାର, ଅହିଂସା, ବ୍ରହ୍ମଚର୍ଯ୍ୟା, ବିବେକ, ବୈରାଗ୍ୟ, କାମନା ଦମନ, ଧୈର୍ଯ୍ୟ, ଦୟା, ମୈତ୍ରୀ, ପ୍ରସନ୍ନତା, ନିରପେକ୍ଷତା, ନିର୍ଭୀକତା, ସନ୍ତୋଷ, ସରଳତା ପରୋପକାରିତା ଏବଂ ଭଗବତ ଚିନ୍ତନ ଆଦିଦ୍ୱାରା ମନକୁ ଶୁଦ୍ଧକରି ଭଗବାନ ଶିବଶଙ୍କରଙ୍କୁ ଆରାଧନା କଲେ ମଣିଷ ଆରୋଗ୍ୟ, ଧନ, ପୁତ୍ରାଦି ଲାଭ ସହିତ ମୋକ୍ଷ ମଧ୍ୟ ଲାଭ କରିପାରିବେ । ଶିବ ପୁରାଣରେ କୁହାଯାଇଛି–

ଶିବରାତ୍ରି ବ୍ରତଂ ନାମ ସର୍ବପାପ ପ୍ରଣାଶନମ
ଆଚାଣ୍ଡାଳ ମନୁଷ୍ୟାଣାଂ ଭୁକ୍ତିମୁକ୍ତି ପ୍ରଦାୟକମ୍।

ଶିବରାତ୍ରି ବ୍ରତ ସମସ୍ତ ପାପ ନାଶକାରୀ ଏବଂ ଆଚାଣ୍ଡାଳ ବ୍ରାହ୍ମଣ ଏହି ବ୍ରତର ଅଧିକାରୀ ଅଟନ୍ତି । ଶରଣକୁଳରେ ଲଡୁବାବାଙ୍କ ଶିବରାତ୍ରି ଭୁବନେଶ୍ୱରର ଲିଙ୍ଗରାଜଙ୍କ ପରି ବିଧି ବିଧାନ ସହିତ ମହାଆଡମ୍ବରରେ ହୋଇଥାଏ । ବ୍ରତଧାରୀମାନେ ରାତି ୧୨ଟାରେ ମହାଦୀପ ଉଠିବା ପର୍ଯ୍ୟନ୍ତ ଉପବାସରେ ରହିଥାନ୍ତି । ୮/୧୦ ଦିନ ଧରି ମନ୍ଦିର ପାଖରେ ଦୋକାନ ବଜାର ବସିଥାଏ । କଂସା ବାସନ, ଗୃହ ଉପକରଣ, କୁଲାବୋଝ, ମନୋହରୀ ଦୋକାନ । ପରିବା ଦୋକାନ, ଚାହା ଜଳଖିଆ ଦୋକାନ ବସେ । ଦୂରଦୂରାନ୍ତର ଲୋକମାନେ ଜାଗର ଯାତ୍ରା ଦେଖିବା ପାଇଁ ଆସିଥାନ୍ତି । ମନ୍ଦିର କାର୍ଯ୍ୟାଳୟ ଓ ପ୍ରଶାସନ ପକ୍ଷରୁ ଲୋକଙ୍କ ନିରାପତ୍ତାର ବ୍ୟବସ୍ଥା କରାଯାଇଥାଏ । ପରିଶେଷରେ ଭଗବାନ ଶିବଙ୍କ ପରମଶ୍ରେଷ୍ଠତା ସୂଚକ ମହାଭାରତର ଏକ ବାକ୍ୟ ଦ୍ୱାରା ଲେଖା ସମାପ୍ତ କରୁଛି ।

ନାସ୍ତି ଶର୍ବସମୋଦେବୋ ନାସ୍ତି ଶର୍ବସମାଗତିଃ
ନାସ୍ତି ଶର୍ବ ସମୋ ଦାନେ ନାସ୍ତି ଶର୍ବ ସମୋରଣେ ।

ମହାଭାରତ ଅନୁଶାସନ ପର୍ବ ୧୫/୧୩

ଶିବଙ୍କ ସମାନ ଦେବତା ନାହାନ୍ତି । ଶିବଙ୍କ ସମାନ ପତି ନାହାନ୍ତି । ଶିବଙ୍କ ସମାନ ଦାତା ନାହାନ୍ତି ।

କଳିଙ୍ଗନଗର–୭,
ଭୁବନେଶ୍ୱର

# ପବିତ୍ର ପ୍ରାଚୀନଦୀ ଓ ମହର୍ଷି ବିଶ୍ୱାମିତ୍ର ଆଶ୍ରମ

ତ୍ରିଲୋଚନ ମିଶ୍ର

ଆମ ପୁଣ୍ୟଭୂମି ଭାରତବର୍ଷ ଅନେକ ନଦନଦୀ, ଦେବାଦେବୀ, ଋଷିମୁନି ସଭ୍ୟତାର ଦେଶ । ପ୍ରତ୍ୟେକ ପବିତ୍ର ତୀର୍ଥ ସହ ଏକ ଏକ ପବିତ୍ର ନଦୀର ସ୍ୱର୍ଗୀୟ ସମ୍ବନ୍ଧ ରହିଅଛି । ଗଙ୍ଗାମାତା ସମସ୍ତ ଭାରତୀୟଙ୍କର ପ୍ରାତଃ ସ୍ମରଣୀୟ । ଗଙ୍ଗାଜଳ ବିନା ସମସ୍ତ ପୂଜାପାଠ, ସଂସ୍କାର ଅଧୁରା ରହିଯାଏ । ସାରା ଭାରତବର୍ଷରେ ମୂଳ ସଂସ୍କୃତ ଭାଷାରେ ଦୁଇଗୋଟି ପବିତ୍ର ନଦୀ ଉପରେ ପୁରାତନ ମାହାତ୍ମ୍ୟ ଗ୍ରନ୍ଥ ଦୃଷ୍ଟିଗୋଚର ହୋଇଥାଏ । ତାହା ହେଉଛି 'ଗଙ୍ଗା ମାହାତ୍ମ୍ୟ' ଓ 'ପ୍ରାଚୀ ମାହାତ୍ମ୍ୟ' । ବହୁବର୍ଷ ପୂର୍ବେ ଏହି ପୁଣ୍ୟତୋୟା ପ୍ରାଚୀନଦୀ ଓଡ଼ିଶାର ଧର୍ମଧାରଣା ଓ ସାଂସ୍କୃତିକ ଚେତନାର ମୂଳପିଣ୍ଡ ଥିଲା । ସାରା ଭାରତବର୍ଷର ସାଂସ୍କୃତିକ ତଥା ଧାର୍ମିକ ଚେତନାର ପୀଠସ୍ଥଳୀ ଶ୍ରୀକ୍ଷେତ୍ର ଅଧିପତି ଶ୍ରୀନୀଳାଦ୍ରିନାଥଙ୍କ ସହ ପ୍ରାଚୀତଟସ୍ଥ 'ମା'ମଙ୍ଗଳାଙ୍କ ପୀଠ'ର ସଂଯୋଗ ଅତି ପ୍ରାଚୀନ ଓ ସର୍ବଶାସ୍ତ୍ର ସମ୍ମତ । ସେଥିପାଇଁ 'ମା ମଙ୍ଗଳା'ଙ୍କୁ ଦାରୁବ୍ରହ୍ମ ନିରୂପିଣୀ, ବ୍ରହ୍ମପ୍ରଦାୟିନୀ, ଦୈବୀଶକ୍ତି ଭାବରେ ମାଦଳା ପାଞ୍ଜିରେ ବର୍ଣ୍ଣନା କରାଯାଇଅଛି । ଶ୍ରୀବ୍ୟାସଦେବ ରଚିତ ପଦ୍ମପୁରାଣ ତଥା ତତ୍ ସମ୍ପର୍କିତ ପ୍ରାଚୀ ମାହାତ୍ମ୍ୟ ବର୍ଣ୍ଣନା ଅନୁଯାୟୀ ସମଗ୍ର ଭାରତବର୍ଷରେ ପୁଣ୍ୟତୋୟା ସରସ୍ୱତୀ ଅନ୍ତଃସଳିଳା ଥାଇ ସୁଦ୍ଧା ଅର୍କକ୍ଷେତ୍ରରେ ଏହା ପୂର୍ଣ୍ଣ ସ୍ୱରୂପରେ ଦୃଶ୍ୟା ଅଟନ୍ତି । ଆଦିମ କାଳରୁ ପ୍ରାଚୀତଟସ୍ଥ ଅର୍କକ୍ଷେତ୍ର ଅରଣ୍ୟରୁ ଶ୍ରୀଜଗନ୍ନାଥ ଦେବଙ୍କ ନବକଳେବର ନିମନ୍ତେ ଦିବ୍ୟଦାରୁ ତଥା ଅଣବସର ଔଷଧୀୟ ଉପଚାର ନିମନ୍ତେ ସମସ୍ତ ଦୁର୍ଲଭ ବନସ୍ପତି ସଂଗୃହୀତ ହେଉଥିଲା । ଶ୍ରୀଜଗନ୍ନାଥଙ୍କ ନବକଳେବର ସମୟରେ ଶ୍ରୀଜୀଉଙ୍କର ବହୁ ପ୍ରତୀକ୍ଷିତ ଶ୍ରୀବନଯୋଗ ପର୍ବ କେବଳ ପ୍ରାଚୀତଟସ୍ଥ ରାଜର୍ଷି ଇନ୍ଦ୍ରଦ୍ୟୁମ୍ନଙ୍କ କଠୋର ତପସ୍ୟାର ସ୍ଥଳ ସପ୍ତର୍ଷି ଆଶ୍ରମ (ଦେଉଳିମଠ)କୁ ଆଗମନ କରି ପରମ ବୈଷ୍ଣବୀ ମା' ମଙ୍ଗଳାଙ୍କ ସ୍ୱପ୍ନାବତୀ ମନ୍ତ୍ରର ପ୍ରଭାବନରେ ଚାରିବାଡର ଶ୍ରେଷ୍ଠ ସେବକମାନେ ଦିବ୍ୟଦାରୁମାନଙ୍କର ସ୍ୱରୂପର ସାକ୍ଷାତ ଦର୍ଶନ ଲାଭ କରନ୍ତି । ମହାପୁରୁଷ ଅଚ୍ୟୁତାନନ୍ଦ ପ୍ରାଚୀତଟସ୍ଥ ଏହି ଦିବ୍ୟ ବନରେ ସଖାମାନଙ୍କ ସହ କଠୋର ତପସ୍ୟା କରି ଅନେକ ଦୁର୍ଲ୍ଲଭ ଗ୍ରନ୍ଥ ରଚନା କରିଥିଲେ । 'ଶୂନ୍ୟସଂହିତା' ଗ୍ରନ୍ଥରେ ପ୍ରାଚୀନଦୀକୁ ନୈମିଶ୍ୟାରଣ୍ୟର ପୂର୍ବ ସୀମାରୂପେ ଚିହ୍ନିତ କରି ସିଦ୍ଧିଋଷି ମୁନିମାନଙ୍କର ବିଚରଣସ୍ଥଳୀ ରୂପେ ମହାପୁରୁଷମାନେ ବର୍ଣ୍ଣନା କରିଛନ୍ତି । ଋଷିବାକ୍ୟର କେତୋଟି ଦୃଷ୍ଟାନ୍ତ ନିମ୍ନରେ ପ୍ରଦତ୍ତ ହେଲା–

ନୈମାଶ୍ୟାରଣ୍ୟ ପୂର୍ବତଟ ପ୍ରାଚୀନଦୀ କୂଳ
ସାଧୁ, ସନ୍ଥ, ଜପି, ତପି, ହୋଇଛନ୍ତି ଠୁଳ (ଶୂନ୍ୟସଂହିତା)
କ୍ରୋଶେ କ୍ରୋଶେ ତଟେ ଲିଙ୍ଗେ,
ତସ୍ମାତ, ପ୍ରାଚୀ ସରସ୍ୱତୀ (ପଦ୍ମପୁରାଣ)
ବିଲ୍ୱଗୋକର୍ଣ୍ଣେଶ୍ୱର୍ମଧ୍ୟେ ପ୍ରାଚୀତେ ଶିବନିର୍ମିତେ
ଏକାମ୍ରବନପୂର୍ବେଚ ତତ୍ର ପ୍ରାଚୀ ସରସ୍ୱତୀ (ସଂସ୍କୃତ ପ୍ରାଚୀ ମାହାତ୍ମ୍ୟ)
ଦଧିଚୀ, ଶୁକ, ସୌନକ, ମାର୍କଣ୍ଡେୟ, ମହାମୁନି
ଅତ୍ରି, ଅଙ୍ଗୀରା, ବଶିଷ୍ଠ, ଯାଜ୍ଞବଲ୍‌କ୍ୟ, ଜମଦଗ୍ନି
ଭରଦ୍ୱାଜ, ବିଶ୍ୱାମିତ୍ର, ଗୌତମ, ମାତଙ୍ଗ, ବ୍ୟାସ
ସିଦ୍ଧ କପିଳ, ମୁଦ୍‌ଗଳ, ଜାବାଳାଦି ସର୍ବସନ୍ଥ
ପୁଣ୍ୟଭାଗବତାମୃତ ଗୋକର୍ଣ୍ଣ କଣ୍ଠନିଶୃତ
ଶ୍ରବଣାର୍ଥେ ପ୍ରାଚୀ ତଟେ ସର୍ବ ସନ୍ଥ ସମାଗତ (ସଂସ୍କୃତ ପ୍ରାଚୀ ମାହାତ୍ମ୍ୟ)
ପ୍ରାଚୀତଟରେ ଯେତେ ହର, ସମସ୍ତେ ବ୍ରହ୍ମ ଏକେଶ୍ୱର
ବିଶେଷେ ପ୍ରାଚୀ ସରସ୍ୱତୀ, କୂଳେ କରିବ ତୁମ୍ଭେ କୀର୍ତ୍ତି (ଓଡ଼ିଆ ପ୍ରାଚୀ ମାହାତ୍ମ୍ୟ)

ପ୍ରାଚୀନତମ ଓ ପବିତ୍ରତମ ପ୍ରାଚୀ ନଦୀର ମାହାତ୍ମ୍ୟକୁ ବିସ୍ତୃତ ଭାବରେ ଦୁଇଗୋଟି ପ୍ରଧାନ ବିଭାଗରେ ବିଭକ୍ତ

କରାଯାଇପାରେ । ପ୍ରଥମତଃ ପୌରାଣିକ ଆଧାର ଶ୍ରୀ ବେଦବ୍ୟାସଙ୍କଠାରୁ ଆରମ୍ଭ କରି ଶ୍ରୀ ପ୍ରାଚୀ ମାହାତ୍ମ୍ୟ ପର୍ଯ୍ୟନ୍ତ ବର୍ଣ୍ଣିତ । ଐତିହାସିକ ଆଧାର ପାଇଁ ବହୁ ପ୍ରତିଷ୍ଠିତ ଐତିହାସିକ ତଥା ଗବେଷକମାନଙ୍କର ରଚିତ ପ୍ରାଚୀ ସଭ୍ୟତା ସମ୍ପର୍କିତ ଗ୍ରନ୍ଥ, ପ୍ରବନ୍ଧ ସମୀକ୍ଷା, ପଠନୀୟ । ଅଧୁନା ଭାରତୀୟ ପ୍ରତ୍ନତତ୍ତ୍ୱବିତ୍ ତଥା ଐତିହାସିକମାନଙ୍କ ଦ୍ୱାରା ଆଦୃତ ଦୁର୍ଲ୍ଲଭ ଗ୍ରନ୍ଥଟି ହେଲା ପ୍ରାଚୀକୂଳସ୍ଥ ତୁଳସୀପୁର ଗ୍ରାମନିବାସୀ ସ୍ୱର୍ଗତଃ ଶ୍ୟାମସୁନ୍ଦର ତ୍ରିପାଠୀଙ୍କ ଗବେଷଣାମୂଳକ ଇଂରାଜୀ ପୁସ୍ତକ 'ବୁଦ୍ଧିଜିମ୍ ଆଣ୍ଡ ଦି ରିଲିଜିଅସ୍ କଲ୍ଚର ଅଫ୍ ସାଉଥ୍ ଇଷ୍ଟ ଇଣ୍ଡିଆ' । ଉକ୍ତ ଗ୍ରନ୍ଥରୁ ସୁଧୀ ପାଠକମାନେ ପ୍ରାଚୀ ସଭ୍ୟତାର ଅନେକ ନୂତନ ତଥ୍ୟ ପ୍ରାପ୍ତ ହୋଇପାରିବେ ।

ଆମ ଓଡ଼ିଶାର ଘରେ ଘରେ ପାଳିତ ଖୁଦୁରୁକୁଣୀ ବା ଭାଲୁକୁଣୀ ଓଷା ପୁସ୍ତକରେ ଉତ୍କଳର ଆର୍ଥିକ ସ୍ଥିତିକୁ ସୁଦୃଢ଼ କରୁଥିବା ନୌବାଣିଜ୍ୟର କେନ୍ଦ୍ରସ୍ଥଳୀ ପ୍ରାଚୀନଦୀର ପୁଣ୍ୟଗାଥା ବର୍ଣ୍ଣିତ ହେବାସହ ପୀଠଦେବୀ ପରମବୈଷ୍ଣବୀ ଦାରୁବ୍ରହ୍ମ ନିରୂପିଣୀ ମା'ମଙ୍ଗଳାଙ୍କ ମାହାତ୍ମ୍ୟ ମୂଳରୁ ଶେଷ ପର୍ଯ୍ୟନ୍ତ ବର୍ଣ୍ଣିତ । ପ୍ରାଚୀନଦୀର ପରମ ପବିତ୍ରତା, ଶୁଦ୍ଧତା, ପାପନାଶିନୀ, ଶକ୍ତି, ନଦୀତଟସ୍ଥ ଶମ୍ଭୁ, ବିଷ୍ଣୁ, ମାଧବ, ଚଣ୍ଡୀ, ଯଜ୍ଞବେଦୀ, ଋଷିଆଶ୍ରମ ଓ ପୁଣ୍ୟଘାଟ ବିଷୟରେ ବର୍ଣ୍ଣନା କରି ପ୍ରବନ୍ଧର କଳେବର ବୃଦ୍ଧି ଆମ୍ଭର ଲକ୍ଷ୍ୟ ନୁହେଁ । ସର୍ବ ପ୍ରଥମେ ଏହି ବ୍ରହ୍ମଦାୟିନୀ ନଦୀକୂଳରେ ଥିବା ପୁରାଣ ବର୍ଣ୍ଣିତ ମହର୍ଷି ବିଶ୍ୱାମିତ୍ରଙ୍କ ଆଶ୍ରମ ବିଷୟରେ ପାଠକମାନଙ୍କୁ ଅବଗତ କରାଇବା ।

ଭାରତୀୟ ସଂସ୍କୃତିର ସ୍ୱାଭିମାନ

ଗୋରଖପୁର ଗୀତା ପ୍ରେସରୁ ପ୍ରକାଶିତ ବିଶାଳ ପୁସ୍ତକ 'ତୀର୍ଥମାହାତ୍ମ୍ୟ'ରେ ପବିତ୍ର ପ୍ରାଚୀତଟସ୍ଥ ମହର୍ଷି ବିଶ୍ୱାମିତ୍ର ଆଶ୍ରମ ବିଷୟ ବିସ୍ତୃତ ଭାବେ ବର୍ଣ୍ଣିତ ହୋଇଅଛି । ଆଶ୍ରମ ପରିସରରେ ସଂଗୃହୀତ ଦୁର୍ଲ୍ଲଭ ପୋଥି, ପାଣ୍ଡୁଲିପି, ଉତ୍କଳ ଖଣ୍ଡର ସର୍ବବୃହତ ଶାଳଗ୍ରାମ, ପୂଜିତ ପୁରାତନ ଶିଳାବିଗ୍ରହ ଅନୁଧ୍ୟାନପୂର୍ବକ ଗୀତାପ୍ରେସର ଭବ୍ୟ ଗ୍ରନ୍ଥକୁ ମଧ୍ୟ ପାଠକମାନେ ପଠନ କରି ପ୍ରାଚୀତଟସ୍ଥ ଋଷି ସଂସ୍କୃତିର ଝଲକ ପାଇପାରିବେ ।

ପ୍ରାଚୀତଟସ୍ଥ ମହର୍ଷି ବିଶ୍ୱାମିତ୍ର ଆଶ୍ରମ ମାହାତ୍ମ୍ୟ

ପୁଣ୍ୟତୋୟା ନଦୀମାନେ ଯେଉଁଠାରେ ଉତ୍ତରାଭିମୁଖୀ ହୋଇଥାଆନ୍ତି, ସେ ସ୍ଥାନଟି ପ୍ରୟାଗ ତୀର୍ଥ ପରି ଶ୍ରେଷ୍ଠତମ ମାନ୍ୟତା ପାଇଥାଏ । ପ୍ରାଚୀତଟରେ ଏପରି ଏକ ସ୍ଥଳୀ ନିର୍ଣ୍ଣୟ କରି ମହର୍ଷି ବିଶ୍ୱାମିତ୍ର ନିଜର ତପଃଚର୍ଯ୍ୟା ତଥା ଚତୁର୍ମାସ୍ୟା ବ୍ରତ ପାଳନ ନିମନ୍ତେ ସ୍ଥିର କରିଥିଲେ । ପ୍ରାଚୀ କୂଳରେ ଡେରା ପକାଇ ଅନୁଗାମୀ ଋଷିକୁମାରମାନଙ୍କୁ ଯଜ୍ଞଚରୁ ପ୍ରସ୍ତୁତି ନିମନ୍ତେ ନିକଟସ୍ଥ ଜନବସତିର ଗୃହସ୍ଥମାନଙ୍କଠାରୁ ଅନ୍ନଭିକ୍ଷା ଉଦ୍ଦେଶ୍ୟରେ ପ୍ରେରଣ କଲେ । କ୍ରମାଗତ ଅନାବୃଷ୍ଟି ହେତୁ ନିଃସ୍ୱ ଗୃହସ୍ଥମାନେ ଋଷିକୁମାରମାନଙ୍କୁ ଅନ୍ନ ଭିକ୍ଷା ପ୍ରଦାନରେ ଅକ୍ଷମତା ପ୍ରଦର୍ଶନ କରିଥିଲେ । ସବିଶେଷ ବିବରଣୀ ଶ୍ରବଣ କରି ବ୍ରାହ୍ମଣଠାରୁ ଚଣ୍ଡାଳ ପର୍ଯ୍ୟନ୍ତ ଯେକୌଣସି ବ୍ୟକ୍ତିଠାରୁ ବଞ୍ଚି ରହିବା ପାଇଁ ଯେକୌଣସି ଖାଦ୍ୟ ସଂଗ୍ରହ କରିବାକୁ ଋଷିକୁମାରମାନଙ୍କୁ ମହର୍ଷି ନିର୍ଦ୍ଦେଶ ପ୍ରଦାନ କରିଥିଲେ । ଋଷିଙ୍କ ନିର୍ଦ୍ଦେଶ ଅନୁଯାୟୀ 'ଭବାନ୍ ଭିକ୍ଷାଂ ଦେହି' ଉଚ୍ଚାରଣ ପୂର୍ବକ ବ୍ରହ୍ମଚାରୀମାନେ ଏକ ଚଣ୍ଡାଳ ଗୃହରେ ପଦାର୍ପଣ କରନ୍ତେ ଚଣ୍ଡାଳଟି ନିଜର ଖାଦ୍ୟ ଲାଗି ସଂଗ୍ରହ କରିଥିବା ଏକ ମୃତ ଶ୍ୱାନକୁ ଋଷିକୁମାରମାନଙ୍କୁ ବିନା ଦ୍ୱିଧାରେ ପ୍ରଦାନ କରିଦେଲେ । ଅନ୍ୟନ୍ୟୋପାୟ ହୋଇ ଗୁରୁଆଜ୍ଞା ଶିରୋଧାର୍ଯ୍ୟ ମଣି ଋଷି ବାଳକମାନେ ମୃତ ଶ୍ୱାନଟିକୁ ଋଷିଙ୍କ ଶ୍ରୀପାଦରେ ଅର୍ପଣ କରି ସମସ୍ତ ବିଷୟ ଅବଗତ କରାଇଲେ । ପ୍ରଜାମାନଙ୍କୁ ପାଳିବାରେ ଇନ୍ଦ୍ର ବ୍ୟତିକ୍ରମ କରିଥିବା ନିର୍ଣ୍ଣୟ କରି ମହର୍ଷି ବିଶ୍ୱାମିତ୍ର ଯଜ୍ଞର ବିଧାନ ଅନୁଯାୟୀ ଇନ୍ଦ୍ରଙ୍କ ସହ ସମସ୍ତ ଦେବତାଙ୍କୁ ମୃତ ଶ୍ୱାନ ମାଂସର ଚରୁ ପ୍ରଦାନ କରି ଉପଯୁକ୍ତ ଶାସ୍ତି ପ୍ରଦାନର ସଂକଳ୍ପ କରି ଯଜ୍ଞ ଆରମ୍ଭ କଲେ । ଏ ସମ୍ବାଦ ଦେବର୍ଷି ନାରଦଙ୍କଠାରୁ ଅବଗତ ହୋଇ ତାଙ୍କ ପରାମର୍ଶକ୍ରମେ ପରିସ୍ଥିତିକୁ ଆଡେଇ ନିଜର ଇନ୍ଦ୍ରପଦ ବଞ୍ଚାଇବା ନିମନ୍ତେ ଇନ୍ଦ୍ର ଏକ ଛଞ୍ଚାଣ ରୂପ ଧାରଣ କରି ଧ୍ୟାନସ୍ଥ ମୁନିଙ୍କ ନିକଟରୁ ନିଃଶବ୍ଦରେ ମୃତ ଶ୍ୱାନଟିକୁ ଉଠାଇ ନେଲେ । ଧ୍ୟାନ ବଳରେ ମହର୍ଷି ଏହା ଜାଣି ଦୁଷ୍ଟବୁଦ୍ଧି ଇନ୍ଦ୍ରଙ୍କ ସହ ମୃତ ଶ୍ୱାନକୁ ତପସ୍ୟା ପ୍ରଭାବରେ ଯଜ୍ଞ ଅଗ୍ନିରେ ଅର୍ପଣ କରିବାକୁ ସଂକଳ୍ପ କରନ୍ତେ ଦେବର୍ଷିଙ୍କ ନିର୍ଦ୍ଦେଶରେ ଇନ୍ଦ୍ର ମହର୍ଷି ବିଶ୍ୱାମିତ୍ରଙ୍କ ଶରଣାପନ୍ନ ହେଲେ । ମୁନି ଶାନ୍ତ ହୋଇ ଅପାଳକର କାରଣ ପୁଛନ୍ତେ ଇନ୍ଦ୍ର ପ୍ରାଚୀକୂଳସ୍ଥ ପ୍ରଜାମାନଙ୍କର କୁକର୍ମରୁ ଧର୍ମବଳ କମିଯାଇଥିବା କଥା ଉଠାଇ ଆଗାମୀ ଦିନରେ ପ୍ରାଚୀତଟସ୍ଥ ପବିତ୍ର ପୀଠଗୁଡ଼ିକର ଶୁଦ୍ଧତା ରକ୍ଷା ନିମନ୍ତେ ପ୍ରଜାମାନେ ପବିତ୍ର ମାଧବ ନାମ ସଂକୀର୍ତ୍ତନରେ ବ୍ରତୀ ହେଲେ ପ୍ରଜାପାଳନରେ କୌଣସି ତ୍ରୁଟି ରହିବ ନାହିଁ ବୋଲି ଦୃଢ଼ ପ୍ରତିଶ୍ରୁତି ପ୍ରଦାନ କରି ଋଷିକୋପରୁ ମୁକ୍ତ ହୋଇଥିଲେ । ଏହି ପବିତ୍ର ପୌରାଣିକ ଗାଥାକୁ ସ୍ମରଣ କରି କାହିଁ କେତେ କାଳରୁ ପ୍ରାଚୀ ତଟରେ ଠାଆକୁ ଠାଆ ନାମ ସଂକୀର୍ତ୍ତନ କାର୍ଯ୍ୟକ୍ରମ ପ୍ରଚଳିତ ଅଛି ।

ପ୍ରାଚୀ ତଟସ୍ଥ ସୁକପୋଖରୀଠାରେ ପବିତ୍ର ତୁଳସୀ କୈବଲ୍ୟ ଆଶ୍ରମର ଅଖଣ୍ଡ ନାମ ସଂକୀର୍ତ୍ତନ ଏହାର ଏକ ଜ୍ୱଳନ୍ତ ଉଦାହରଣ ।

ପ୍ରାଚୀତଟରେ ଜନ୍ମିତ ଶ୍ରୀଜଗନ୍ନାଥଙ୍କର ପ୍ରାଣପ୍ରିୟ ଭକ୍ତକବି ଶ୍ରୀଜୟଦେବ ନିଜର ଆବିର୍ଭାବକୁ ମଙ୍ଗଳା ମାଧବ ଶ୍ରୀଜଗନ୍ନାଥଙ୍କର କୃପା ରୂପେ ଗ୍ରହଣ କରି ନିଜର ଜନ୍ମଦିବସ ପବିତ୍ର ଅକ୍ଷୟତୃତୀୟା ଅବସରରେ ମଙ୍ଗଳା ମାଧବ ଦର୍ଶନ ଅନ୍ତେ ପ୍ରାଚୀତଟସ୍ଥ ମହର୍ଷି ବିଶ୍ୱାମିତ୍ର ଆଶ୍ରମ ସଂଲଗ୍ନ ଆମ୍ର ଉଦ୍ୟାନରେ ରାତ୍ରଯାପନ ଅଖଣ୍ଡ ନାମ ସଂକୀର୍ତ୍ତନ ବିଧିସ୍ଥାପନ କରି ଅର୍କକ୍ଷେତ୍ର ଦେଇ ଶ୍ରୀକ୍ଷେତ୍ର ଗମନ କରୁଥିଲେ । ଲୀଳା ଅବତାର ଶ୍ରୀଚୈତନ୍ୟଦେବ ଶ୍ରୀକ୍ଷେତ୍ର ରହଣି ସମୟରେ ଶ୍ରୀଜୟଦେବଙ୍କ ଅକ୍ଷୟତୃତୀୟା ନାମ ସଂକୀର୍ତ୍ତନ ଓ ପଦଯାତ୍ରା ବିଧି ଅବଗତ ହୋଇ ୧୮ ବର୍ଷ କାଳ ସଂକୀର୍ତ୍ତନ ଶୋଭାଯାତ୍ରାରେ ନିଜେ ସାମିଲ୍ ହୋଇଥିଲେ । ଧୀରେ ଧୀରେ ପ୍ରାଚୀ ତଟର ଏହି ମହାନ ସଂସ୍କୃତି ଉଭେଇ ଯାଉଥିବା ସମୟରେ ଶ୍ରୀଜଗନ୍ନାଥ ସଂସ୍କୃତି ପ୍ରେମୀ ତଥା ଓଡ଼ିଶା ସରକାରଙ୍କର ପୂର୍ବତନ ମୁଖ୍ୟ ଶାସନ ସଚିବ ଶ୍ରୀଯୁକ୍ତ ଅଜିତ୍ କୁମାର ତ୍ରିପାଠୀ ମହୋଦୟଙ୍କ ମାର୍ଗ ଦର୍ଶନରେ 'ଶ୍ରୀଜୟଦେବ ଫାଉଣ୍ଡେସନ' ଟ୍ରଷ୍ଟ ଆନୁକୂଲ୍ୟରେ ବିଗତ ୨୦ ବର୍ଷଧରି ପବିତ୍ର ଅକ୍ଷୟତୃତୀୟା ଅବସରରେ ଶ୍ରୀଜୟଦେବ ନାମ ସଂକୀର୍ତ୍ତନ ପଦଯାତ୍ରା ମହର୍ଷି ବିଶ୍ୱାମିତ୍ରଙ୍କ ଆଶ୍ରମରେ ନାମ ସଂକୀର୍ତ୍ତନ କରି ମା' ମଙ୍ଗଳାଙ୍କ ସିଂହଦ୍ୱାର ଦେଇ ଶ୍ରୀମନ୍ଦିର ପର୍ଯ୍ୟନ୍ତ ପବିତ୍ର ନାମ ସଂକୀର୍ତ୍ତନର ପୁଷ୍ପ ସିଂଚନ କରି ଚାଲିଛନ୍ତି । ବହୁ ସିଦ୍ଧ ସନ୍ଥ ଓ ଶ୍ରଦ୍ଧାଳୁ ସମୂହ ପ୍ରାଚୀ ମାହାତ୍ମ୍ୟ ବର୍ଣ୍ଣନାନୁସାରେ ପବିତ୍ର ପ୍ରାଚୀ ପରିକ୍ରମା କାର୍ଯ୍ୟ ସଂଚାଳିତ କରି ଆସୁଛନ୍ତି । ପାବନ ବିଶ୍ୱାମିତ୍ର ଆଶ୍ରମ ପରିସରରେ ବହୁକାଳ ଧରି ପିତୃପିଣ୍ଡଦାନ, ତର୍ପଣ, ଶ୍ରାଦ୍ଧ, ଅସ୍ଥି ବିସର୍ଜନ, ବିବାହ ନିର୍ବନ୍ଧ, ବ୍ରତ, ଦୀକ୍ଷା, ଯଜ୍ଞ କାର୍ଯ୍ୟ ସହ ସମସ୍ତ ଶୁଭାଶୁଭ କାର୍ଯ୍ୟ, ପୂଜାର୍ଚ୍ଚନା ନିମନ୍ତେ ଦିବ୍ୟଜଳ ବିଧିବିଧାନ ସହ ଉତ୍ତୋଳନ କରାଯାଉଛି । ମା' ମଙ୍ଗଳାଙ୍କ ବିଶ୍ୱ ପ୍ରସିଦ୍ଧ ଚୈତ୍ର ଶେଷ ପାଳି ମଙ୍ଗଳବାର ଝାମୁଯାତ୍ରା ଅନ୍ତେ ବୁଧବାର ଦିନ ଏଠାରେ ଏକ ବିଶାଳ ସାଧୁମେଳା ଅନୁଷ୍ଠିତ ହେଉଥିଲା । ମହାପୁରୁଷ ଅଚ୍ୟୁତଙ୍କ ସହ ପଞ୍ଚସଖା ଓ ବହୁ ପ୍ରଭାବଶାଳୀ ସନ୍ଥ ଏହି ମେଳାରେ ଉପସ୍ଥିତ ରହୁଥିବା ଜନଶ୍ରୁତି ବର୍ତ୍ତମାନ ସୁଦ୍ଧା ଉଜ୍ଜୀବିତ ଅଛି । ପୁରୀର ଗଜପତି ମହାରାଜା ଏଥିନିମନ୍ତେ ଘୋଡା ଗାଡିରେ ଶ୍ରୀଜଗନ୍ନାଥଙ୍କର ମହାପ୍ରସାଦ ପ୍ରେରଣର ବିଧି ମଧ ବହୁଦିନ ପର୍ଯ୍ୟନ୍ତ ପ୍ରଚଳିତ ଥିଲା । ଦୀର୍ଘ ୫୦ବର୍ଷ ଧରି ଏହି ପରମ୍ପରା ଭଗ୍ନ ହୋଇଥିବାରୁ ତଥା ପବିତ୍ର ପୀଠର ସୁରକ୍ଷା ଲାଗି ଉଦାସୀନତା ପରିଲକ୍ଷିତ ହେଉଥିବାରୁ ଶ୍ରଦ୍ଧାଳୁମାନଙ୍କ ମଧରେ ନୈରାଶ୍ୟ ଦେଖାଦେଇଛି । ଏପରିସ୍ଥଳେ ପୁଣ୍ୟତୋୟା ପ୍ରାଚୀତଟସ୍ଥ ପୁରାଣ ବର୍ଣ୍ଣିତ ଆଶ୍ରମ ତଥା ପୀଠଗୁଡିକର ସୁରକ୍ଷା ଓ ସଂସ୍କାର ନିମନ୍ତେ ଶ୍ରୀଜଗନ୍ନାଥ ସଂସ୍କୃତି ପ୍ରେମୀ ବନ୍ଧୁମାନେ ମନପ୍ରାଣ ଢାଳି ଦେବା ଶ୍ରେୟ ହେବ । ସଂସ୍କୃତିପ୍ରେମୀ ଗବେଷକମାନଙ୍କ ନିମନ୍ତେ ଶ୍ରୀଜଗନ୍ନାଥଙ୍କ ଆଦ୍ୟ ଲୀଳାସ୍ଥଳୀ ପବିତ୍ର ପ୍ରାଚୀତଟ ଏକ ଭୂସ୍ୱର୍ଗ । ଏହାର ସୁରକ୍ଷା ଏକ ଜାତୀୟ ଦାୟିତ୍ୱ ନୁହେଁ କି ?

କୃଷି ଓ ପରିବେଶବିତ୍
ପ୍ରକୃତିବନ୍ଧୁ ଭବନ, ପ୍ରାଚୀବିହାର, କାକଟପୁର

❖ ❖ ❖

# ନଗଦ ହସ୍ତାନ୍ତର ଓ ହିତାଧିକାରୀଙ୍କ ସମସ୍ୟା

**ଡକ୍ଟର ପ୍ରଫୁଲ୍ଲ ଚନ୍ଦ୍ର ମହାନ୍ତି (ହାରିତସ୍)**

ଆମଦେଶ ସ୍ୱାଧୀନ ହେବାର ପଞ୍ଚଷଠି ବର୍ଷ ଅତିକ୍ରମ ହେବାକୁ ଗଲାଣି । ଆଗରୁ ଆମ ଶାସନ ବ୍ୟବସ୍ଥା ବିଦେଶୀ ଇଂରେଜମାନଙ୍କ ଉପରେ ନ୍ୟସ୍ତ ଥିଲା । ସେମାନେ ସଦାସର୍ବଦା ଚାହୁଁଥିଲେ ଭାରତୀୟଙ୍କୁ ଶୋଷଣ କରି ତାଙ୍କ ଦେଶକୁ ଲାଭାଂଶ ଉପାର୍ଜନ ବୋହିନେବା । ଏଣୁ ବହୁ କାଳ ଧରି ଆମେ ଶିକ୍ଷା, ଦୀକ୍ଷା, ଶିଳ୍ପ, ସ୍ୱାସ୍ଥ୍ୟ, କୃଷି ଆଦି ସମସ୍ତ ବିକାଶମୂଳକ କ୍ଷେତ୍ରରେ ପଛରେ ପଡି ରହିଥିଲେ । ଏବେ କିନ୍ତୁ ଆମ ଶାସନ ଆମରି ହାତରେ । ପଞ୍ଚଷଠି ବର୍ଷର ସ୍ୱାଧୀନତା ଆମ ବିକାଶ ପାଇଁ କୌଣସି ମତେ କମ୍ ନୁହଁ । ଆମେ ଜାଣିବାକୁ ପାଇଲୁ ଯେ, ବିକାଶ ପାଇଁ ଯେଉଁ ଅର୍ଥ ଆମ ରାଜକୋଷରୁ ବ୍ୟୟ କରାଯାଉଛି, ସେସବୁ ମଧ୍ୟସ୍ଥିଙ୍କ ଦ୍ୱାରା ବାଟମାରଣା ହେଉଛି । ପ୍ରକୃତ ବ୍ୟୟ କରାଯାଉଥିବା ଆର୍ଥିକ ଅନୁଦାନ ବା ସହାୟତା ଠିକ୍ ଲକ୍ଷ୍ୟ ସ୍ଥଳରେ ସଠିକ୍ ଭାବରେ ବ୍ୟୟ କରାଯାଇ ପାରୁନାହିଁ । ତେଣୁ ଆମ ଉନ୍ନତି ସମ୍ଭବ ହେଉନି । ବିଭିନ୍ନ ସ୍ତରଦେଇ ହତାଧିକାରୀଙ୍କ ପାଖକୁ ଆସୁଥିବା ଉର୍ଦ୍ଧିଷ୍ଟ ସହାୟତା ଅର୍ଥରାଶି ବାଟରେ ଶୋଷି ହୋଇଯାଉଛି । ଆଜି ସ୍ୱାଧୀନତାର ଏତେବର୍ଷ ପରେ ମଧ୍ୟ ଆମ ସରକାର ହିସାବ କରି ଦେଖି ସ୍ୱୀକାର କରିଛନ୍ତି ଯେ, ଆମ ଆର୍ଥିକ ବ୍ୟୟ ଅଟକଳର ୧୦୦ ପଇସା କୌଣସି ମତେ ପ୍ରକୃତ କାମରେ ଲାଗିଲା ବେଳକୁ ହୋଇଯାଇଥାଏ ୨୭ ପଇସା ବା ତା'ଠୁ କମ୍ । ଏହାର କାରଣ ଦେଖିବାକୁ ଯାଇ କହନ୍ତି ଏସବୁର ବଣ୍ଟନ ପାଇଁ ପ୍ରଶାସନିକ ଖର୍ଚ୍ଚ ହିଁ ଅଧିକା ଦାୟୀ । ଆର୍ଥିକ ଅନୁଦାନ ଦେଲାବେଳେ ମୁଖ୍ୟତଃ ଦୁଇଟି ଦିଗପ୍ରତି ଦୃଷ୍ଟି ଦେବାକୁ ହୋଇଥାଏ । ଗୋଟିଏ ହେଲା ଠିକ୍ ବେଳରେ ହିତାଧିକାରୀ ପାଖରେ ପହଁଚୁ ଓ ସେ ସେହି ସାହାଯ୍ୟ ପାଇ ଉପକୃତ ହେଉ ସେଇଟା ହେଲା ସବୁଠୁଁ ବଡକଥା । ଗରିବଙ୍କୁ ସହାୟତା ଦେଇ ଆର୍ଥିକ ସମାନତା ଆଣିବାର ଯେଉଁ ପ୍ରଚେଷ୍ଟା ହେଉଛି, ସେସବୁ ଆମେ ନଷ୍ଟ କରିଦେଉଛେ । ଆମ ସମସ୍ୟା ସବୁ ବଢିବାରେ ଲାଗିଛି । ଯାହାହେଉ, ଆମ ସରକାର ଏବେ ଅଧିକା ସଚେତନ ହୋଇ ଆନ୍ତରିଣ ଆର୍ଥିକ ସଂସ୍କାରକୁ ଆପଣେଇ ନେଇ ଗଲାବର୍ଷଠାରୁ ନିର୍ଦ୍ଦିଷ୍ଟ ଭାବେ କହିଛନ୍ତି ଯେ, ଏହି ବାଟମାରଣା, ପ୍ରଶାସନିକ ଖର୍ଚ୍ଚ ଓ ଅହେତୁକ ସମୟର ବିଳମ୍ୱତାକୁ ଦୂର କରିବା ପାଇଁ ଯେତେସବୁ ଆର୍ଥିକ ସହାୟତା ରାଶି ପ୍ରଦାନ କରିବାର ଯୋଜନା ବର୍ତ୍ତମାନ ବା ଭବିଷ୍ୟତରେ କରିବାର ଅଛି, ସେସବୁକୁ ଅନ୍ୟ କୌଣସି ମାଧ୍ୟମ ଦେଇ ଅର୍ପଣ ନକରି ସିଧାସଳଖ ଭାବେ ହିତାଧିକାରୀଙ୍କ ପାଖରେ ଆଧାର ଚିହ୍ନିତ କାର୍ଡ ବା ବ୍ୟାଙ୍କ ଆକାଉଣ୍ଟ ଜରିଆରେ ପ୍ରଦାନ କରାଯିବ । ଏହି ପ୍ରକ୍ରିୟା ଜରିଆରେ ଗୋଟିଏ ପଇସା ବି ବାଟମାରଣା ହେବନି କି କୌଣସି କାରଣ ନଥାଇ ଦିନଟିଏ ବି ବିଳମ୍ୱ ହେବନାହିଁ । ଯାହାକି ଆମ ଅନଗ୍ରସରତା ପାଇଁ ଠିକ୍ ମୃତ୍ୟୁକାଳୀନ ଔଷଧ ଭଳି କାମକରି ଆମ ବିକାଶକୁ ତ୍ୱରାନ୍ୱିତ କରିବାରେ ସମର୍ଥହେବ । ଏସବୁ ବ୍ୟବସ୍ଥା ଏକାନ୍ତ ଭାବେ ଶତପ୍ରତିଶତ ଫଳପ୍ରସୂ ହେବ ଏଥିରେ ସନ୍ଦେହ ନାହିଁ । ଏଭଳି ଏକ ବ୍ୟବସ୍ଥାର ସଂସ୍କାରମୂଳକ ପଦକ୍ଷେପ ପାଇଁ ସରକାରଙ୍କୁ ପ୍ରଶଂସା କରିବାକୁ ପଡିବ । ସରକାର ବାର୍ଷିକ ପ୍ରାୟ ୩.୬୦ ଲକ୍ଷ କୋଟି ଟଙ୍କାର ରିହାତି ବଣ୍ଟନ ପାଇଁ ବ୍ୟାଙ୍କଖାତାର ଆଶ୍ରୟ ଲୋଡୁଛନ୍ତି ।

ବିଶେଷରେ ସରକାରଙ୍କ ଦ୍ୱାରା ବର୍ତ୍ତମାନକୁ ୪୨ଟି ଯୋଜନା ରହିଛି ଯେଉଁଥିରେ ଆର୍ଥିକ ସହାୟତା ଯୋଗାଇ ଦିଆଯାଇଥାଏ । ଚା ଚାଉଳ, ଗହମ, ଖାଦ୍ୟଶସ୍ୟ, ଚିନି, ତେଲ, ରନ୍ଧନଗ୍ୟାସ୍, ସାର କିରୋସିନି, ବାର୍ଦ୍ଧକ୍ୟ ଓ ଅନ୍ୟାନ୍ୟ ଭତ୍ତା ସହ ଶହେଦିନିଆ ଜାତୀୟ କର୍ମଯୋଗାଣ ଆଦି ବହୁ ପ୍ରକଳ୍ପ ଏଥିରେ ସନ୍ନିହିତ କରାଯାଇଛି । ବର୍ତ୍ତମାନ ପାଇଁ ୨୯ଟି ପ୍ରକଳ୍ପର ଅର୍ଥରାଶି ଦେଶର ୫୧ଗୋଟି ଜିଲ୍ଲାରେ ଜାନୁଆରୀ ପହିଲା ୨୦୧୩ରୁ ଲାଗୁ କରାଯାଇଛି । ୨୦୧୪, ଏପ୍ରିଲ ପହିଲାବେଳକୁ ସମଗ୍ର

ଦେଶରେ ୬୫୯ଟି ଜିଲ୍ଲାରେ ସହାୟତା ପାଇଁ ଦିଆଯାଉଥିବା ରିହାତି ଅର୍ଥ ବଣ୍ଟନ ବ୍ୟବସ୍ଥା କରାଯିବ । ଆମ ଦେଶରେ ବର୍ତ୍ତମାନ ସୁଦ୍ଧା ବ୍ୟାକିଂ ବ୍ୟବସ୍ଥାର ଭିତ୍ତିଭୂମି ସେତେଟା ସ୍ୱଚ୍ଛଳ ନୁହଁ । ସେଥିପାଇଁ ସାଧାରଣ ପରିବର୍ଣ୍ଣନ ବ୍ୟବସ୍ଥାରେ ରହିଥିବା ସମସ୍ତ ପ୍ରକାର ସହାୟତା ପାଇଁ ଗ୍ରହଣକାରୀଙ୍କ ନାମରେ କୌଣସି ନା କୌଣସି ବ୍ୟାଙ୍କ ଆକାଉଣ୍ଟ ବା ହିସାବ ଖାତାର ଆବଶ୍ୟକତା ରହିଛି । ବ୍ୟାଙ୍କ ଆକାଉଣ୍ଟ ଖୋଲା ଗଲେ ହିଁ ଏହି ସହାୟତା ଅର୍ଥ ପ୍ରଦାନ କରିବାରେ ସୁବିଧା ହେବ । ଅନ୍ତତଃ ପକ୍ଷେ ଗୋଟିଏ ପରିବାର ପିଛା ଗୋଟିଏ ବ୍ୟାଙ୍କ ଆକାଉଣ୍ଟ ଖୋଲାଯିବା ଦରକାର । ଗଲା ମାର୍ଚ୍ଚ ୩୧, ୨୦୧୨ ମସିହା ସୁଦ୍ଧା ଆମ ଦେଶରେ ରହିଥିବା ଗୋଷ୍ଠୀଭୁକ୍ତ ବାଣିଜ୍ୟିକ ବ୍ୟାଙ୍କଦ୍ୱାରା ସମ୍ପୂର୍ଣ୍ଣ ଖୋଲାଯାଇଥିବା ୯୩,୬୫୯ଟି ଶାଖା ରହିଛି । ତନ୍ମଧ୍ୟରୁ ୩୪,୬୭୧(୩୭.୦୨%) ଶାଖା ଗ୍ରାମୀଣ ଅଞ୍ଚଳରେ ଓ ୨୪,୧୩୩ (୨୫.୭୬%) ଶାଖା ଅର୍ଦ୍ଧ ସହରାଞ୍ଚଳରେ ବିଛେଇ ରହିଛି । ଏହାସହ ସହର ଓ ମହାନଗରାଞ୍ଚଳରେ ୧୮,୦୫୬ (୧୯.୨୮%) ଓ ୧୬,୭୯୯ (୧୭.୯୩%) ଶାଖା ଯଥାକ୍ରମେ ରହିଛି । ଯଦି ସରକାର ଚାହାଁନ୍ତି ଦେଶରେ ୧,୦୫,୦୦୦ ପୋଷ୍ଟ ଅଫିସ୍ ଶାଖା ମାଧ୍ୟମରେ ମଧ୍ୟ ଅର୍ଥ ପ୍ରଦାନ କରିପାରିବେ । ବାଣିଜ୍ୟିକ ବ୍ୟାଙ୍କ ବ୍ୟତୀତ, ଆଞ୍ଚଳିକ ଗ୍ରାମୀଣ ବ୍ୟାଙ୍କ ସମବାୟ ବ୍ୟାଙ୍କ ଓ ପ୍ରାଥମିକ ସେବା ସମବାୟ ସମିତିମାନଙ୍କର ସହାୟତା ନେଇ ଆର୍ଥିକ ଅନୁଦାନକୁ ହିତାଧିକାରୀଙ୍କ ପାଖରେ ପହଁଚାଇବାର ମସୁଧା କରାଯାଇପାରିବ । ମନରେ ଦୁଃଖ ଆସେ, ଏଯାବତ ଆମ ଦେଶର ୫୮.୭% (୨୦୧୧ ଜନଗଣନା ରିପୋର୍ଟ ଅନୁସାରେ)ପରିବାରଙ୍କର ବ୍ୟାଙ୍କ ଖାତା ରହିଛି ଓ ଅନ୍ୟମାନେ ବ୍ୟାଙ୍କ ଦ୍ୱାରା ମାଡିନାହାନ୍ତି କି ବ୍ୟାଙ୍କରେ ଜମାଖାତା ଖୋଲିବା ବା ନେଣଦେଣ ବିଷୟରେ ସମ୍ପୂର୍ଣ୍ଣ ଅଜ୍ଞ । ଅନ୍ୟ ଏକ ଆନ୍ତର୍ଜାତୀୟ ମୁଦ୍ରାପାଣ୍ଠି (ଆଇଏମ୍ଏଫ୍) ପ୍ରଦତ୍ତ ତଥ୍ୟ କହେ ଯେ, ଆମ ଦେଶର ୧୦୦୦୦ ପ୍ରାପ୍ତ ବୟସ୍କଙ୍କ ପାଇଁ ଗୋଟିଏ ବ୍ୟାଙ୍କ ରହିଛି । ଏଭଳି ଅବସ୍ଥାରେ ସମସ୍ତ ହିତାଧିକାରୀଙ୍କର କିଭଳି ବ୍ୟାଙ୍କ ଜମା ଖାତା ଖୋଲି ଅର୍ଥ ହସ୍ତାନ୍ତର କରାଯାଇପାରିବ । ଭାବିଲେ ବିସ୍ମିତ ଲାଗେ । ଏଦିଗରେ ଅବଶ୍ୟ ସରକାରଙ୍କର ତତ୍ପରତା ପ୍ରକାଶ ପାଇଛି ଓ ଏହାର ସମାଧାନ ପାଇଁ 'ସ୍ୱାଭିମାନ' ଭଳି ଯୋଜନାରେ ୨୦୧୧ ଫେବୃଆରୀ ଆର୍ଥିକ ଅନ୍ତର୍ଭୁକ୍ତ ବଢାଇବାର ପ୍ରଚେଷ୍ଟା କରାଯାଉଛି । ଏଥିପାଇଁ ପ୍ରତି ୨୦୦୦ ଜନସଂଖ୍ୟା ବିଶିଷ୍ଟ ଗ୍ରାମକୁ 'ବିଜିନେସ୍ କରସ୍‌ପେଣ୍ଡେନ୍ସ' ନିଯୁକ୍ତି କରି ତାଦ୍ୱାରା ବ୍ୟାଙ୍କଖାତା ଓ କାରବାର କରାଯାଉଛି । ଏମିତିକି ୨୦୧୨–୧୩ର ବଜେଟ୍‌ରେ ଉତ୍ତରପୂର୍ବାଞ୍ଚଳ ଓ ପାହାଡିଆ ରାଜ୍ୟମାନଙ୍କର ୧୦୦୦ ଜନବସତିମାନଙ୍କରେ ମଧ୍ୟ ଆର୍ଥିକ ଅନ୍ତର୍ଭୂକ୍ତ ଆଳରେ ବ୍ୟାଙ୍କ ଖାତା ଖୋଲି ଆର୍ଥିକ ସୁବିଧା ପ୍ରଦାନ କରାଯିବା ପାଇଁ ଲକ୍ଷ୍ୟ ରଖାଯାଇଅଛି । ଏଭଳି ଭାବରେ ଏଯାବତ ୭୪,୧୯୪ ଗ୍ରାମରେ ପ୍ରାୟ ୩.୧୬କୋଟି ଆକାଉଣ୍ଟ ଖୋଲାଯାଇଛି ଓ ଆଗାମୀ ଦିନରେ ଆହୁରି ୪୫୦୦ ଗ୍ରାମକୁ ଏହି ସୁବିଧା ପହଁଚାଇ ହିତାଧିକାରୀଙ୍କୁ ସିଧାସଳଖ ଭାବେ ପାଉଥିବା ରିହାତି ଅର୍ଥ ସରକାରଙ୍କ ଦ୍ୱାରା ପୈଠ କରିବାର ଲକ୍ଷ୍ୟ ରଖାଯାଇଛି । ଆର୍ଥିକ ଅନ୍ତର୍ଭୁକ୍ତିର ସମ୍ପ୍ରସାରିତା ପାଇଁ ରିଜର୍ଭବ୍ୟାଙ୍କ ଏକ ପରାମର୍ଶଦାତା କମିଟି (ଫାଇନେନ୍ସିଆଲ ଇନ୍‌କ୍ଲୁଜନ ଆଡଭାଇଜେରୀ କମିଟି) ନିଯୁକ୍ତ କରି ଏହାର ତଦାରଖ କରୁଛି । ଆଶା କରାଯାଉଛି ୨୦୦୯ ଜୁଲାଇରେ ଥିବା ୧୨୯ଟି ବ୍ୟାଙ୍କ ନଥିବା ବ୍ଲକ ୨୦୧୧ ମାର୍ଚ୍ଚ ଶେଷକୁ ମାତ୍ର ୭୧କୁ କମାଇ ଅଣାଗଲା ଭଳି ଆଗାମୀ ଦିନରେ 'ସ୍ୱାଭିମାନ' ମାଧ୍ୟମରେ ହେଉ, ଅବା ବ୍ରିକ୍ ଏବଂ ମୋରଝାର ବ୍ରାଂଚସ୍ ଜରିଆରେ ବା ମୋବାଇଲ ଫୋନ୍, ମୋବାଇଲ ବ୍ୟାଙ୍କ ସେବା ଜରିଆରେ ହେଉ ନିଶ୍ଚିତ ଆର୍ଥିକ ଅନ୍ତଭୁକ୍ତି ଅଣାଯାଇ ସିଧା ହିତାଧିକାରୀଙ୍କ ଜମାଖାତାରେ ସରକାରୀ ସହାୟତା ଅର୍ଥ ପ୍ରଦାନ କରାଯିବ । ମେକ୍ସିକୋ, ନିକାରାଗୁଆ, ବ୍ରାଜିଲ୍, ଚିଲି, ଜାମାଇକା ଭଳି ଦେଶରେ ଅବଶ୍ୟ ଅର୍ଥ ହସ୍ତାନ୍ତର ବ୍ୟବସ୍ଥା ସଫଳ ହୋଇଛି । ୧୯୯୭ରେ ଲାଟିନ୍ ଆମେରିକା ସରକାର ଗରିବ ଉତ୍‌ଥାପନ ପାଇଁ ଏହି ବ୍ୟବସ୍ଥା ନେଇଛନ୍ତି । ଏହି ସିଧା ଆର୍ଥିକ ରିହାତି ବ୍ୟାଙ୍କ ଆକାଉଣ୍ଟରେ ଜମାଦେବା ବ୍ୟବସ୍ଥାକୁ ଅର୍ଥନୀତିଜ୍ଞଙ୍କ ସହ ହିତାଧିକାରୀ ଅନୁକୂଳ ମତପୋଷଣ କରିପାରୁନାହାନ୍ତି । ଏହାର କାରଣ ସ୍ୱରୂପ ସେମାନେ ଯୁକ୍ତି ବାଢନ୍ତି ଯେ, ସରକାରଙ୍କ ଦ୍ୱାରା କରାଯାଇଥିବା ଆଧାରକାର୍ଡ ମାତ୍ର ଏକତୃତୀୟାଂଶ ହିତାଧିକାରୀଙ୍କଠାରେ ମଧ୍ୟ ଏବେସୁଦ୍ଧା ପହଁଚିପାରିନି । ପୁଣି ଆମ ଦେଶର ୫୦କୋଟିରୁ ଊର୍ଦ୍ଧ୍ୱ ବ୍ୟକ୍ତି ଏପର୍ଯ୍ୟନ୍ତ ବ୍ୟାଙ୍କ ଦ୍ୱାର ମାଡିନାହାନ୍ତି । ଏମିତିକି ଦେଶର ବହୁ ଅଞ୍ଚଳ ଅଛି ଯେଉଁଠି କମ୍ପ୍ୟୁଟର ଓ ବ୍ୟାଙ୍କସେବା ଯୋଗାଇ ଦିଆଯାଇପାରିନି । ବ୍ୟାଙ୍କ୍ ସେବା ପାଇଁ ବେଳେବେଳେ ଆଠରୁ ପନ୍ଦର କିମି ଯାଏ ଚାଲିଚାଲି ଯିବାକୁ ହୁଏ । ଏଭଳି ସ୍ଥଳେ ହିତାଧିକାରୀ ସରକାରଙ୍କ ଦ୍ୱାରା ପ୍ରଦତ୍ତ ରିହାତି ଅର୍ଥ ପାଇବା ପାଇଁ ଦିନେରୁ ଦୁଇଦିନ ନିଜଶ୍ରମ ଦିବସ ନଷ୍ଟ କରି ଯିବାକୁ ପଡିବ । ପୁଣି ନିଜେ ଅଶିକ୍ଷିତ ଥିବା ଯୋଗୁଁ ଅନ୍ୟ କାହାରି ସହାୟତା ନେଇ ବେଳେବେଳେ ଶୋଷଣର ଜାଲ ମଧ୍ୟରେ ପଡିବାକୁ ବି ବାଧ୍ୟ ହେବ, ଯାଦ୍ୱାରା ସରକାର ଚିନ୍ତା କରୁଥିବା ରିହାତି ସୂତ୍ରରେ ଅର୍ଥ ପ୍ରଦାନ ବ୍ୟବସ୍ଥାର ସୁଫଳ

କେତେଦୂର ମିଳିବ ଏହା ବିଚାର କରିବାକୁ ପଡିବ । ଅନ୍ୟ ଏକ ବଡ ସମସ୍ୟା ହେଲା ଲୋକେ ଖାଦ୍ୟଶସ୍ୟ (ଚାଉଳ, ଗହମ, ଚିନି, ତେଲ ଆଦି)କୁ ସରକାରଙ୍କ ଠାରୁ ଏବେ ପାଉଛନ୍ତି । ଯଦି ତା' ବଦଳରେ ଟଙ୍କା ପାଇବେ, ତା'ହେଲେ ଆବଶ୍ୟକତା ଅନୁଯାୟୀ ସେମାନଙ୍କୁ ଖାଦ୍ୟ ଶସ୍ୟ ନିଜେ କିଣି ସଂଗ୍ରହ କରିବାକୁ ପଡିବ । ହୁଏତ କେତେକ କ୍ଷେତ୍ରରେ ଠିକ୍ ବେଳରେ ପୁଣି ଠିକ୍ ଦରରେ ଖାଦ୍ୟ ଶସ୍ୟ ମିଳିନପାରେ । ସେତେବେଳେ ହିତାଧିକାରୀଙ୍କୁ ଆଉ ଟଙ୍କା ଖାଇ ବଞ୍ଚି ହେବନି ବରଂ ଭୋକିଲା ରହିବାକୁ ପଡିବ । ବାଟମାରଣା ହେଉଛି ବୋଲି ଖାଦ୍ୟ ବଦଳରେ ଟଙ୍କା ଦେବାର ବ୍ୟବସ୍ଥାକୁ ସରକାର ଗ୍ରହଣ କରୁଥିବା ଆଳରେ କିଛି ସମୀକ୍ଷକ କହନ୍ତି ଯେ, ଗଲା କେଇ ଦିନ ତଳେ ନିଅଟି ରାଜ୍ୟରେ କରାଯାଇଥିବା ସମୀକ୍ଷାରୁ ଜଣାପଡିଛି ଯେ, ସରକାରୀ କଳ ସଚେତନ ଓ ସ୍ୱଚ୍ଛ ନିରୀକ୍ଷଣ କରିବା ଫଳରେ ବାଟରେ ବାଟମାରଣା ହେଉଥିବା ପୋକଡା ଚାଉଳ, ପଚା ଅଣ୍ଡାଦି ଦ୍ରବ୍ୟର ମାନ, ଗୁଣର ଯଥେଷ୍ଟ ଭାବେ ନିରାକରଣ କରାଯାଇ ପାରୁଛି ଓ ସେ' ଦିଗରେ ଧ୍ୟାନ ଦେଲେ ନିଶ୍ଚିତ ସଫଳତା ଅର୍ଜନ କରାଯାଇପାରିବ । ଭାରତ ଗୋଟିଏ ଗ୍ରାମବହୁଳ ଦେଶ । ଏଠାରେ ମାତ୍ର ୫ଶତାଂଶ ଗ୍ରାମରେ ବ୍ୟାଙ୍କର ଶାଖାଟିଏ ମାତ୍ର ଖୋଲାଯାଇପାରିଛି । ଦେଶରେ ଥିବା ପ୍ରାୟତଃ ୨୦୩ ନିୟୁତ ପରିବାରରୁ ୧୪୭ ନିୟୁତ ପରିବାର ଗ୍ରାମରେ ରହନ୍ତି ଓ ସେମାନଙ୍କ ମଧ୍ୟରୁ ୯୦ ନିୟୁତ ପରିବାର ହେଉଛନ୍ତି ଚାଷୀ । ଏମାନଙ୍କ ମଧ୍ୟରୁ ପାଖାପାଖି ୫୨ ଶତାଂଶଙ୍କର ବ୍ୟାଙ୍କ ବିଷୟ ଧାରଣା ନାହିଁ କି ହିସାବଖାତା ନାହିଁ । ଏଭଳି ସ୍ଥଳେ ପ୍ରଥମେ ଲୋକଙ୍କୁ ଶିକ୍ଷିତ କରାଅ । ବ୍ୟାଙ୍କ ଖାତା, ବ୍ୟାଙ୍କ ସେବା ପ୍ରଦାନକରି, ତା'ପରେ ବ୍ୟାଙ୍କ ଜରିଆରେ କାରବାର କରିବା ପାଇଁ ଆଗକୁ ଆସ, ତା'ହେଲେ ଦେଶର ଉନ୍ନତି ଓ ହିତାଧିକାରୀଙ୍କ ଉନ୍ନତି ସମ୍ଭବ ହେବ ।

ଅବସରପ୍ରାପ୍ତ ଅଧ୍ୟକ୍ଷ,
ସଂସ୍କୃତି ସଦନ ନିବାସ
ବୟାଳୀ, ପୋ: ମନ୍ଦିଡି,
ଜି: ଗଞ୍ଜାମ–୭୬୧୦୦୮

❖ ❖ ❖

# ଯୁକ୍ତ ୨ ପରୀକ୍ଷାରେ ଅନୁସୂଚିତ ଜନଜାତି ଓ ଅନୁସୂଚିତ ଜାତି ଉନ୍ନୟନ ବିଭାଗ ଦ୍ୱାରା ପରିଚାଳିତ ବିଦ୍ୟାଳୟର ଉଲ୍ଲେଖନୀୟ ସଫଳତା

ମଇ ୨୯ ତାରିଖରେ ସାରା ରାଜ୍ୟରେ ଯୁକ୍ତ ୨ ପରୀକ୍ଷା ଫଳ ପ୍ରକାଶ ପାଇଛି । ରାଜ୍ୟରେ ବିଜ୍ଞାନ ବିଭାଗରେ ପାଶ୍ ହାର ଶତକଡା ୭୨.୦୭ ଥିବାବେଳେ, ବାଣିଜ୍ୟ ବିଭାଗରେ ରାଜ୍ୟର ପାଶ୍ ହାର ଶତକଡା ୬୮.୦୧ ହୋଇଛି ।

ଅନୁସୂଚିତ ଜନଜାତି ଓ ଅନୁସୂଚିତ ଜାତି ଉନ୍ନୟନ ବିଭାଗ ଦ୍ୱାରା ପରିଚାଳିତ ୧୧ଟି ଏକଲବ୍ୟ ଆବାସିକ ଆଦର୍ଶ ବିଦ୍ୟାଳୟ ଓ ୮ଟି ଉଚ୍ଚ ମାଧ୍ୟମିକ ବିଦ୍ୟାଳୟରେ ବିଜ୍ଞାନ ବିଭାଗରେ ଶତକଡା ୮୯.୯୬ ଥିବାବେଳେ, ବାଣିଜ୍ୟ ବିଭାଗରେ ପାଶ୍ ହାର ଶତକଡା ୯୧.୪୭ ହୋଇଛି । ଅନୁସୂଚିତ ଜନଜାତି ଓ ଅନୁସୂଚିତ ଜାତି ଉନ୍ନୟନ ବିଭାଗ ଦ୍ୱାରା ପରିଚାଳିତ ୧୯ଟି ଉଚ୍ଚ ମାଧ୍ୟମିକ ବିଦ୍ୟାଳୟ ମଧ୍ୟରୁ ୯ଟି ବିଦ୍ୟାଳୟରେ ଶତ ପ୍ରତିଶତ ଛାତ୍ରଛାତ୍ରୀ ଉତ୍ତୀର୍ଣ୍ଣ ହୋଇଛନ୍ତି ।

ପ୍ରକାଶ ଥାଉକି, ବିଜ୍ଞାନ ବିଭାଗରେ ସମୁଦାୟ ୧,୧୫୪ ଜଣ ପରୀକ୍ଷାର୍ଥୀଙ୍କ ମଧ୍ୟରୁ ୧,୦୩୬ ଜଣ ପାଶ୍ କରିଛନ୍ତି । ସେହିପରି ବାଣିଜ୍ୟ ବିଭାଗରେ ୩୨୯ ଜଣ ପରୀକ୍ଷାର୍ଥୀ ପରୀକ୍ଷା ଦେଇଥିବା ବେଳେ ୩୧୧ ଜଣ ପରୀକ୍ଷାର୍ଥୀ ଉତ୍ତୀର୍ଣ୍ଣ ହୋଇଛନ୍ତି ବୋଲି ଅନୁସୂଚିତ ଜନଜାତି ଓ ଅନୁସୂଚିତ ଜାତି ଉନ୍ନୟନ ବିଭାଗ ସୂତ୍ରରୁ ପ୍ରକାଶ ।

# ୟୁରୋପରେ ଭୟଙ୍କର ଇ.କୋଲି ରୋଗର ପ୍ରାଦୁର୍ଭାବ

**ଲୋକନାଥ ସୁଆର**

ନିକଟରେ ୟୁରୋପ ମହାଦେଶ ଏବଂ ବିଶେଷତଃ ଜର୍ମାନ ଦେଶର ଖାଦ୍ୟ ସମ୍ପର୍କୀୟ ରୋଗ ଇ.କୋଲିର ଭୟଙ୍କର ପ୍ରାଦୁର୍ଭାବ ଦେଖାଯାଇଅଛି । ଏହି ପୀଡାଦାୟକ ରୋଗ ବିଭିନ୍ନ ଦେଶରେ ହଜାର ହଜାର ସଂଖ୍ୟାରେ ସାଧାରଣ ଜନତାଙ୍କୁ ଆକ୍ରାନ୍ତ କରିଛି । ଆମେରିକାର ବିଶିଷ୍ଟ ସ୍ୱାସ୍ଥ୍ୟ ବିଶେଷଜ୍ଞଙ୍କ ମତରେ ଇ.କୋଲି ରୋଗର ଜୀବାଣୁ ଏତେ ଭୟଙ୍କର ନୁହେଁ । କିନ୍ତୁ ଅନ୍ୟ ସ୍ୱାସ୍ଥ୍ୟ ବିଶେଷଜ୍ଞ ମତ ଅନୁଯାୟୀ ଏହି ଇ.କୋଲି ରୋଗର ଜୀବାଣୁ ଦ୍ରୁତ ବୃଦ୍ଧିପାଏ ଏବଂ ବିନାଶକାରୀ ଅଟେ । ସବୁ ସୁସ୍ଥ ଲୋକମାନଙ୍କ ଶରୀରରେ ଏହି ରୋଗର ଜୀବାଣୁ ଉପସ୍ଥିତ ଥିଲେ ମଧ୍ୟ ସମୟ ପଡିଲେ ଏମାନେ ଭୟଙ୍କର ରୂପ ଧାରଣ କରି ବହୁତ ପୀଡା ଦେଇଥାନ୍ତି । ନିକଟରେ ସମସ୍ତ ଖବରକାଗଜ ଓ ବୈଦ୍ୟୁତିକ ଗଣମାଧ୍ୟମରେ ଖବର ପ୍ରକାଶ ପାଇଥିଲା ଯେ ୟୁରୋପରେ ଦେଖାଯାଇଥିବା ଇ.କୋଲି ରୋଗର ଜୀବାଣୁମାନେ ଆଣ୍ଟିବାୟୋଟିକ୍ ମେଡିସିନ୍‌ର ପ୍ରଭାବକୁ ଅଚିରେ ପ୍ରତିହିତ କରିପାରନ୍ତି ।

ଆମେରିକାର ବିଶିଷ୍ଟ ସ୍ୱାସ୍ଥ୍ୟ ବିଜ୍ଞାନୀମାନେ ମତ ଦିଅନ୍ତି ଯେ, ଇ.କୋଲି ରୋଗ ସଂକ୍ରମଣର ପ୍ରତିଷେଧକ ବ୍ୟବସ୍ଥା, ଆଣ୍ଟିବାୟୋଟିକ୍ ମେଡିସିନ୍ ମାଧ୍ୟମରେ କଦାପି କରାଯାଇପାରିବ ନାହିଁ । ଏଥିରୁ ଆମ ଧାରଣା ଆସେ ଇ-କୋଲି ରୋଗର ଜୀବାଣୁ ଏକ ଭୟଙ୍କର ଓ ମାରାତ୍ମକ ଅଟେ । ସେମାନେ ଆହୁରି ମଧ୍ୟ ପ୍ରକାଶ କରିଛନ୍ତି ଯେ, ୟୁରୋପୀୟ ଚିକିତ୍ସକମାନେ ରୋଗକୁ ସଠିକ୍‌ଭାବେ ନିରୂପଣ ନକରି ବିଭ୍ରାନ୍ତିକର ହୋଇ ରୋଗୀମାନଙ୍କୁ ଚିକିତ୍ସା କରୁଅଛନ୍ତି ।

ଯେତେବେଳେ ଏହି ପୀଡାଦାୟକ ଇ.କୋଲି ରୋଗ କୌଣସି ଭୀଷଣ ଯନ୍ତ୍ରଣା ପାଇଲାଭଳି ଲକ୍ଷଣମାନ ଦେଖାଯାଏ, ସେହି ସମୟରେ ରୋଗର ପ୍ରତିରୋଧକ ଶକ୍ତି ବହୁତ ଗୁଣରେ ବୃଦ୍ଧିପାଇଥାଏ । ସେହି ଜଟିଳ ସ୍ୱାସ୍ଥ୍ୟ ଅବସ୍ଥା ସମୟରେ ଯେକୌଣସି ଔଷଧ ଦ୍ୱାରା ପ୍ରତିକାର କରିବା ଅସମ୍ଭବ ବ୍ୟାପାର ହୋଇପଡୁଛି । ଏ ସମ୍ପର୍କରେ ବିଶେଷ ତଥ୍ୟ ଡଃ ଫିଲପ୍ ଟାର ଯିଏ କି ଆମେରିକାର ଏକ ସୁନାମଧନ୍ୟ ବିଶ୍ୱବିଦ୍ୟାଳୟ ଶିଶୁ ବିଶେଷଜ୍ଞ ଅଛନ୍ତି, ସେ ଏହା ଉପରେ ବିସ୍ତୃତ ଗବେଷଣାତ୍ମକ ତଥ୍ୟ ଉପସ୍ଥାପନା କରିଛନ୍ତି ଯଦି ଆମେ ରୋଗର ପୀଡାରୁ ରକ୍ଷା ପାଇବା ପାଇଁ ଆଣ୍ଟିବାୟୋଟିକ୍ ବ୍ୟବହାର କରୁଛୁ ତେବେ ଔଷଧରୁ ଶକ୍ତି ସଂଗ୍ରହ କରି ଇ.କୋଲି ଜୀବାଣୁମାନେ ବେଶ୍ ପ୍ରତିଦ୍ୱନ୍ଦୀ ଏବଂ ଶକ୍ତିଶାଳୀ ହୋଇପଡୁଛନ୍ତି । ଏହି ରୋଗ ଜୀବାଣୁମାନଙ୍କ ଯୋଗୁ ଆମର ଖାଦ୍ୟନଳୀ ବିଶେଷ ପ୍ରଭାବିତ ହୁଏ । ଫଳରେ ରୋଗ ଅଚିରେ ସଂକ୍ରାମକ ପାଲଟିଯାଏ ବୋଲି ଚିକିତ୍ସା ବିଜ୍ଞାନୀମାନେ ମତ ପ୍ରକାଶ କରିଛନ୍ତି ।

ଆମେରିକୀୟ ସ୍ୱାସ୍ଥ୍ୟ ବିଶେଷଜ୍ଞମାନଙ୍କ ନୈରାଶ୍ୟ ମତରେ ପ୍ରଭାବିତ ନହୋଇ ୟୁରୋପ ଡାକ୍ତରମାନେ ଆଣ୍ଟିବାୟୋଟିକ୍‌ସ୍‌ର ସଠିକ୍ ପ୍ରୟୋଗ ଉପରେ ବିଶେଷ ଦୃଷ୍ଟି ଦେଇଛନ୍ତି ଓ ଚିନ୍ତା ପ୍ରକଟ ମଧ୍ୟ କରିଛନ୍ତି । ସେମାନେ ମଧ୍ୟ ସତର୍କ କରାଇ ଦେଇଛନ୍ତି ଯେ, ଆଣ୍ଟିବାୟୋଟିକ୍ ଔଷଧ ସଠିକ୍‌ଭାବେ କାର୍ଯ୍ୟ କରୁନାହିଁ । ହାମବର୍ଗ-ଇପେନ୍‌ଡର୍ଫ ବିଶ୍ୱବିଦ୍ୟାଳୟର ମୁଖ୍ୟ ପ୍ରବନ୍ଧକ ତଥା ବିଶିଷ୍ଟ ସ୍ୱାସ୍ଥ୍ୟ ନିର୍ଦ୍ଦେଶକ ପ୍ରଫେସର ଏଫ୍. ଡେବାଟିନ୍ ପ୍ରକାଶ କରିଛନ୍ତି ଯେ, ଇ.କୋଲି ରୋଗର ଚିକିତ୍ସା ପାଇଁ ସେହିଭଳି ବିଶେଷ ଆଧୁନିକ ଆଣ୍ଟିବାୟୋଟିକ୍ ଔଷଧ ଚିକିତ୍ସା ପାଇଁ ଉପଲବ୍ଧ ନୁହେଁ ।

ୟୁରୋପ ଓ ଆମେରିକାର ଡାକ୍ତରମାନେ କହିଛନ୍ତି ଯେ, ଯେଉଁ ରୋଗୀମାନଙ୍କର ତରଳ ଝାଡାରେ ରକ୍ତ ପଡୁଛି, ସେମାନଙ୍କୁ

ତୁରନ୍ତ ଡାକ୍ତରଖାନାରେ ଚିକିତ୍ସା ପାଇଁ ଭର୍ତ୍ତି କରିବା ଦରକାର । ସେହି ରୋଗୀମାନଙ୍କୁ ଅନ୍ୟମାନଙ୍କଠାରୁ ଦୂରେଇ ରଖାଯିବା ଆବଶ୍ୟକ । ଏହା ଏକ ଡିଆଁ ରୋଗ ଅଟେ । ରୋଗୀର ସଂସ୍ପର୍ଶରେ ଅନ୍ୟ କେହି ଆସିଲେ ଆଶ୍ଚର୍ଯ୍ୟଜନକ ଭାବେ ଭଲ ଲୋକମାନେ ସଂକ୍ରମିତ ହେବାର ସମ୍ଭାବନା ଅଧିକ । ଆମେରିକାର ଡାକ୍ତରମାନେ କହିଛନ୍ତି, ଯଦି ରୋଗୀକୁ ଆଣ୍ଟିବାୟୋଟିକ୍ ଔଷଧ ଦ୍ୱାରା ଚିକିତ୍ସା କରିବା, ତେବେ ରୋଗୀର ବୃକକ୍ ବା କିଡ୍‌ନୀ ଖରାପ ହେବାର ଯଥେଷ୍ଟ ସମ୍ଭାବନା ରହିଛି । କେଉଁ କାରଣରୁ ଏହି ଇ.କୋଲି ରୋଗ ଦେଖାଯାଉଛି, ସେ ସମ୍ପର୍କରେ ୟୁରୋପର ସ୍ୱାସ୍ଥ୍ୟ ବିଶେଷଜ୍ଞମାନେ କାରଣ ଖୋଜିବାରେ ବ୍ୟସ୍ତ ଏବଂ ଏ ସମ୍ପର୍କରେ ପୁଙ୍ଖାନୁପୁଙ୍ଖ ପରୀକ୍ଷା ଚାଲୁ ରହିଛି । ତେବେ ଏ ସମ୍ପର୍କୀୟ ଗବେଷଣାର ଫଳାଫଳ ବିଶେଷ ଉତ୍ସାହଜନକ ନୁହେଁ ।

ଜଣାପଡୁଛି ଯେ, ଏହି ପୀଡାଦାୟକ ଇ.କୋଲି ରୋଗ ସବୁଜ ପନିପରିବା ଖାଇବା ଦ୍ୱାରା ହୋଇଥାଏ । ସେସବୁ କଞ୍ଚା ସବୁଜ ପରିବାଗୁଡିକ ହେଲା ଟମାଟ, କାକୁଡି, ସାଲଡ୍ ପତ୍ର ଇତ୍ୟାଦି । ଏହିସବୁ କଞ୍ଚା ପରିବାକୁ ନେଇ ଆମେ ସାଲଡ୍ ତଥା ଅନ୍ୟାନ୍ୟ ରୋଷେଇରେ ବ୍ୟବହାର କରିଥାଉ । ଏହି କଞ୍ଚା ପନିପରିବା କେଉଁ ସବୁ ସ୍ଥାନରୁ ଆସିଥାଏ, ତାହା ଜାଣିବା ଏକ କଠିନ ବ୍ୟାପାର । ସାଧାରଣତଃ ହୋଟେଲ୍ ଏବଂ ରେଷ୍ଟୁରାଣ୍ଟମାନେ ବିଭିନ୍ନ ପରିବା କ୍ଷେତରୁ ଭିନ୍ନ ଭିନ୍ନ ପ୍ରକାରର ସବୁଜ ପରିବାମାନ ଆଣିଥାଆନ୍ତି । ତେଣୁ କେଉଁ ପନିପରିବା କ୍ଷେତ ବା ମଣ୍ଡିରୁ ଏହି କଞ୍ଚା ପରିବା ସବୁ ଆସିଥାଏ, ତାହା ଜାଣିବା ଏକ ଦୂରୁହ ବ୍ୟାପାର ।

କେତେକ ଆମେରିକୀୟ ସ୍ୱାସ୍ଥ୍ୟ ବିଶେଷଜ୍ଞଙ୍କ ମତରେ ଘୁଷୁରୀମାନଙ୍କ ଉପରେ ବହୁଳ ଆଣ୍ଟିବାୟୋଟିକ୍ ଔଷଧ ବ୍ୟବହାର ଦ୍ୱାରା, ସେମାନଙ୍କ ଶରୀର ବିଷାକ୍ତ ହୋଇଥାଏ । ସେମାନେ କ୍ଷେତର ମାଟିରେ ମଳତ୍ୟାଗ କଲେ ସେହି ଦୂଷିତ ମଳ ଯୋଗୁଁ ମାଟି ମଧ୍ୟ ଦୂଷିତ ହୋଇଯାଏ । ସେହି ଦୂଷିତ ମାଟିରୁ ଉତ୍ପନ୍ନ ପରିବା ଦ୍ୱାରା ଜୀବାଣୁମାନେ ମଣିଷ ଶରୀରରେ କଞ୍ଚା ଖାଇବା ସମୟରେ ଶରୀରରେ ଜୀବନ୍ତଭାବେ ପ୍ରବେଶ କରି ଖାଦ୍ୟ ନଳୀରେ ଉପସ୍ଥିତ ଥାଆନ୍ତି । ଜର୍ମାନୀମାନେ ମତ ଦିଅନ୍ତି ଯେ, ଅପରିଷ୍କାର ଖାଦ୍ୟ ଯେକୌଣସି ସ୍ଥାନରୁ ଆସିଥାଇପାରେ, ତେଣୁ ତାହାର ପ୍ରଭାବରେ ଆମ ଶରୀରରେ ଇ.କୋଲି ରୋଗ ଦେଖାଯାଏ । ସେମାନେ ମଧ୍ୟ ପ୍ରକାଶ କରିଛନ୍ତି ଯେ, ବିକାଶଶୀଳ ଦେଶମାନଙ୍କଠାରୁ ଆସୁଥିବା ଖାଦ୍ୟ ପଦାର୍ଥ ଅସୁରକ୍ଷିତ ଅଟେ । ସମ୍ଭବତଃ, ଏହିସବୁ କାରଣରୁ ଏହି ଖାଦ୍ୟଜନିତ ରୋଗ ଦେଖାଦେଇଛି ବୋଲି ମିନେସୋଟା ବିଶ୍ୱବିଦ୍ୟାଳୟର ସଂକ୍ରମଣ ରୋଗ ଚିକିତ୍ସା ବିଭାଗର ମୁଖ୍ୟ ଡଃ ମାଇକେଲ ଓେଷ୍ଟରର୍ଭାମ ପ୍ରକାଶ କରିଛନ୍ତି ।

ବର୍ତ୍ତମାନ ଏହି ଶଙ୍କର ଜାତୀୟ କଷ୍ଟଦାୟକ ଇ.କୋଲି ୟୁରୋପ ମହାଦେଶର ସବୁ ଜାଗାରେ ଦେଖାଯାଉଅଛି ଯାହାକି ପୂର୍ବରୁ ଏହିଭଳି ଭିନ୍ନ ଧରଣର ଭୟଙ୍କର ବୀଜାଣୁ କେବେ ଦେଖାଯାଇନଥିଲା ବୋଲି ସ୍ୱାସ୍ଥ୍ୟ ବିଭାଗର ବିଶେଷ ଅଧିକାରୀମାନେ ପ୍ରକାଶ କରିଛନ୍ତି ଯେ, ଏହି ପୀଡାଦାୟକ ରୋଗର ପ୍ରତିକାର କୌଣସି ସାଧାରଣ ଆଣ୍ଟିବାୟୋଟିକ୍ ଔଷଧ ଦ୍ୱାରା ଦୂର କରିହେବ ନାହିଁ । ଏହି ଯନ୍ତ୍ରଣାଦାୟକ ଇ.କୋଲି ବ୍ୟାଧି ଦ୍ୱାରା ଅଧ୍ୟାବଧି ୨୦୦୦ରୁ ଉର୍ଦ୍ଧ୍ୱ ଲୋକ ପ୍ରଭାବିତ ହୋଇଛନ୍ତି । ଏହି ବୀଜାଣୁ ଜନିତ ରୋଗର ଆର୍ବିଭାବ ଜର୍ମାନ ବ୍ୟତୀତ ଅନ୍ୟ ୧୦ଗୋଟି ପାଖାପାଖି ଦେଶମାନଙ୍କରେ ଦେଖାଯାଉଛି । ଇଂଲଣ୍ଡ ଦେଶର ସ୍ୱାସ୍ଥ୍ୟ ସୁରକ୍ଷା ସଂସ୍ଥାମାନେ ଏହି ରୋଗର ପର୍ଯ୍ୟାୟକ୍ରମ କ୍ରମବିକାଶର ପରିଣାମ ସମ୍ପର୍କରେ ସଠିକ୍ ତଥ୍ୟ ପାଇପାରି ନାହାନ୍ତି । କିନ୍ତୁ ବିଶ୍ୱ ସ୍ୱାସ୍ଥ୍ୟ ସଂଗଠନ (ଡବ୍ଲୁଏଚ୍ଓ)ର ତଥ୍ୟ ସହ ସହମତି ପ୍ରକାଶ କରିଛନ୍ତି ଯେ, ଏହି ଇ.କୋଲି ୦୧୦୪ କଷ୍ଟଦାୟକ ରୋଗର ହଠାତ୍ ଆବିର୍ଭାବ ଅସାଧାରଣଭାବେ ଭୟଙ୍କର ଅଟେ । ଯାହାକି କେବେ ପୂର୍ବରୁ ଦେଖାଯାଇନାହିଁ । ଟ୍ରିନିଟି କଲେଜର ଅଣୁଜୀବ ବିଶାରଦ ପ୍ରଫେସର ଷ୍ଟିଫେନ୍ ସ୍ମିଥଙ୍କ ମତ ଅନୁଯାୟୀ ଇ.କୋଲି ପୀଡାଦାୟକ ଅବସ୍ଥା କେବଳ ଏକ ବେଜାତିଆ ବା ଶଙ୍କର ଜାତୀୟ ବୀଜାଣୁର ଆବିର୍ଭାବ ଯୋଗୁଁ ସଂଗଠିତ ହେଉଅଛି । ଏହି ଶଙ୍କର ଜାତୀୟ ବା ବିଜାତି ବୀଜାଣୁ ଦୁଇଟି ଅପ୍ରୀତିକର ସ୍ୱଭାବ ସମ୍ପନ୍ନ ଅଟନ୍ତି । ତଥ୍ୟ ଅନୁଯାୟୀ, ୧୯୭୦ ଦଶକରେ ବିକାଶଶୀଳ ଦେଶମାନଙ୍କରେ ଏହି ତରଳ ରକ୍ତ ଝାଡା ଦେଖାଯାଉଥିଲା । ପରବର୍ତ୍ତୀ ସମୟରେ ଏହି ଭୟଙ୍କର ଜୀବାଣୁମାନଙ୍କୁ ଚିହ୍ନଟ କରାଯାଇଥିଲା, ଯାହାକି ତରଳ ରକ୍ତଝାଡାର କାରଣ ଥିଲା । ଶିଳ୍ପୋଦ୍ୟୋଗୀ ରାଷ୍ଟ୍ରମାନ ଯଥା ଆମେରିକା, ସ୍ୱିଡେନ୍ ଏବଂ ଜର୍ମାନ ଦେଶମାନେ ଯଥୋଚିତ ପଦକ୍ଷେପ ନେଇ ଏହାର ପ୍ରତିକାର ବ୍ୟବସ୍ଥା କରିଥିଲେ ।

ଏହି କ୍ଷତିକାରକ ଇ.କୋଲି ରୋଗର ବୀଜାଣୁମାନେ ଆମ ବୃକକ୍‌ର କୋଷମାନଙ୍କୁ ପ୍ରଭୁତ କ୍ଷତି କରିଥାଆନ୍ତି, ଯାହା ଫଳରେ ରୋଗୀର ଶରୀର ହେମୋଲିଟିକ୍ ୟୁରିଆମିକ୍ ସିନ୍‌ଡ୍ରମ୍ ହସ୍ ଭାବରେ ଏକ ବିରଳ ଓ ତୀବ୍ର ଜଟିଳତା ଦେଖାଯାଏ । ଏହି ଲକ୍ଷଣ ଦେଖାଗଲେ ଶରୀରରେ ଥିବା ଲାଲରକ୍ତ କୋଷିକାମାନେ

ନଷ୍ଟ ହୋଇଯାଆନ୍ତି । ଧୀରେ ଧୀରେ ସେଣ୍ଟ୍ରାଲ୍ ନର୍ଭସ୍ ସିଷ୍ଟମ ଠିକ୍ ଭାବେ କାମ କରିବା ବନ୍ଦ କରି ଅଚଳ ହୋଇପଡନ୍ତି । ୫୦୦ରୁ ଊର୍ଦ୍ଧ୍ୱ ଏହି ହସ୍ ଘଟଣାମାନ ଘଟିଥିବା ତଥ୍ୟ ଜର୍ମାନରେ ଦେଖିବାକୁ ମିଳିଛି । ଇଂଲଣ୍ଡ ଦେଶରେ ମଧ୍ୟ ଏହିଭଳି ଲକ୍ଷଣ ଥିବା ରୋଗୀମାନେ ଦେଖାଯାଇଅଛନ୍ତି । ଏବେ ଆମେ ଚିନ୍ତା କରିବାର ସମୟ ଆସିଛି । ଏହି ପୀଡାଦାୟକ ବୀଜାଣୁକୁ ସମ୍ପୂର୍ଣ୍ଣ ମୂଳପୋଛ କରିବାକୁ ହେଲେ ନୂତନ ଚିକିତ୍ସା ପଦ୍ଧତି ଓ ଔଷଧର ଆବଶ୍ୟକ । ତାକୁ ଦୃଷ୍ଟିରେ ରଖି ଆମେ ଯୋଜନା କରିବା ଦରକାର ।

### ଇ-କୋଲି ରୋଗ କହିଲେ କ'ଣ ବୁଝାଏ ଏବଂ ଏହାର ଲକ୍ଷଣ

ଇଶ୍ଚେରିଚିଆ କୋଲି ଏହି ବୀଜାଣୁ । ସବୁ ପ୍ରାଣୀ ତଥା ମଣିଷର ଖାଦ୍ୟ ନଳୀରେ ଉପସ୍ଥିତ ଥାଏ । ତାହାଛଡା ଶରୀରରେ ଅନ୍ୟାନ୍ୟ କ୍ଷତି ନକରିବା ଭଳି କୀଟାଣୁମାନେ ସାଧାରଣତଃ ଉପସ୍ଥିତ ଥାଆନ୍ତି । ଏହି ବୀଜାଣୁ ଶରୀର ଭିତରେ ଉପସ୍ଥିତ ରହିବା ଯୋଗୁଁ ମାଂସପେଶୀରେ ପୀଡା ଦେଖାଯାଏ, ଫଳରେ ଲୋକମାନେ ସାଧାରଣତଃ ରୋଗଗ୍ରସ୍ତ ହୁଅନ୍ତି । ରୋଗୀମାନେ ତରଳ ରକ୍ତ ଝାଡା କରିଥାଆନ୍ତି । ରୋଗ ସୃଷ୍ଟିକାରୀ ପୀଡାଦାୟକ ଇ.କୋଲି ବୀଜାଣୁ ମଣିଷ ଶରୀର ଭିତରକୁ ଜଳ ଓ ଖାଦ୍ୟ ମାଧ୍ୟମରେ ସଂକ୍ରମିତ ହୋଇଥାଏ । ଏହି ରୋଗର ବୀଜାଣୁମାନେ କଞ୍ଚା ସବୁଜ ପରିବା ମାଧ୍ୟମରେ ସଂକ୍ରମିତ ବୀଜାଣୁ ଜଳ ଦ୍ୱାରା ଏବଂ ମାଟିରେ ମିଶିଥିବା ଦୂଷିତ ମଳ ମାଧ୍ୟମରେ ରହି କୌଣସି ଉପାୟରେ ମଣିଷର ଶରୀରକୁ ପ୍ରବେଶ କରନ୍ତି ।

ପରନ୍ତୁ ଜର୍ମାନ ଇ.କୋଲି ଏକ ଦୁଃସାଧ୍ୟ ରୋଗ ଅଟେ । ଏହି ଇ.କୋଲି ମଣିଷକୁ ରୋଗଗ୍ରସ୍ତ କରାଇ ମୃତ୍ୟୁ ମୁଖକୁ ଠେଲିଦିଏ ମଣିଷର ମୃତ୍ୟୁ ଏହି ଭୟଙ୍କର ଇ.କୋଲି ବୀଜାଣୁ ତାହାର ଜୈବିକ ବିଷ ଦ୍ୱାରା ହୋଇଥାଏ । ଏହାକୁ ଆମେ ଗୁରୁତର ଭାବରେ ମନରେ ନେଇଥାଉ । ଏହି ଜୈବିକ ବିଷକୁ ଭେରୋସାଇଟୋଟକ୍ସିନ୍ ଆଖ୍ୟା ଦିଆଯାଏ । ଏହି ବିରଳ ରୋଗକୁ ଇ.କୋଲି(ଭିଟିଇସି) ୦୧୦୪ ଆଖ୍ୟା ଦେଇଛନ୍ତି ।

ଏହି ରୋଗ ହେବା ଫଳରେ ଶରୀରରେ ଥିବା ବୃକକ୍ ଓ ରକ୍ତ ସଞ୍ଚାଳନରେ ବିଶେଷଭାବେ ଅସୁବିଧା ସୃଷ୍ଟି ହେଉଥିବାରୁ ଏହି ଅସୁବିଧା ଅବସ୍ଥାକୁ ୟୁରିଅମିକ୍ ସିନ୍‌ଡ୍ରୋମ୍ ହସ ବୋଲି ଆଖ୍ୟା ଦିଆଯାଇଛି । ପ୍ରଶ୍ନ ଉଠେ ଏହି ହେମୋଲାଇଟିକ୍ ୟୁରିଅମିକ୍‌ର ଲକ୍ଷଣମାନ କ'ଣ ? ଏହି ଇ.କୋଲି ରୋଗ ହେବା ଦ୍ୱାରା ମଣିଷ ଶରୀରର ଖାଦ୍ୟ ନଳୀରେ ଇ.କୋଲି ବୀଜାଣୁ ଉପସ୍ଥିତ ରହି ଜୈବିକ ବିଷ କ୍ଷରଣ କରିଥାନ୍ତି । ପରବର୍ତ୍ତୀ ସମୟରେ ରକ୍ତକଣିକାରେ ମିଶନ୍ତି ଏବଂ ଧୀରେ ଧୀରେ ମଣିଷର ବୃକକକୁ ନଷ୍ଟ କରିଥାଆନ୍ତି । ବିଶେଷତଃ ଏହିଭଳି ରୋଗ ଶିଶୁ ଓ ବୃଦ୍ଧ ଲୋକମାନଙ୍କ ପାଖରେ ଦେଖାଯାଏ । ଶରୀରରେ ଇ.କୋଲି ରୋଗର ଆବିର୍ଭାବ ହେଲେ ରକ୍ତ ତରଳଝାଡା ଦେଖାଯାଏ । ଏହା ଏକ ଗୁରୁତର ଅବସ୍ଥା ସୃଷ୍ଟି କରେ । ଏହି ଦୁଃସାଧ୍ୟ ରୋଗର ପ୍ରଭାବରୁ ପ୍ରାୟତଃ ଶତକଡା ୯୮ ଭାଗ ଲୋକ ବଞ୍ଚନ୍ତି ଏବଂ ଶତକଡା ୨ ଭାଗ ଲୋକ ନିର୍ଣ୍ଣିତ ମୃତ୍ୟୁମୁଖରେ ପଡନ୍ତି ।

### ଇ-କୋଲି ରୋଗର ପ୍ରତିଷେଧକ ବ୍ୟବସ୍ଥା

ଏବେ ବିଶିଷ୍ଟ ସ୍ୱାସ୍ଥ୍ୟ ବିଶେଷଜ୍ଞମାନେ ସୁପରାମର୍ଶ ଦେଇ କହିଛନ୍ତି ଯେ ସବୁବେଳେ ହାତ ଧୋଇବା ଅଭ୍ୟାସ ରଖିଲେ ଏହି ଇ.କୋଲି ରୋଗ ଜଣଙ୍କଠାରୁ ଅନ୍ୟଜଣଙ୍କ ପର୍ଯ୍ୟନ୍ତ ଡେଇଁବ ନାହିଁ କିମ୍ବା ବ୍ୟାପିବାର ସମ୍ଭାବନା ନାହିଁ । ରୋଷେଇ କରିବା ପୂର୍ବରୁ ସବୁଜ କଞ୍ଚା ପନିପରିବାକୁ ଭଲଭାବରେ ଧୋଇଲେ, ତା'ପରେ ଚୋପା ଛଡେଇ ରୋଷେଇରେ ବ୍ୟବହାର କଲେ, ଏହି ରୋଗ ଆଦୌ ହେବାର ସମ୍ଭାବନା ନାହିଁ । ଇଂଲଣ୍ଡର ଆଷ୍ଟିନ୍ ବିଶ୍ୱବିଦ୍ୟାଳୟ ଅଣୁଜୀବ ବିଶେଷଜ୍ଞ ଅଣ୍ଟୋନୀ.ସି.ହିଲ୍‌ଟନ୍ କହିଛନ୍ତି ଯେ, ବର୍ତ୍ତମାନ ଦେଖାଯାଉଥିବା ପୀଡାଦାୟକ ଇ.କୋଲି ରୋଗ ଅତୀବ ଭୟଙ୍କର ଅଟେ ।

ସେ ମଧ୍ୟ ଆହୁରି ପ୍ରକାଶ କରିଛନ୍ତି ଯେ, କଞ୍ଚା ସବୁଜ ପନିପରିବାମାନ ଦୂଷିତ ମାଟିର ସଂସ୍ପର୍ଶରେ ଆସିବା ଫଳରେ ଏହି ରୋଗ ଜୀବାଣୁ ସଂକ୍ରମିତ ହୁଏ, ନଚେତ୍ ଏହି ରୋଗ ଅଣୁଜୀବମାନେ ଅନ୍ତଃନଳୀରେ ଦୀର୍ଘଦିନ ଧରି ରହିବା ଫଳରେ ଏହି ଅବିରତ ପ୍ରକ୍ରିୟା ମାଧ୍ୟମରେ ଆକ୍ରମଣାତ୍ମକ ହାବଭାବ ସୃଷ୍ଟି କରି ମଣିଷ ଶରୀର ଉପରେ ବହୁତ ପ୍ରଭାବ ପକାଇ ପାରିଥାନ୍ତି । ତେଣୁ ସତର୍କତା ପଦକ୍ଷେପ ସ୍ୱରୁପ, ଏହି ଭୟଙ୍କର ରୋଗ ଆକ୍ରମଣରୁ ନିଜକୁ ରକ୍ଷା କରିବାକୁ ହେଲେ, ଆମ ପାଇଁ ଖାଇବାକୁ ଆସୁଥିବା ସବୁଜ କଞ୍ଚା ପନିପରିବାକୁ ଭଲଭାବରେ ପରିଷ୍କାର ପାଣିରେ ଧୋଇ ଖାଇବା ପାଇଁ ପ୍ରସ୍ତୁତ କଲେ ରୋଗର ଶିକାରରୁ ଆମେ ନିଜକୁ ସୁରକ୍ଷିତ ରଖିପାରିବା ।

ଆଇନ୍ ଅଧ୍ୟାପକ
ଜି.ଏମ୍.ଲ. କଲେଜ, ପୁରୀ
ଶ୍ରୀବିହାର-୭୫୨୦୦୩

# ଲୌହ ମାନବ ସର୍ଦ୍ଦାର ପଟେଲ

**ସରୋଜ ରଞ୍ଜନ ପଟ୍ଟନାୟକ**



ଭାରତର ସ୍ୱାଧୀନତା ସଂଗ୍ରାମରେ ବହୁ ଦେଶ ସେବକ ଝାସ ଦେଇଥିଲେ ମଧ୍ୟ ସେମାନଙ୍କ ମଧ୍ୟରୁ ଯୋଗଜନ୍ମା ଜନନାୟକ ଓ ପ୍ରଖ୍ୟାତ ରାଜନୀତିଜ୍ଞ ସର୍ଦ୍ଦାର ବଲ୍ଲଭ ଭାଇ ପଟେଲ । ସେ ଥିଲେ ଭାରତ ମାତାର ସୁଯୋଗ୍ୟ ସନ୍ତାନ, ଦେଶଭକ୍ତ, ସାଲିସ୍ ବିହୀନ ଜନନାୟକ ଯିଏକି ଭାରତର ସ୍ୱାଧୀନତା ସଂଗ୍ରାମକୁ ଅଧିକ କ୍ରିୟାଶୀଳ କରାଇ ପାରିଥିଲେ । ସେ ଦେଶର ବିପଦ ବେଳେ ଅସମ୍ଭବକୁ ସମ୍ଭବରେ ପରିଣତ କରି ପାରୁଥିଲେ । ନୀତି, ଆଦର୍ଶ ଓ ଦୃଢ ସଂକଳ୍ପ ଘେନି କାର୍ଯ୍ୟ କରୁଥିବା ହେତୁ ତାଙ୍କୁ ଜନସାଧାରଣ ଲୌହ ମାନବର ଆଖ୍ୟା ଦେଇଥିଲେ । ଭାରତର ହିତ ଦୃଷ୍ଟିରୁ ଯାହା ଆବଶ୍ୟକ ତାକୁ କରିବା ପାଇଁ ସେ ଏପରି ଦୃଢମନା ଥିଲେ, ଯେକୌଣସି ପ୍ରତିବନ୍ଧକ ତାଙ୍କୁ ତାହା କରିବାକୁ ନିବୃତ୍ତ କରିପାରୁନଥିଲା । ତାଙ୍କର ସ୍ଲୋଗାନ ଥିଲା 'କାଲିର କାମ ଆଜି କର, ଆଜିର କାମ ବର୍ତ୍ତମାନ କର' । ଅଗଷ୍ଟ ୧୫, ୧୯୪୭ରେ ଭାରତକୁ ସ୍ୱାଧୀନତା ମିଳିଲା ସତ, ହେଲେ ଶାସନ କ୍ଷମତା ହସ୍ତାନ୍ତର ଚୁକ୍ତିପତ୍ରରେ ଭାରତବର୍ଷକୁ ଅନେକ ଖଣ୍ଡରେ ବିଭକ୍ତ କରିବାକୁ ଇଂରେଜମାନେ ଚକ୍ରାନ୍ତ କରି ଦେଶୀୟ ରାଜ୍ୟମାନଙ୍କର ଶାସକମାନଙ୍କୁ ସ୍ୱତନ୍ତ୍ରତା ପ୍ରଦାନ କରିଥିଲେ । ଭାରତ ଏହି ଚୁକ୍ତିପତ୍ରରେ ସ୍ୱାକ୍ଷର କରି ମସ୍ତ ବଡ ଭୁଲ କରିଥିଲା । ଉକ୍ତ ଚୁକ୍ତି ନାମାରେ ଦେଶୀୟ ରାଜ୍ୟର ଶାସକମାନଙ୍କୁ ସ୍ୱଇଚ୍ଛାରେ ଭାରତ ବା ପାକିସ୍ତାନ ସହ ମିଶି ଯିବାର ଅଧିକାର ପ୍ରଦାନ କରାଯାଇଥିଲା । ଏଥିରେ କୌଣସି ପରିବର୍ତ୍ତନ କରିବା ପାଇଁ ଭାରତ ରାଜି ନଥିଲା । ଏହି ଚୁକ୍ତିଟି ଯଦି ଅକ୍ଷରେ ଅକ୍ଷରେ କାର୍ଯ୍ୟକାରୀ ହୋଇଥାନ୍ତା, ତେବେ ଭାରତବର୍ଷ କେବଳ ଭାରତ ବା ପାକିସ୍ତାନ ନୁହେଁ, ଆହୁରି ଶହ ଶହ ଖଣ୍ଡରେ ବିଭକ୍ତ ହୋଇଥାନ୍ତା । ଇଂରେଜମାନଙ୍କ ଚକ୍ରାନ୍ତରୁ ଦେଶକୁ ରକ୍ଷା ପାଇଁ କୌଣସି ବିକଳ୍ପ ନଥିବା ସ୍ଥଳେ ଅସମର୍ଥକୁ ସମର୍ଥ କରିବା ପାଇଁ ଲୌହ ମାନବ ସର୍ଦ୍ଦାର ପଟେଲ ନିଜକୁ ବହୁପୂର୍ବରୁ ପ୍ରସ୍ତୁତ କରିସାରିଥିଲେ । ଚୁକ୍ତିପତ୍ର ସମ୍ପାଦନ ପରେ ସେ ଦେଶୀୟ ରାଜ୍ୟର ଶାସକମାନଙ୍କୁ ଜଣାଇ ଦେଲେ ଯେ ସେମାନେ ଭାରତ ସରକାରଙ୍କ ବିନା ଅନୁମତିରେ ସ୍ଥଳପଥ, ଜଳପଥ ଓ ଆକାଶ ପଥ ବ୍ୟବହାର କରିପାରିବେ ନାହିଁ । ଏହା ଥିଲା ସର୍ଦ୍ଦାର ପଟେଲଙ୍କ ଚରମ ବାଣୀ । ପରିସ୍ଥିତିର ଗୁରୁତ୍ୱକୁ ଉପଲବ୍ଧି କରି କେତେକ ଦେଶୀୟ ରାଜା ତୁରନ୍ତ ଭାରତ ସହ ମିଶି ଚୁକ୍ତିପତ୍ର ସ୍ୱାକ୍ଷର କରିଥିଲେ । ମାତ୍ର ଭୋପାଳର ନବାବ ହମି ଦୁଲ୍ଲା ଖାଁ, ହାଇଦରାବାଦ୍‌ର ନିଜାମ୍ ଓସମାନ୍ ଅଲ୍ଲି ଖାଁ ତଥା

ଗୁଜୁରାଟ ଅନ୍ତର୍ଗତ ଜୁନାଗଡର ନବାବ ଓ ତାଙ୍କ ଦେୱାନ ସାର୍ ସାହାନୱାଜ୍ ଭୁଟୋ ନିଜ ରାଜ୍ୟର ସ୍ୱାଧୀନତା ବଜାଇ ରଖିବାକୁ ଚେଷ୍ଟା କଲେ ଓ ପାକିସ୍ତାନ ସହ ସାମିଲ ହେବା ପାଇଁ ଭୟ ଦେଖାଇଲେ । ଏ ସମସ୍ତ ତଥ୍ୟ ପଟେଲଙ୍କୁ ଆଗରୁ ଜଣାଥିଲା । ଜୁନାଗଡର ଦେୱାନ ସାହାନୱାଜ୍ ଭୁଟୋ (ପାକିସ୍ତାନର ପୂର୍ବତନ ପ୍ରଧାନମନ୍ତ୍ରୀ ଜୁଲଫିକର ଅଲ୍ଲି ଭୁଟ୍ଟୋଙ୍କ ପିତା) ତୁରନ୍ତ ପାକିସ୍ତାନ ଯାଇ ନିଜ ରାଜ୍ୟକୁ ପାକିସ୍ତାନ ସହ ମିଶାଇବାର ଯୋଜନା କରି ଆସିଲେ । ମାତ୍ର ଯୋଗଜନ୍ମା ସର୍ଦ୍ଦାର ପଟେଲ କାଳ ବିଳମ୍ୱ ନକରି ଜୁନାଗଡର ଜଳ, ସ୍ଥଳ ଓ ଆକାଶ ପଥକୁ ଅବରୋଧ କଲେ । କୌଣସି ଉପାୟ ନପାଇ ଜୁନାଗଡର ନବାବ୍, ସର୍ଦ୍ଦାର ପଟେଲଙ୍କ ପ୍ରସ୍ତାବରେ ରାଜି ହୋଇ ନିଜ ରାଜ୍ୟକୁ ସ୍ୱଇଚ୍ଛାରେ ଭାରତ ସହ ମିଶ୍ରଣ କରିବା ପାଇଁ ଘୋଷଣା କଲେ । ଫଳ ସ୍ୱରୂପ ସେ ନିଜ ପରିବାର ଓ ପ୍ରଚୁର ସମ୍ପତ୍ତି ସହ ଆକାଶ ପଥରେ ପାକିସ୍ତାନ ଯିବା ସମ୍ଭବ ହୋଇ ପାରିଲା । ଭାରତ ମାତାର ସେହି ଯୋଗଜନ୍ମା ସନ୍ତାନ ୧୮୭୫ ମସିହା ଅକ୍ଟୋବର ୩୧ ତାରିଖ ଦିନ ଗୁଜୁରାଟ ରାଜ୍ୟରେ ଭୂମିଷ୍ଠ ହୋଇଥିଲେ ।ସାଧାରଣ ପରିବାରରେ ଜନ୍ମ ନେଇଥିଲେ ମଧ୍ୟ ନିଜର ବିଚକ୍ଷଣ ପ୍ରତିଭା ବଳରେ ସେ ସ୍ୱାଧୀନତା ପୂର୍ବରୁ କେନ୍ଦ୍ରର ଗୃହମନ୍ତ୍ରୀ ଓ ଉପ ପ୍ରଧାନମନ୍ତ୍ରୀ ଭାବରେ କାର୍ଯ୍ୟ ସମ୍ପାଦନ କରି ଅଗଣିତ ଜନତାର ଶ୍ରଦ୍ଧା ଭାଜନ ହୋଇପାରିଥିଲେ । ଆଇନ ଶିକ୍ଷା ପରେ ସେ କିଛିଦିନ ଆଇନ ବ୍ୟବସାୟରେ ନିଜକୁ ନିୟୋଜିତ କରିଥିଲେ । ମାତ୍ର ଆଇନ୍ ବ୍ୟବସାୟ ତାଙ୍କ ପରି ଦେଶଭକ୍ତଙ୍କୁ ବାନ୍ଧି ରଖି ପାରିନଥିଲା । ଭାରତ ମାତାର ମୁକ୍ତି ପାଇଁ ସେ ଅହରହ ସଂଗ୍ରାମ ଜାରି ରଖିଥିଲେ । ସ୍ୱାଧୀନତା ସଂଗ୍ରାମରେ ତାଙ୍କର ଯୋଗଦାନ ମହାମାନବ ମହାତ୍ମା ଗାନ୍ଧୀଙ୍କ ଅହିଂସ ଆନ୍ଦୋଳନକୁ ପ୍ରଭାବିତ କରିପାରିଥିଲା । ସତ୍ୟାଗ୍ରହ ସଂଗ୍ରାମରେ ନିଜକୁ ଝାସ ଦେଇ ନିଜର ଶିଶୁପୁତ୍ର ଦୟାଭାଇ ଓ କନ୍ୟା ମଣିବେନଙ୍କର ଉପଯୁକ୍ତ ଦେଖାଚାହାଁ କରିପାରୁନଥିଲେ । ଏହା ଜାଣି ପାରି ଗାନ୍ଧିଜୀ ନିଜ ଆଶ୍ରମରେ ସର୍ଦ୍ଦାର ପଟେଲଙ୍କର ଦୁଇ ଶିଶୁକୁ ରଖିବାର ବ୍ୟବସ୍ଥା କରିଥିଲେ । ଭାରତ ସ୍ୱାଧୀନ ପାଇବା ପରେ ଏହି ମହାନ ଜନନାୟକଙ୍କୁ ଭାରତର ପ୍ରଥମ ଉପ ପ୍ରଧାନମନ୍ତ୍ରୀ ଦାୟିତ୍ୱ ଅର୍ପଣ କରାଯାଇଥିଲା । କୌଣସି ସମୟରେ ନିଜର ସ୍ୱାର୍ଥ ପାଇଁ ପଦବୀର ସେ ଦୁରୁପୋଯୋଗ କରିନଥିଲେ । ସେ ଏପରି ଜଣେ ରାଷ୍ଟ୍ରଭକ୍ତ ଥିଲେ ଯିଏ ଦେଶର ସ୍ୱାର୍ଥ ସହିତ ଜଡିତ ଯେକୌଣସି ଅସମ୍ଭବ କାର୍ଯ୍ୟ କରିବାକୁ ପଛାଉ ନଥିଲେ । ଏପରି କି ପ୍ରଧାନମନ୍ତ୍ରୀ ଓ ରାଷ୍ଟ୍ରପତିଙ୍କ ସହ ଏ ବିଷୟରେ ସାଲିସ କରି କାଳକ୍ଷେପଣ ନୀତିକୁ ସେ ପସନ୍ଦ କରିନଥିଲେ । ବହୁ ସମୟରେ ପ୍ରଧାନମନ୍ତ୍ରୀ ପଣ୍ଡିତ ଜବାହରଲାଲ ନେହେରୁଙ୍କ ସହ ମତ ପାର୍ଥକ୍ୟ ମଧ୍ୟ ଘଟୁଥିଲା । ଥରେ ସେ ପଣ୍ଡିତ ନେହେରୁଙ୍କ ସହିତ ନୀତିଗତ ବିରୋଧ ହେତୁ ନିଜ ପଦବୀ ଛାଡିବାକୁ ନିଷ୍ପତ୍ତି ନେଇଥିଲେ । କିନ୍ତୁ ବହୁ ଜନତାଙ୍କ ଅନୁରୋଧ କ୍ରମେ ଦେଶର ସମୂହ ସ୍ୱାର୍ଥକୁ ଆଖି ଆଗରେ ରଖି ନିଷ୍ପତ୍ତିର ପୁନଃ ବିଚାର କରିଥିଲେ ଓ ଶେଷ ସମୟ ପର୍ଯ୍ୟନ୍ତ ସେ ଦେଶ ମାତୃକାର ସେବାରୁ ବିରତ ହୋଇ ନଥିଲେ । ଏହି ମହାନ ଦେଶଭକ୍ତଙ୍କର ୧୯୫୦ ମସିହା ଡିସେମ୍ବର ୧୫ତାରିଖ ଦିନ ଦେହାନ୍ତ ହୋଇଥିଲା । ଭାରତ ମାତା ତା'ର ତ୍ୟାଗୀ ସନ୍ତାନକୁ ଚିରଦିନ ପାଇଁ ହରାଇଲା । ଏଭଳି ସଚ୍ଚା ଦେଶ ଭକ୍ତ ଓ ଅନୁଭବୀ ରାଷ୍ଟ୍ରନୀତିଜ୍ଞ ସ୍ୱାଧୀନ ଭାରତରେ ଦେଖିବା ବିରଳ ।

କ୍ୱାର୍ଟର ନଂ ୨ଆର୍‌ଏଫ୍‌୪/୧
କୋ.ଅ ହାଇସିଂ କଲୋନୀ
ଖାରବେଳ ନଗର, ଭୁବନେଶ୍ୱର

❖ ❖ ❖

# ବିଶ୍ୱ ବନ ଦିବସ ଅବସରରେ ମାନ୍ୟବର ଜଙ୍ଗଲ ଓ ପରିବେଶ ମନ୍ତ୍ରୀଙ୍କର ଅଭିଭାଷଣ

ବିଜୟଶ୍ରୀ ରାଉତରାୟ

ପ୍ରତିବର୍ଷ ମାର୍ଚ୍ଚ ମାସ ୨୧ ତାରିଖକୁ ଆମେ ବିଶ୍ୱ ବନ ଦିବସ ରୂପେ ପାଳନ କରିଥାଉ । ଏହି ଦିନ, ଦିନ ଓ ରାତିର ଅବଧି ସମାନ ହୋଇଥାଏ । କ୍ରମାଗତ ଭାବେ ବନାଂଚଳର ଅବକ୍ଷୟ ଏବଂ ବିଶ୍ୱ ତାପମାତ୍ରା ବୃଦ୍ଧି ଆଜି ସାରା ପୃଥିବୀରେ ଆଲୋଡନ ସୃଷ୍ଟି କରିଛି । ତେଣୁ ବ୍ୟାପକ ବୃକ୍ଷରୋପଣ, ଉଜୁଡା ଜଙ୍ଗଲର ପୁନରୁଦ୍ଧାର ଓ ଲଣ୍ଡା ପାହାଡରେ ବନୀକରଣ କରି ବନାଂଚଳର ସୁରକ୍ଷା କରିବା ପାଇଁ ଜନଚେତନା ଜାଗ୍ରତ କରିବା ହିଁ ବିଶ୍ୱ ବନ ଦିବସ ପାଳନର ମୁଖ୍ୟ ଉଦ୍ଦେଶ୍ୟ ।



ବର୍ତ୍ତମାନ ସମୟ ଆସିଛି ଆମେ ଆମ ରାଜ୍ୟ ଜଙ୍ଗଲର ଗୁଣାତ୍ମକ ମାନ ବୃଦ୍ଧି କରିବା ସହ ଜୈବ ବିବିଧତାର ସନ୍ତୁଳନ ରକ୍ଷା କରିବା । ଜଙ୍ଗଲରେ ବାଉଁଶ ତଥା ସ୍ଥାନୀୟ ପ୍ରଜାତିର ବୃକ୍ଷରୋପଣ ଉପରେ ଗୁରୁତ୍ୱ ଦେବା ।

ଆମ ରାଜ୍ୟର ଜଙ୍ଗଲ ବନୌଷଧୀର ଗନ୍ତାଘର । ରାଜ୍ୟରେ ବନୌଷଧୀର ବ୍ୟବହାର ତଥା ଔଷଧୀୟ ବୃକ୍ଷଲତାର ସଂରକ୍ଷଣ ଓ ଅଭିବୃଦ୍ଧି ସମ୍ବନ୍ଧରେ ଜନସଚେତନତା ସୃଷ୍ଟି କରିବା ନିତାନ୍ତ ଆବଶ୍ୟକ । ବନସ୍ପତି ବନ ସମିତି ଔଷଧୀୟ ବୃକ୍ଷଲତା ଏବଂ ଗୁଳ୍ମରେ ପରିପୃଷ୍ଟ ଗନ୍ଧମାର୍ଦ୍ଦନ ପାହାଡର ସଂରକ୍ଷଣ ପାଇଁ ପଦକ୍ଷେପ ନେଇଛି । ରାଜ୍ୟ ରାଜଧାନୀର ଅନତି ଦୂରରେ ପାତ୍ରପଡାଠାରେ ଏକ ଔଷଧୀୟ ଉଦ୍ଭିଦ ଜ୍ଞାନ କେନ୍ଦ୍ର ସ୍ଥାପନ କରାଯାଇଛି । ସେହିଭଳି ମାନ୍ୟବର ମୁଖ୍ୟମନ୍ତ୍ରୀଙ୍କ ଦିଗ୍‌ଦର୍ଶନରେ ବିନ୍ଦୁସାଗର ତଟରେ କଳା ଭାସ୍କର୍ଯ୍ୟର ସମ୍ମିଶ୍ରଣରେ ଏକ ଅଭିନବ ଔଷଧୀୟ ବୃକ୍ଷ ଉଦ୍ୟାନ ସୃଷ୍ଟି କରାଯାଇଛି ।

ରାଜ୍ୟରେ ସହର ତଥା ଶିଳ୍ପାଞ୍ଚଳର ପ୍ରଦୂଷଣକୁ ପ୍ରତିହତ କରିବା ପାଇଁ ସହରାଞ୍ଚଳର ବନୀକରଣ ଯୋଜନା କାର୍ଯ୍ୟକାରୀ କରାଯାଇଛି । ୨୦୧୨ ବର୍ଷରେ ଭୁବନେଶ୍ୱର, କଟକ, ବ୍ରହ୍ମପୁର, ଅନୁଗୁଳ, ତାଳଚେର, ଝାରସୁଗୁଡା, ଟିଟିଲାଗଡ, ରାଉରକେଲା, ରାଜଗାଙ୍ଗପୁର, ଢେଙ୍କାନାଳ ଆଦି ସହର ଏବଂ ଶିଳ୍ପାଞ୍ଚଳରେ ୮ଲକ୍ଷ ୮୩ହଜାର ଚାରା ରୋପଣ କରାଯାଇଛି । ୨୦୧୩ରେ ୧୨ ଲକ୍ଷ ବୃକ୍ଷ ଚାରା ରାଜ୍ୟର ସମସ୍ତ ସହରାଞ୍ଚଳରେ ରୋପଣ ପାଇଁ ଯୋଜନା କରାଯାଇଛି ।

ରାଜ୍ୟ ସରକାର ଜଙ୍ଗଲ ସୁରକ୍ଷା ଏବଂ ବନୀକରଣରେ ଜନସାଧାରଣଙ୍କ ସକ୍ରୀୟ ସହଯୋଗ ପାଇଁ ଯୁଗ୍ମ ବନ ପରିଚାଳନା ଯୋଜନା ପ୍ରଣୟନ କରିଛନ୍ତି । ବର୍ତ୍ତମାନ ଆମ ରାଜ୍ୟରେ ଏହି ପ୍ରକ୍ରିୟାକୁ ଲୋକାଭିମୁଖୀ କରାଯାଇଛି । ଓଡ଼ିଶାରେ ୧୨,୧୬୬ଟି ବନ ସୁରକ୍ଷା ସମିତି ଏବଂ ୪୬୩ଟି ପରିବେଶ ଉନ୍ନୟନ କମିଟି କାର୍ଯ୍ୟ କରୁଛି । ୧୧,୫୪,୭୧୮ ହେକ୍ଟର ଜଙ୍ଗଲ ଜମି ଯୁଗ୍ମ

ବନ ପରିଚାଳନା ଅନ୍ତର୍ଭୁକ୍ତ କରାଯାଇଛି ଏବଂ ୧୬ ଲକ୍ଷ ପରିବାରଙ୍କୁ ଏଥିରେ ସାମିଲ କରାଯାଇଛି ।

ଜଙ୍ଗଲକୁ ନିଆଁ ଦାଉରୁ ରକ୍ଷା କରିବା ପାଇଁ ବିଭିନ୍ନ ଯୋଜନାମାନ ପ୍ରସ୍ତୁତ କରାଯାଇଛି । ସ୍ଥାନୀୟ ଗ୍ରାମବାସୀମାନଙ୍କୁ ଜଙ୍ଗଲରେ ନିଆଁ ନଲଗାଇବା ପାଇଁ ଏବଂ ନିଆଁ ଲାଗିଥିଲେ ଲିଭାଇବା ପାଇଁ ପ୍ରୋତ୍ସାହିତ କରାଯାଉଛି । ଜଙ୍ଗଲକୁ କାଠ ମାଫିଆ ଓ ଶିକାରୀଙ୍କ କବଳରୁ ରକ୍ଷା କରିବା ପାଇଁ ପ୍ରତ୍ୟେକ ବନଖଣ୍ଡରେ ଅତ୍ୟନ୍ତ ଚୋରିପ୍ରବଣ ଅଞ୍ଚଳ ଚିହ୍ନଟ କରି ସେଠାରେ ସ୍ଥାନୀୟ ଲୋକ ଏବଂ ପୂର୍ବତନ ସାମରିକ କର୍ମଚାରୀଙ୍କୁ ନେଇ ସୁରକ୍ଷା ଦଳ ଗଠନ କରାଯାଇଛି । ରାଜ୍ୟରେ ୨୭୬ଟି ଦଳ ଜଙ୍ଗଲକୁ କାଠ ଚୋରି, ପଶୁ ଶିକାର ଏବଂ ୨୧୦ଟି ଦଳ ନିଆଁ ଦାଉରୁ ସୁରକ୍ଷା ପ୍ରଦାନ କରୁଛି ।

ଜଙ୍ଗଲର ପରିଚାଳନା ଓ ଚିରନ୍ତନ ଅଭିବୃଦ୍ଧି ପାଇଁ ଜନ ସହଯୋଗ ଏକାନ୍ତ କାମ୍ୟ । ଜଙ୍ଗଲ ଉପରେ ନିର୍ଭର କରୁଥିବା ଗାଁଗୁଡିକରେ ବନ ସୁରକ୍ଷା ସମିତିମାନ ଗଠନ କରାଯାଇ ଲୋକମାନଙ୍କ ଜୀବିକା ନିର୍ବାହର ସୁଯୋଗ ସୃଷ୍ଟି କରାଯାଇଛି ।

ପୃଥିବୀର ପରିବେଶକୁ ସନ୍ତୁଳିତ କରିବା, ପ୍ରାକୃତିକ ବିପର୍ଯ୍ୟୟକୁ ଦୂରେଇ ଦେବା, ଜଳବାୟୁ ପରିବର୍ତ୍ତନକୁ ରୋକିବା ସହ ନିଜ ଜୀବନକୁ ସରସ, ସୁନ୍ଦର ଓ ସବୁଜିମାରେ ଭରିଦେବା ପାଇଁ ଏକମାତ୍ର ବିକଳ୍ପ ବୃକ୍ଷରୋପଣ । ଆସନ୍ତୁ, ଏହି ବିଶ୍ୱ ବନ ଦିବସରେ ଆମେ ସମସ୍ତେ ବ୍ୟାପକ ବୃକ୍ଷରୋପଣ ସହିତ ଅରଣ୍ୟର ସୁରକ୍ଷା ଏବଂ ଅଭିବୃଦ୍ଧି ପାଇଁ ସଙ୍କଳ୍ପବଦ୍ଧ ହେବା ।

ଜୟହିନ୍ଦ୍

ମନ୍ତ୍ରୀ
ଜଙ୍ଗଲ ଓ ପରିବେଶ ବିଭାଗ
ଓଡ଼ିଶା, ଭୁବନେଶ୍ୱର

❖ ❖ ❖